ଉପନ୍ୟାସଟିଏ ଗଢ଼ିବା ପାଇଁ ଯେଉଁ
ନିଷ୍ଠା, ସାଧନା ଓ ସଂକଳ୍ପର
ଆବଶ୍ୟକତା ଥାଏ ସେହି ଗୁଣଗୁଡ଼ିକ
ସ୍ୱରାଜ୍ୟଲକ୍ଷ୍ମୀ ମିଶ୍ରଙ୍କ ବ୍ୟକ୍ତିତ୍ୱରେ
ପ୍ରତିଫଳିତ । ସବା ଶେଷ ମଣିଷର ସ୍ୱରକୁ
ପ୍ରଖର ରୂପ ଦେବାରେ ସେ ଯେତିକି
ତତ୍ପର, ଅନନ୍ତ ସମ୍ଭାବନାର ଦରଆଉଜା
ଦ୍ୱାରକୁ ଉନ୍ମୁକ୍ତ କରିବାରେ ତାଙ୍କ
ଲେଖନୀ ସେତିକି ମୁଖର ।

ଥିଲା, ନଥିଲା ବେଳର ଦ୍ୱନ୍ଦ୍ୱ ଓ
ସଂଘାତର ମୌଳିକ ତତ୍ତ୍ୱକୁ ବି ସେ ଅତି
ସନ୍ତର୍ପଣରେ ଛୁଇଁଛନ୍ତି ଏକ ନିଆରା
ଉପନ୍ୟାସୀୟ ଆଭାରେ ।

ସର୍ବତୋଭାବେ ଜୀବନାନୁଭବର
ଅଙ୍ଗୀକାରମୟ ବାସ୍ତବତା ହିଁ

ସ୍ୱରାଜ୍ୟଲକ୍ଷ୍ମୀଙ୍କ ଉପନ୍ୟାସ
ରଚନାକଳାର ଅନ୍ତଃସ୍ୱର ।

ପ୍ରକାଶକ



Digitized by PPRACHIN, SOA

# ସିନ୍ଦୁରା ଫାଟିବାର ବେଳ

(୩ ଉପନ୍ୟାସ ଏକତ୍ର)

ସ୍ୱରାଜ୍ୟଲକ୍ଷ୍ମୀ ମିଶ୍ର



Digitized by PPRACHIN, SOA

**ସିନ୍ଦୂରା ଫାଟିବାର୍ ବେଳ**

(୩ ଉପନ୍ୟାସ ଏକତ୍ର)

ଔପନ୍ୟାସିକା : **ଡକ୍ଟର ସ୍ୱରାଜ୍ୟଲକ୍ଷ୍ମୀ ମିଶ୍ର**
'କୈବଲ୍ୟ', ବଳଗଣ୍ଡି, ବଡ଼ଦାଣ୍ଡ, ପୁରୀ

ପ୍ରକାଶକ : ବିଜୟିନୀ ପବ୍ଲିକେଶନ୍ସ
ଶଙ୍କରପୁର, ଅରୁଣୋଦୟ ମାର୍କେଟ୍, କଟକ - ୧୨

ପ୍ରଥମ ପ୍ରକାଶନ : ୨୦୧୭

ପ୍ରଚ୍ଛଦ : ରମାକାନ୍ତ ସାମନ୍ତରାୟ

ମୁଦ୍ରଣ : ସଙ୍ଗୀତା ପ୍ରିଣ୍ଟର୍ସ, କଟକ

---

**Sindura Phatibara Bela**

(Three Novellas)

Writer : **Dr. Swarajya Laxmi Mishra**
'Kaibalya', Balagandi, Badadanda, Puri - 1
Voice : 9437196888

Publisher : **Bijayinee Publications**
Shankarpur, Arunodaya Market, Cuttack - 753 012
Voice : 9439241471

First Edition : 2017

Cover Art : Ramakanta Samantaray

Printed at : Sangeeta Printers, Cuttack

---

Price : ₹ 150 ISBN : 978-93-86437-05-1

Digitized by PPRACHIN, SOA

## ଉତ୍ସର୍ଗ

*ବାବୁଲୁ !*

ମୋ ନୂଆ ବହି ପଢ଼ିବାରେ ତୋର ଖୁବ୍
ଆଗ୍ରହ, ଅଥଚ ତୁ ଆଜି ନାହୁଁ...

ମୁଁ କ'ଣ ଜାଣିଥିଲି, ତୁ ଏତେ ଶୀଘ୍ର ଆକାଶର
ତାରା ହୋଇଯିବୁ ?

ତଥାପି, ତୋରି ସଜଳ ସ୍ମୃତିରେ
ଏଇ *'ସିନ୍ଦୂରା ଫାଟିବାର ବେଳ'* ପୁସ୍ତକକୁ
ଉପରକୁ ଟେକି ଧରୁଛି,
ତାରାର ଆଲୁଅରେ ପଢ଼ିବୁ ବୋଲି.....

ନାନୀ

Digitized by PPRACHIN, SOA

# ମୋ' କଥା : ମୋ' ବକ୍ତବ୍ୟ

ଉପନ୍ୟାସ 'ସିନ୍ଦୂରା ଫାଟିବାର ବେଳ' ଆଜି ପ୍ରକାଶିତ ହେବାକୁ ଯାଉଛି । ମୋ ପାଇଁ ଏହା ଅତି ଆନନ୍ଦର କଥା । ଏଥିରେ ତିନୋଟି ଉପନ୍ୟାସ ଏକତ୍ର ଗୁନ୍ଥି ହୋଇଛନ୍ତି । ୨୦୧୧ ପୂଜାସଂଖ୍ୟା 'ପରାଗ'ରେ 'ନିଃଶବ୍ଦ ସଂଳାପ', ୨୦୧୨ ପୂଜାସଂଖ୍ୟା 'ପ୍ରତିବେଶୀ'ରେ 'ଏଇ ରାସ୍ତାଟା ମୋର ନଥିଲା' ଏବଂ ୨୦୧୫ ପୂଜାସଂଖ୍ୟା 'ଜନସୁଧା'ରେ 'ସିନ୍ଦୂରା ଫାଟିବାର ବେଳ' ପ୍ରକାଶିତ ହୋଇ ପାଠକୀୟ ଶ୍ରଦ୍ଧାଭାଜନ ହୋଇଥିଲା- ସେଥିପାଇଁ ମୁଁ ନିଜକୁ ଗୌରବାନ୍ୱିତ ମନେ କରିବା ସଂଗେ ସଂଗେ, ପତ୍ରିକାର ସଂପାଦକ ଯଥାକ୍ରମେ ଶ୍ରୀଯୁକ୍ତ ବନମାଳୀ ସେନାପତି, ଶ୍ରୀଯୁକ୍ତ ପୀତାମ୍ବର ବାରିକ ଏବଂ ଶ୍ରଦ୍ଧେୟ ଦିଲୀପ କୁମାର ବେଉରାଙ୍କୁ ମୋର ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛି । ଏତଦ୍‌ଭିନ୍ନ, ବିଜୟିନୀ ପବ୍ଲିକେଶନ୍ସ ଏଇ ତିନିଗୋଟି ଉପନ୍ୟାସକୁ ଏକତ୍ର ଗୁନ୍ଥିବାର ସଦିଚ୍ଛା ପ୍ରକାଶ କରିଥିବାରୁ ପ୍ରକାଶକ ଦିଲୀପ କୁମାର ବେଉରାଙ୍କୁ ମୋର ଅଶେଷ ଅଶେଷ ଧନ୍ୟବାଦ । ତା' ସହିତ ସ୍ୱନାମଧନ୍ୟ ପ୍ରଚ୍ଛଦପଟ ଶିଳ୍ପୀ ଶ୍ରୀଯୁକ୍ତ ରମାକାନ୍ତ ସାମନ୍ତରାୟଙ୍କୁ ମଧ୍ୟ ସାଧୁବାଦ ଜଣାଉଛି । ଶିଳ୍ପୀଙ୍କ ତୂଳୀକାର ସ୍ପର୍ଶ ହିଁ ପୁସ୍ତକଟିକୁ ପୂର୍ଣ୍ଣାଙ୍ଗ ରୂପଦେବାରେ ସକ୍ଷମ ହୋଇଛି ।

Digitized by PPRACHIN, SOA

ଏବେ ମୋ' କଥା ମୋ' ବକ୍ତବ୍ୟ । ଅଧିକା ମୁଁ ଆଉ କ'ଣ କହିବି ମୋ ନିଜ ଲେଖା ସଂପର୍କରେ । ମୋ ସୃଷ୍ଟ ଚରିତ୍ରମାନଙ୍କ ସହିତ ପାଠକଙ୍କୁ ପରିଚିତ କରାଇ ଦେବାର ଭୂମିକା ବ୍ୟତୀତ ମୋର ଆଉ କିଛି ଦାୟିତ୍ୱ ହିଁ ନାହିଁ । ଅବଶ୍ୟ ଅନେକ ଆଗରୁ ସେମାନେ ଆପଣା ଗୁଣରେ ପାଠକଙ୍କ ମନକୁ କିଣି ନେଇପାରିଛନ୍ତି । ଏବେ ବି ସେମିତି କିଣିନେବେ ଏ ବିଶ୍ୱାସ ମୋର ଅଛି । କାରଣ ଏମାନେ ସମସ୍ତେ ମୋ ଆଖିଦେଖା ପୃଥିବୀର ବାସ୍ତବ ଅନୁଭବର ଦୁନିଆ ଭିତରୁ ଆସିଛନ୍ତି । ଛୁଇଁବାକୁ ଚାହିଁଲେ ଜଣେ ସହଜରେ ଛୁଇଁ ପାରିବ, ଅନୁଭବ କରି ପାରିବ ।

ଅତଏବ, ଆମେ ବଞ୍ଚୁଥିବା ଏଇ ସମାଜର 'ସାଧାରଣ'ରୁ 'ସବାଶେଷ ମଣିଷ'ଙ୍କ କଥା ହିଁ ମୁଁ କହିଛି । ଆମ ଦେଶରେ ନାହିଁ କ'ଣ, କହିବାକୁ ଗଲେ ଐଶ୍ୱର୍ଯ୍ୟମୟୀ ଏଇ ଦେଶ 'ସବୁଅଛି'ର ଦେଶ । ଅଥଚ ସଂଘର୍ଷର ଶେଷ ନାହିଁ । ଏଇ ସଂଘର୍ଷ ଜୀବନ ବଞ୍ଚିବାର । ମୁଠେ ଖାଇ, ଖଣ୍ଡେ ପିନ୍ଧି, ମୁଣ୍ଡ ଗୁଞ୍ଜିବା ପାଇଁ ଟିକିଏ ଆଶ୍ରୟର ସଂଘର୍ଷ । ଥିଲା ନଥିଲାର ସଂଘର୍ଷ । ଇଏ ନୂଆ କଥା ନୁହେଁ । ସ୍ୱାଧୀନତା ପୂର୍ବରୁ ବି ଥିଲା । ଇଏ ଏକ ସାମାଜିକ ସମସ୍ୟା । 'ମାଟି'କୁ କେନ୍ଦ୍ରକରି ଆମ ଜୀବନ, ଜୀବିକା ଓ ସଂସ୍କୃତି ଗଢ଼ି ଉଠିଥିଲା । ଥିଲାବାଲା ଜମିଦାରମାନେ କ୍ଷେତର ମାଲିକ ଥିଲେ ଏବଂ ନଥିଲାଙ୍କ ଦ୍ୱାରା କାମ କରାଉଥିଲେ । ଖଟିଖିଆ ଖଟୁଥିଲେ, ବଞ୍ଚୁଥିଲେ । ଏଇ ସାମାଜିକ ବ୍ୟବସ୍ଥା ଭିତରେ ବେଳେବେଳେ କୁଚକ୍ରୀ ମାଲିକମାନଙ୍କ ଦ୍ୱାରା ଶୋଷିତ, ବିଡ଼ମ୍ବିତ ହେଉଥିଲେ ମେହେନତି ମଣିଷ । ସଂପର୍କ ଥିଲା : ପ୍ରଭୁ-ଭୃତ୍ୟର, ରଜା-ପ୍ରଜାର । 'ନଥିଲା' ନିଜ ଅସ୍ତିତ୍ୱ ରକ୍ଷା ପାଇଁ ସଂଘର୍ଷ କରି ତଳିତଳାନ୍ତ ହେଉଥିଲା । ପ୍ରତିବାଦ କରିବା ମଧ୍ୟ ସମ୍ଭବ ନଥିଲା ।

ଦେଶ ସ୍ୱାଧୀନ ହେଲା । ଆମେ ଭାବିଥିଲୁ ଏଥର ସାମାଜିକ ପରିବର୍ତ୍ତନ ଘଟିବ । ବଦଳିବ ପୁରୁଣା ବ୍ୟବସ୍ଥା । ସମସ୍ତେ ସମାନ ଅଧିକାର ପାଇବେ । ଗାନ୍ଧିଜୀଙ୍କ ସ୍ୱପ୍ନ ଥିଲା ଏଇଟା । କେହି ମୌଳିକ ଅଧିକାରରୁ ବଞ୍ଚିତ ହେବେନି । ମାର୍କ୍ସ ବି ଏଇକଥା କହୁଥିଲେ, କହୁଥିଲେ ଶ୍ରେଣୀ-ବିହୀନ-ସମାଜର କଥା ।

ଗାନ୍ଧିଜୀ ଆଖି ବୁଜିଲେ । ତାଙ୍କ 'ସ୍ୱଦେଶୀ ସ୍ୱପ୍ନ'କୁ ବାସ୍ତବରେ ପରିଣତ କରିବାର ବହୁବିଧ ପରିକଳ୍ପନା ଭିତରେ କ୍ରମଶଃ ଆମେ ମୂଳଲକ୍ଷ୍ୟ ଓ ଉଦ୍ଦେଶ୍ୟଠାରୁ ଦୂରେଇବାକୁ ଲାଗିଲୁ । ଏଇ ଶ୍ରେଣୀବିହୀନ ସମାଜର ପ୍ୟାଟର୍ଣ୍ଣଟା ବଦଳିଯାଇ କ୍ରମଶଃ ସମାଜରେ ସୃଷ୍ଟି ହେଲା ଏକାଧିକ ମତବାଦ ଏବଂ ଗୋଷ୍ଠୀ । ଶ୍ରେଣୀବିହୀନ ସମାଜର ଡାକରା ଦେଉଥିବା ସତ୍ତ୍ୱେ ଥିଲାବାଲା ନିଜ ନିଜ ସୁଖସୁବିଧା ଖୋଜିଲେ । ଗାନ୍ଧିଜୀଙ୍କ ଅନୁଗତମାନେ ସାମ୍ୟତାକୁ ସମାଜରେ ପ୍ରତିଷ୍ଠା ଦେବାପାଇଁ ବିଭିନ୍ନ ପ୍ରତିଯୋଗିତାର ଆଶ୍ରୟ

Digitized by PPRACHIN, SOA

ନେଲେ । ଫଳ ଏକା କଥା ହେଲା । ଥିଲା ବାଲା ଆଗକୁ ବଢ଼ିଲେ ନିଜ ଅର୍ଥ-ବିଦ୍ୟା-ବୁଦ୍ଧି ବଳରେ । ସରଳ ନିରୀହ ନଥିଲା ମଣିଷ ପଛରେ ପଡ଼ିଲେ ।

ସ୍ୱାଧୀନତାର ସତୁରୀ ବର୍ଷ ବିତିଗଲାଣି, ଆଜି ବି ଏ ଦେଶର ଅଧେରୁ ଅଧିକା ମଣିଷ ଏଇ ସର୍ବନିମ୍ନ ମୌଳିକ ଅଧିକାରରୁ ବଞ୍ଚିତ- ଶିକ୍ଷା, ସ୍ୱାସ୍ଥ୍ୟ ଅନ୍ୟାନ୍ୟ ସୁବିଧା କଥା ଦୂରେ ଥାଉ । ଏଇ ନଥିଲା ମଣିଷ ଥିଲାବାଲାଙ୍କ ଅନୁଗ୍ରହକୁ ଚାହିଁ ଚାହିଁ, ଗାଁରୁ-ସହରରୁ-ବସ୍ତି, ବସ୍ତିରୁ-ଫୁଟ୍‌ପାଥ୍-ଭଙ୍ଗାଘର, ଗ୍ୟାରେଜ, ଷ୍ଟେସନ ୟାର୍ଡ ନହେଲେ ଗଛମୂଳ- ଖୋଲା ଆକାଶ ତଳେ ଆଶ୍ରୟ ନେବା ବ୍ୟତୀତ ଆଉ କ'ଣ ବା ଉପାୟ ଅଛି ? କାହା ଦୟା ଆଶ୍ୱାସନା କି ସହାନୁଭୂତିରୁ କାଣିଚାଏ ମିଳିଗଲେ କିଛି ସମୟ ସେଠି ଆଉଜି ଯିବା କଥା । ଆଉଜୁଆଉଜୁ ସମୟକୁ ଅପେକ୍ଷା- କେବେ ଏଇ ଅନ୍ଧାର ରାତି କଟିବ- ଆଲୁଅ ଦିଶିବ ।

ମଣିଷ ସହଜରେ ହାର ମାନିବାକୁ ଚାହେଁନା- ଅପେକ୍ଷା ରଖେ ସୁଯୋଗକୁ-ପରିସ୍ଥିତି ସହିତ ଲଢ଼େଇ କରେ- ଜୀବନକୁ ବନ୍ଧୁବାଟରେ ସାମ୍ନା କରି ବଞ୍ଚିବା ଶିଖେ । ତାକୁ କିଏ ପ୍ରେରଣା ଦେଉ କି ନଦେଉ ସେଇ ଶକ୍ତିକୁ ନିଜ ଭିତରୁ ହିଁ ଆହରଣ କରି ଆଗକୁ ବଢ଼େ । ସମୟ ସୁଅରେ ଭାସୁ ଭାସୁ କେତେବେଳେ କେମିତି ଅନ୍ୟମାନଙ୍କ ଉପରୁ ବିଶ୍ୱାସ ଦୋହଲି ଗଲେ ବି ନିଜ ଉପରୁ ବିଶ୍ୱାସ ହରାଏନା- ଆଶା ମରେନା-ବରଂ ନିଜ ଭିତରେ ଥାଇ ଦିହୁଡ଼ି ଜାଳେ, ବାଟ ଦେଖାଏ- ହତାଶାକୁ ପୋଛି ଅସହାୟ ମଣିଷ ଅପେକ୍ଷା କରେ ନୂଆ ସକାଳକୁ । ଭାବେ, ସବୁ ରାତିର ସକାଳ ଅଛି । ସିନ୍ଦୂରା ଫାଟିବ... ନୂଆ ବାର୍ତ୍ତା ନେଇ ସକାଳ ଆସିବ... ପୁଣି କଅଁଳି ଉଠିବ ଜୀବନ... ଆଶା ମୁକୁଳିବ... ସ୍ୱପ୍ନ ଦେଖେ ସେ ସେଇ ସତେଜ ସକାଳର.... ଅନନ୍ତ ସମ୍ଭାବନାର... ସବୁଜ ଜୀବନ ସମ୍ଭାରର... ।

ସେଇ ଅନନ୍ତ ସମ୍ଭାବନା ଆଉ ସବୁଜ ସମ୍ଭାରର ଉଜ୍ଜ୍ୱଳ ଦିଗନ୍ତକୁ ଉନ୍ମୋଚିତ କରିଛି 'ସିନ୍ଦୂରା ଫାଟିବାର ବେଳ' । ଏଇ ଅନନ୍ତ ସମ୍ଭାବନାକୁ ବାସ୍ତବରୂପ ଦେବାରେ ଉପନ୍ୟାସର ଚରିତ୍ରମାନଙ୍କର ପ୍ରୟାସ ଓ ପ୍ରଚେଷ୍ଟାର ଅନ୍ତ ନାହିଁ । ଅନ୍ୟ ପ୍ରକାରେ କହିଲେ ଏଇ ସମୟ ସୁଅରୁ ଛିଟିକି ପଡ଼ିଥିବା ଅସହାୟ ଭିନ୍ନକ୍ଷମ କେଶବା ପରିବାରର ଜୀବନ ସଂଘର୍ଷର କାହାଣୀ ହେଉଛି 'ସିନ୍ଦୂରା ଫାଟିବାର ବେଳ' ।

ଦ୍ୱିତୀୟ ଉପନ୍ୟାସ 'ଏଇ ରାସ୍ତାଟା ମୋର ନଥିଲା'- ଏଥିରେ ମଧ ସେଇ ଚିରନ୍ତନ ଥିଲା ନଥିଲାର ମୌଳିକ ସମସ୍ୟା ଓ ସଂଘର୍ଷର କଥା । ତେବେ ଏଇ ସଂଘର୍ଷର ସ୍ୱରୂପ ଭିନ୍ନ । ବିଗତ ଦଶନ୍ଧିମାନଙ୍କରେ ମୁଣ୍ଡ ଟେକିଥିବା ବିଭିନ୍ନ ମତବାଦ ଓ ବିଚାର ଭିତରେ ବି ସେଇ ଏକା ଦାବି- ସମସ୍ତଙ୍କ ବଞ୍ଚିବାର ସମାନ ଅଧିକାର ।

Digitized by PPRACHIN, SOA

ବିଗତ ଦଶନ୍ଧି ଦଶନ୍ଧି ଧରି ମଣିଷକୁ ସଶକ୍ତିକରଣ କରିବା ପାଇଁ କିଛି କମ୍ ଉଦ୍ୟମ ହୋଇନି । ଗାନ୍ଧିଜୀଙ୍କ ସ୍ୱପ୍ନ, ମାର୍କ୍ସଙ୍କ ସାମ୍ୟବାଦ, ବିନୋବାଙ୍କ ଭୂଦାନ ସଂସ୍କାର, ନବଚୌଧୁରୀଙ୍କ ଜମିଜମା ବନ୍ଦୋବସ୍ତ, ଭାଗଚାଷୀ ଥଇଥାନ ସବୁ ଅଧାବାଟରେ ରହିଯାଇଛି । ନିଃସ୍ୱ ମଣିଷକୁ ମୂଳ ଲାଗି ପେଟ ପୋଷିବାର ବାଟ କେହି ଦେଖାଇବାରେ ସମର୍ଥ ହୋଇନାହାନ୍ତି । ପଞ୍ଚବାର୍ଷିକ ଯୋଜନାମାନଙ୍କରେ ବିକାଶ ପାଇଁ ବହୁମୁଖୀ ଯୋଜନାମାନ ଥିବା ସତ୍ତ୍ୱେ, ବେକାରୀ, ବେରୋଜଗାରୀଙ୍କ ସଂଖ୍ୟା ବଢ଼ିଛି । ଜନସଂଖ୍ୟାର ବୃଦ୍ଧି ସହିତ, ଜୀବନ ବଞ୍ଚିବାର ଏକ ନିଶ୍ଚିତମାର୍ଗ ଖୋଜି ନପାରି ଶିକ୍ଷିତ ଯୁବ ଗୋଷ୍ଠୀ ହତାଶ ହେଉଛନ୍ତି- ଈଶ୍ୱର ଉପରୁ ବିଶ୍ୱାସ ତୁଟିଛି, ନିଜ ଉପରୁ ଆସ୍ଥା ହରେଇଛନ୍ତି । ଆଗକୁ ଅପେକ୍ଷା କରିବାର ଧୈର୍ଯ୍ୟ ନାହିଁ- ଜଗତୀକରଣ, ବଜାର ସଂସ୍କୃତିକୁ ବଢ଼େଇଛି- ସମସ୍ତେ ଏଠି ଉପଭୋକ୍ତା, ସମାଜକୁ ଉଚିତ ମାର୍ଗଦର୍ଶନ ଦେବାକୁ ଗାନ୍ଧି-ଗୋପବନ୍ଧୁଙ୍କ ଭଳି ନେତାଙ୍କର ଅଭାବ ଅନୁଭବ କରିଛି ଦେଶ ।

ଏହି ସନ୍ଧିକ୍ଷଣରେ ମାଓବାଦର ଜନ୍ମ- ମାଓସେ ତୁଙ୍ଗଙ୍କ ନୂଆଁ ଡାକରା- 'ଛଡ଼େଇ ଆଣ ନିଜ ଅଧିକାରକୁ... ଯେଉଁମାନେ ତୁମକୁ ଲୁଣ୍ଠନ କରି ସର୍ବସ୍ୱାନ୍ତ କରିଛନ୍ତି, ନିପାତ କର ତାଙ୍କୁ'- ଅବ୍ୟବସ୍ଥିତ, ଅପରିଣାମଦର୍ଶୀ, ଭାବପ୍ରବଣ ତଥା ହତାଶ ହେଉଥିବା ଯୁବକ ଯୁବତୀଙ୍କୁ ଏଭଳି ଅଗ୍ନିଗର୍ଭା ଭାଷଣରେ ତତେଇ ଦେବା ପାଇଁ ଖୁବ୍ ସ୍ୱାଭାବିକ ଥିଲା । ଆରମ୍ଭ ହେଲା ସଂଘର୍ଷ । ଘଞ୍ଚ ଜଙ୍ଗଲ, ଅଗମ୍ୟ ପାହାଡ଼ ପର୍ବତ ଭିତରେ ଶିବିର ପକେଇଲେ ଆତଙ୍କବାଦୀ । ବହୁ ସଂଖ୍ୟାରେ ଜଙ୍ଗଲ ଅଧିବାସୀଙ୍କୁ ଆନ୍ଦୋଳନ ନାଁରେ ଦଳଭୁକ୍ତ କଲେ- ବେକାର ଯୁବକଯୁବତୀଙ୍କୁ ସ୍ୱେଚ୍ଛାସେବୀ ସଂଗଠନ ମାଧ୍ୟମରେ ସ୍ୱପ୍ନ ଦେଖାଇ ପ୍ରତାରିତ କଲେ ନେତା ବୋଲାଉଥିବା ସୁଖାନ୍ୱେଷୀ ମଣିଷ । ନିଃସ୍ୱ ମଣିଷ କିଛି ଆଗପଛ ଚିନ୍ତା ନକରି ଡେଇଁ ପଡ଼ିଥିଲେ ସଂଘର୍ଷ ଭିତରକୁ । ଠିକ୍ ଉପନ୍ୟାସର ମୁଖ୍ୟ ଚରିତ୍ର ଅବନୀ ପରିଡ଼ା ଭଳି । ଥରେ ସେଇ ଆଇଁଷିଣିଆ ଲାଲ କରିଡୋରରେ ପାଦଦେଲା ପରେ ଆଉ ଫେରିବାର ବାଟ ନଥାଏ । କୌଣସି ନା କୌଣସି ଜାଲ ବିସ୍ତାର କରି ଦଳ ଓ ଦଳପତିଙ୍କ ନିର୍ଦ୍ଦେଶ କ୍ରମେ କଞ୍ଚା ମଣିଷକୁ ହାଣିକାଟି ସରଳ ମଣିଷ ପୋଲିସ ଖାତାରେ ନାଁ ଲେଖେଇ ଅପରାଧୀ ସାଜେ । ତା'ପରେ ଆରମ୍ଭ ହୁଏ ସଂପର୍କଶୂନ୍ୟ ପଶୁର ଜୀବନ- ଘୃଣ୍ୟ ଜୀବନଯାତ୍ରା- ଲୁଣ୍ଠନ, ଅପହରଣ, ବିସ୍ଫୋରଣ, ହତ୍ୟା, ଥାନା ଆକ୍ରମଣ, ଅବରୋଧ ଭଳି ଭୟଙ୍କର କାର୍ଯ୍ୟକ୍ରମ ଭିତରେ ମଣିଷ ପଶୁ ପାଲଟିଯାଏ ଏବଂ ଭାବେ, ଏ ରାସ୍ତାଟା ତା'ର ନଥିଲା- ସେ ଭୁଲ କରିଛି ।

...ଯଦି କୋଉ ଦୁର୍ବଳ ଅସହାୟ ମୁହୂର୍ତ୍ତରେ ସେଇ ପଶୁ ଭିତରେ ଜ୍ଞାନୋଦୟ ହୁଏ, ଉତୁରି ଆସେ ମଣିଷ ପଣିଆ ଏବଂ ଭାବେ ଆଉ ପାଞ୍ଚଦଶଟାଙ୍କ ଜୀବନକୁ ସଢାଡ଼ି

Digitized by PPRACHIN, SOA

ସେମାନଙ୍କ ପାଟିରେ ମୁଠେ ଦାନା ଦେଇ, ହସ ଫୁଟେଇ, ନିଜେ ହିସିବ ବୋଲି ସିନା ସେ ଶିବିରରେ ଯୋଗ ଦେଇଥିଲା; କାମ କରିବ ଦେଶପାଇଁ, ଭୋକିଲା ମଣିଷଙ୍କ ପାଇଁ ଆଦର୍ଶ ହିଁ ଟାଣି ନେଇଥିଲା ତାକୁ ଏଇ ରାସ୍ତାରେ ହେଲେ ରକ୍ତର ହୋରିଖେଳ ଭିତରେ ମୂଳ ଉଦ୍ଦେଶ୍ୟଟା କୁଆଡ଼େ ଉଭେଇ ଯାଇଛି । ମୂଲ୍ୟବାନ୍ ସମୟକୁ ନଷ୍ଟ କରିସାରି, ଦେଖୁଛି ଏଇସବୁ ସଂଗଠନ ପଛରେ କିଛି ଉଦ୍ଦେଶ୍ୟ ନାହିଁ, ଥିଲେ ନେତାମାନେ ଲୁଚିଛପି ରହନ୍ତେ କାହିଁକି ? ଗାନ୍ଧିଙ୍କ ଭଳି ସାମ୍ନାକୁ ଆସି ଦାବି ଜଣେଇ ପାରନ୍ତେ ନାହିଁ ? ମଣିଷ ମାରିବା କ'ଣ ଆବଶ୍ୟକ ? ? ବାରମ୍ବାର ନିଜକୁ ପ୍ରଶ୍ନ କରିଛି ଉପନ୍ୟାସର ନାୟକ କ୍ୟାଡ଼ରମାଓବାଦୀ ଅବନୀ ପରିଡ଼ା । ଅସୁମାରି ପ୍ରଶ୍ନର ଜାଲରେ ଛନ୍ଦି ହୋଇ ଅକାତକାତ ଅନ୍ଧାରର ସମୁଦ୍ର ଭିତରେ ଉବୁଟୁବୁ ହେଉଥିବା ସ୍ଥିତିରେ ଆମେ ସୁଦାମମାଷ୍ଟ୍ରଙ୍କ ସାନପୁଅ, ହୁଣ୍ଡା ଅବନୀ ପରିଡ଼ା ହାର୍ଡକୋର ମାଓବାଦୀ 'ଅବନୀ' ଓରଫ୍ 'ମନିଷ'କୁ ଭେଟୁ ।

ସେତେବେଳକୁ ତା'ର ଆତ୍ମସମୀକ୍ଷା ଭିତରେ ଆରମ୍ଭ ହୋଇଯାଇଥାଏ 'ଆତ୍ମସମର୍ପଣ'ର ମହାପର୍ବ । ନାଟକୀୟ ଭାବେ ଉପନ୍ୟାସର ସମାପ୍ତି ଘଟେ । ଗୋଟାଏ ଜଙ୍ଗଲୀ ଷ୍ଟେସନରେ ସାପ୍ତାହିକ ଏକ୍ସପ୍ରେସ୍‌କୁ ଲ୍ୟାଣ୍ଡମାଇନ୍‌ରେ ଉଡ଼େଇଦେବାର ଗୁରୁଦାୟିତ୍ୱ ବହନ କରିଥିବା ଅବନୀ ଅଧା ରାସ୍ତାରେ ବାଟ ଭାଙ୍ଗି ଆତ୍ମଗୋପନ କରିବାର ବାଟ ଖୋଜୁ ଖୋଜୁ ପହଞ୍ଚିଯାଏ ଜନ୍ମମାଟି ଧରପୁରର ଖେଳପଡ଼ିଆରେ । ଚାରିଆଡ଼େ ଅନ୍ଧାର ଜେସି ହୋଇଥାଏ... ହଠାତ୍ ତା' ଭିତରେ ଏକ ଭିନ୍ନ ଭାବର ଉତ୍ତରଣ ଘଟେ । ସେ ସତେ କି ସନ୍ନ୍ୟାସୀ ପାଲଟି ଯାଏ । ଧ୍ୟାନମଗ୍ନ ସନ୍ନ୍ୟାସୀ- ଗୌତମ ବୁଦ୍ଧଙ୍କ ଭଳି ଆଉ ତା' ପିଲାଦିନର ଏଇ ଖେଳପଡ଼ିଆ ପାଲଟିଯାଏ ନୀଳନିରଞ୍ଜନା- ସାମ୍ନାର ଆମ୍ବଗଛଟା, ଯାହା ଛାଇତଳେ ବସି ସେ ନିଜ ମନର ରୁଦ୍ଧଦ୍ୱାରକୁ ଖୋଲି ନେଉଥିଲା, ସେ ହୋଇଯାଏ ବୋଧିଦ୍ରୁମ; ଦେଖେଇଦିଏ ମୁକ୍ତିର ମାର୍ଗ । ଗୌତମ ବୁଦ୍ଧତ୍ୱ ପ୍ରାପ୍ତି ପରେ ଥରେ ଯାଇଥିଲେ ରାଜପ୍ରାସାଦକୁ ମା'ଙ୍କୁ ଶେଷ ପ୍ରଣାମ ଜଣେଇବାକୁ... ସେ ବି ଘରକୁ ଯିବ ବୋଉଠୁ ଶେଷ ବିଦାୟ ନେଇ ଆସିବ... ହାତରେ ମାତ୍ର କେଇଘଣ୍ଟାର ସମୟ । ଘରମୁହାଁ ହୋଇଛି ଅବନୀ ଏବଂ ଉପନ୍ୟାସର ଶେଷ ପୃଷ୍ଠାରେ ପୋଲିସ୍ ଆଗରେ ଆତ୍ମସମର୍ପଣ କରିବା ପୂର୍ବରୁ ପଶ୍ଚାତାପ ଏବଂ ଅପରାଧବୋଧର ନିଆଁରେ ଗାଧୋଇ ସଂହାରକାରିଣୀ, ଦଶଭୂଜା ଭଳି ପ୍ରତୀୟମାନ ହେଉଥିବା ବୋଉ ଆଗରେ ନିଜକୁ ସମର୍ପଣ କରି କ୍ଷମା ଭିକ୍ଷା କରିଛି । ଉପନ୍ୟାସର କାହାଣୀ ଅତୀତସ୍ମରଣ ପଦ୍ଧତିରେ ଆରମ୍ଭ ହୋଇ- ଅନ୍ତ ହୋଇଛି ଆତ୍ମସମର୍ପଣରେ ।

'ନିଃଶବ୍ଦ ସଂଳାପ' ଏକ ଭିନ୍ନରୁଚିର କ୍ଷୁଦ୍ର ଉପନ୍ୟାସ ଅଥବା ଉପନ୍ୟାସିକା କୁହାଯାଇପାରେ । କାରଣ ଏଠି କାହାଣୀର ବ୍ୟାପ୍ତି ଓ ପରିଧିରେ ବିଶେଷ ଘନଘଟା

Digitized by PPRACHIN, SOA

ନାହିଁ । ସ୍ୱାଭାବିକ ଢଙ୍ଗରେ କାହାଣୀର ଆରମ୍ଭ ହୋଇଥିଲେ ହେଁ ନାଟକୀୟ ଭାବେ ପରିସମାପ୍ତି ଘଟିଛି । ଏଥିରେ ଚରିତ୍ରମାନଙ୍କର ବିଶେଷ ଗହଳି ନାହିଁ । ଅବଶ୍ୟ କାହାଣୀ ପ୍ରଖ୍ୟାପନ ଶୈଳୀରେ କିଛିଟା ସ୍ୱାତନ୍ତ୍ୟ ପରିଲକ୍ଷିତ ହୁଏ । କାହାଣୀରେ ଚରିତ୍ରମାନଙ୍କର ମାନସିକ କ୍ରିୟା ପ୍ରତିକ୍ରିୟା ଓ ଭାବଭାବନାକୁ ବ୍ୟକ୍ତ କରିବାରେ ସଂସାରର ନିତିଦିନିଆ କାର୍ଯ୍ୟକ୍ରମଗୁଡ଼ିକର ବର୍ଣ୍ଣନା ବାଧକ କିମ୍ବା ଅତିରଂଜିତ ନହୋଇ ସ୍ୱାଭାବିକ ମନେହେଉଛି । କାହାଣୀର ମୁଖ୍ୟ ଚରିତ୍ର ସିକତା । ସ୍ୱାମୀ ସୌମ୍ୟ ସୁପ୍ରିୟ ଓ ଝିଅ ନିମିକୁ ନେଇ ତା'ର ଚଳନ୍ତି ସଂସାର । ସୁପ୍ରିୟ ଜଣେ ପଦସ୍ଥ ଅଫିସର । ରୂପ, ଗୁଣ, ବ୍ୟକ୍ତିତ୍ୱ ସବୁଥିରେ ସେ ବାଛି ହେଇଗଲା ଭଳି । ନିଦରୁ ଉଠିବାଠୁ ନିଦ ହେବା ଯାଏ ଆଦର୍ଶ ଗୃହିଣୀ ସିକତା ନିଜ ପରିବାରକୁ ସୁଖି ରଖିବା ପାଇଁ ଚରଖି ଭଳି ଘୂରି ବୁଲୁଥାଏ । ସଂସାରର ଯାବତୀୟ କାମଗୁଡ଼ିକୁ ନିର୍ଭୁଲ ଭାବେ ସମୟୋଚିତ ଢଙ୍ଗରେ ତୁଲେଇବାର କୌଶଳକୁ ସେ ଅଭ୍ୟାସରେ ପକେଇ ନେଇଛି ।

ଆଗରୁ ସେ ଅଧାପନା କରୁଥିଲା । କିନ୍ତୁ ସୁପ୍ରିୟ ଓ ତାଙ୍କ ପରିବାର ଇଚ୍ଛା କଲେନି ସେ ଚାକିରି କରୁ । ପୁରୁଷଶାସିତ ସମାଜ ବ୍ୟବସ୍ଥାରେ ଏଇ ଇଚ୍ଛାଟା ବି ଗୋଟିଏ ଆଭିଜାତ୍ୟର ଚିହ୍ନ । ବାସ, ସେଇଦିନୁ ସେ ଘରୁ ବାହାରିନି । ନିଜ ଭିତରେ ପୋଷି ରଖିଥିବା ସୃଜନଶୀଳତା ଓ ଯେତେସବୁ ସମ୍ଭାବନାକୁ ରୋଷେଇ ଘର ଥାକରେ ଥୁଆ ହେଇଥିବା ଡବାମାନଙ୍କ ଭିତରେ ଠିପି ଦେଇ ଥୋଇଦେଇଛି । ଆଜି ତା'ର ପରିଚୟ କେବଳ ସୁପ୍ରିୟଙ୍କ ଅନୁଗତା ପତ୍ନୀ ଓ ନିମିର ମା' । ଯଦିଓ ସୁପ୍ରିୟଙ୍କ ପରିବାର ତା'ଠୁ ଅନେକ କିଛି ଆଶା କରନ୍ତି- ସେ କିନ୍ତୁ ସମସ୍ତଙ୍କୁ ସମ୍ପୂର୍ଣ୍ଣ ଭାବେ ସନ୍ତୁଷ୍ଟ କରିପାରେନା- ସମ୍ଭବ ନୁହେଁ । କର୍ତ୍ତବ୍ୟ ଓ ତେଲ ଲୁଣର ବାସ୍ନା ଭିତରେ ତା' ନିଜ ଇଚ୍ଛାର ଦିଗନ୍ତ ସଙ୍କୁଚିତ ହୋଇଯାଇଛି ।

କାହାଣୀର ଅନ୍ୟତମ ପ୍ରଭାବଶାଳୀ ଚରିତ୍ର ଇଂରାଜୀ ଅଧାପକ, ସାହିତ୍ୟାନୁରାଗୀ ଅଜିତ୍ । ବୟସରେ ଛୋଟ ହେଲେ ବି ସିକତାର ବନ୍ଧୁ, ତା' ପ୍ରତିଭାର ଜଣେ ମୁଗ୍ଧ ପ୍ରଶଂସକ । ସ୍ପଷ୍ଟବାଦୀ, ସ୍ନେହୀ ଏବଂ ସଳଖ ମଣିଷ । ସିକତା ପରିବାର ତାକୁ ପରିବାରର ଜଣେ ବୋଲି ଗ୍ରହଣ କରିନେଇଥିଲେ । ସୁପ୍ରିୟ ବି ତାକୁ ପରିବାରଭୁକ୍ତ କରି ଦେଇଛନ୍ତି ।

ସେଇକ୍ରମରେ ଦିନେ ସିକତାର ବହିଥାକ ଓ ଆଲମିରା ଘାଣ୍ଟୁ ଘାଣ୍ଟୁ ଅଚାନକ ଉପନ୍ୟାସର ପାଣ୍ଡୁଲିପିଟିଏ ଆବିଷ୍କାର କରେ ଅଜିତ୍ । ସିକତାର ଲେଖା 'ନିଃଶବ୍ଦ ସଂଳାପ' ପଢୁପଢୁ ବିଭୋର ହେଇପଡ଼େ ଅଜିତ୍ । ପ୍ରଶଂସାରେ ଶତମୁଖ ହେଇ କୁହେ- ଏତେ ସୁନ୍ଦର କ୍ରିଏସନ୍‌କୁ ତୁମେ ପ୍ରକାଶ କରିବାକୁ ନଦେଇ ବହିଥାକ ଭିତରେ ମାଡ଼ି ରଖିଛ କାହିଁକି ନାନୀ, ଏ ଯାଏ ବି ତୁମେ ନିଜକୁ ମାପି ପାରିଲନି ନା ?

Digitized by PPRACHIN, SOA

ପାଖ ଟେବୁଲ୍‌ରେ ଜରୁରୀ କାଗଜପତ୍ର ଦେଖୁଥିବା ସୁପ୍ରିୟଙ୍କ କାନରେ କଥାଟା ବାଜେ । ମୃଦୁ ହସି ସେ ଆକ୍ଷେପ କଲା ଢଙ୍ଗରେ କୁହନ୍ତି- ଖାଲି କ'ଣ ପ୍ରକାଶ କରିବ, ତମର ଯୋଉ ବଡ଼ ପୁରସ୍କାର ସାହିତ୍ୟର, ତା' ପାଇଁ ବି ସୁପାରିଶ କରିବା କଥା ।

ଅଜିତ୍‌କୁ କଥାଟା ଭଲ ଲାଗେନା । ଉତ୍ତର ଦେବାକୁ ପ୍ରସ୍ତୁତ ହେଉଥିଲା ବେଳେ ସିକତା ପ୍ରସଙ୍ଗ ବଦଳାଇ ପରିସ୍ଥିତି ସମ୍ଭାଳି ନିଏ । ଅଯଥା ଅଶାନ୍ତି ସୃଷ୍ଟି କରିବାକୁ ସେ ଚାହେଁନା । ଅଜିତ୍ ବୁଝିପାରେ; ପ୍ରତିଭା ସବୁବେଳେ ଅଭିମାନୀ । ସେ ସହୃଦୟତା, ଶ୍ରଦ୍ଧା ଚାହେଁ । ସୁପ୍ରିୟଙ୍କ ରକ୍ଷଣଶୀଳ ସାମନ୍ତବାଦୀ ଚିନ୍ତାଧାରା ସିକତାର ପ୍ରତିଭାକୁ ସ୍ୱୀକାର କରେନା, ବରଂ ନିଜର ଦର୍ପିତ ପୌରୁଷ ଓ ପଦମର୍ଯ୍ୟାଦା ପାଇଁ ସେ ସଚେତନ । ଏଇ ପୁରୁଷ 'ଇଗୋ'ର ରତ୍ନମହଲ ଭିତରେ ସିକତାର ପ୍ରତିଭା କ୍ରମଶଃ ନିଷ୍ପ୍ରଭ ହୋଇଯାଉଛି । ଦୁଃଖ ଲାଗେ ଅଜିତ୍‌କୁ ।

ଘଟଣାର ଅନେକ ଦିନ ପରେ ସିକତାର ମନେପଡ଼େ ନିଜ ପାଣ୍ଡୁଲିପି କଥା । ସେ ଖୋଜେ କିନ୍ତୁ ପାଏନା । ନିଜକୁ ଅପରାଧୀ ମନେ କରେ । ନିଜ ସୃଷ୍ଟିକୁ ସେ ସଜାଡ଼ି ସାଇତି ରଖିପାରିନି, ଅଜିତ୍ ଠିକ୍ କୁହେ- 'ସେ ଖୁବ୍ ସିରିୟସ୍ ନୁହଁ ନିଜ ସଂପର୍କରେ' । ଅଜିତ୍ ସବୁବେଳେ ତା' ସଂପର୍କରେ ଭିନ୍ନ ମତ ପୋଷଣ କରେ- 'ଆଦର୍ଶ ଗୃହିଣୀ'ର କନସେପ୍ଟକୁ ସେ ଗ୍ରହଣ କରେନା, କୁହେ ଇଏ ଏକ ପ୍ରକାର ବ୍ଲାକ୍‌ମେଲିଂ । ଅଜିତ୍ ନାହିଁ ଦିଲ୍ଲୀ ଯାଇଛି- ଫେରିଲେ ପଚାରିବ ପାଣ୍ଡୁଲିପିଟିକୁ ସେ କୋଉଠି ଥୋଇଛି ।

'ନିଃଶବ୍ଦ ସଂଳାପ' କାହାଣୀ ଭିତରେ କାହାଣୀଟିଏ । ଉପନ୍ୟାସର ମୂଳ କାହାଣୀ ଭାଗରେ ତା'ର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ । ଅଣନିଃଶ୍ୱାସୀ ଅବସ୍ଥାରେ ସମୟର ବହିଥାକ ଭିତରୁ ଦିନେ ସାହିତ୍ୟପ୍ରେମୀ ଅଜିତ୍ ହିଁ ଉଦ୍ଧାର କରେ ପାଣ୍ଡୁଲିପିଟିକୁ ପୁଣି ହଜିଯାଏ ସେ ସମୟର ଲୁଚକାଳି ଖେଳରେ । ବ୍ୟସ୍ତ ବିବ୍ରତ ସିକତାକୁ ଦିନେ ଚମକେଇ ଦେଇ ଆକାଶର ଜହ୍ନ ହାତରେ ଖସି ପଡ଼ିଲା ପରି ନାଟକୀୟ ଭାବେ ଆତ୍ମପ୍ରକାଶ କରେ 'ନିଃଶବ୍ଦ ସଂଳାପ' ପୁସ୍ତକ ଆକାରରେ । ବହିଟିର ପ୍ରତ୍ୟର୍ପଣ ପାର୍ଟିକୁ ନିମନ୍ତ୍ରଣ କରେ ଅଜିତ୍ ସୁପ୍ରିୟ ଏବଂ ସିକତାଙ୍କୁ, ମାତ୍ର ସୁପ୍ରିୟ ଯିବା ପାଇଁ ମନା କରନ୍ତି ।

ହଜିବା, ଖୋଜିବା ଏବଂ ବାଙ୍‌ମୟ ପୃଥିବୀର ଆଲୋକ ଦେଖିବା ମୂଳରେ ଯୋଉ ନାଟକୀୟ ଉଠାପକା ଓ ଉତ୍କଣ୍ଠା, ବାସ୍ତବରେ ମୂଳକାହାଣୀକୁ ସକ୍ରିୟ କରି ରଖିବାରେ ସାହାଯ୍ୟ କରିଛି । ଅଜିତ୍ ଏବଂ ଦିଲ୍ଲୀର ବିଶିଷ୍ଟ ପ୍ରକାଶକ ପୁଷ୍ପେନ୍ଦୁ ଚୌଧୁରୀଙ୍କ ମିଳିତ ପ୍ରୟାସରେ ପୁସ୍ତକଟି ଲୋକଲୋଚନକୁ ଆସିପାରିଛି, କହିଲେ ଅତ୍ୟୁକ୍ତି ହେବନାହିଁ । ଏ କ୍ଷେତ୍ରରେ ଅଜିତ୍‌ର ସ୍ୱୀକାରୋକ୍ତି- "ସେଦିନ କୌତୂହଳବଶତଃ ପାଣ୍ଡୁଲିପି ଭିତରକୁ ପଶି ଚକିତ ହୋଇଗଲି ନାନୀ... ଏତେ ସୁନ୍ଦର ଲେଖା ଆଲମିରା ଭିତରେ ବନ୍ଦୀ ହୋଇ

Digitized by PPRACHIN, SOA

ପଢ଼ିଛି ଉପନ୍ୟାସର ନାୟିକା ଭଳି... ଭାବିଲି ତାକୁ ସେଇ ନିଃଶବ୍ଦ ଇଲାକା ଭିତରୁ ମୁକୁଳେଇ, ଶବ୍ଦର ବୈଚିତ୍ର୍ୟମୟ ଦୁନିଆର ଆଲୁଅ ଦେଖେଇବି ।" ପୁଷ୍ପେନ୍ଦୁ ଚୌଧୁରୀ କୁହନ୍ତି- "ସତରେ ମୁଁ ଅଭିଭୂତ ହୋଇଗଲି ଆପଣଙ୍କ ଅନନ୍ୟା ପାଇଁ । ବହିଟି ଉଚ୍ଚ ଦରର । ଆପଣଙ୍କ କଲମର ପ୍ରଶଂସା ନକରି ରହିପାରୁନି ।"

'ନିଃଶବ୍ଦ ସଂଳାପ'- ଉପନ୍ୟାସରେ ଲେଖିକା 'ନନ୍ଦକର ଉଆସ' ଭିତରର କଥା ଉଲ୍ଲେଖ କରିଛନ୍ତି । ଏଥିରେ ମଧ୍ୟବିତ୍ତ ସାମାଜିକ ଜୀବନର ଚିତ୍ର ଫୁଟି ଉଠିଛି । ଅନନ୍ୟା ସେଇ ପରିବାରର ଯୋଗ୍ୟ ବୋହୂ । ମାର୍ଜିତ ରୁଚିବୋଧ, ପରିଚ୍ଛନ୍ନ ଚିନ୍ତାଧାରା, ସଂସ୍କାରଶୀଳ ମନ, ଅଖଣ୍ଡ ଆତ୍ମବିଶ୍ୱାସର ସହିତ ସେ ନିଜ ଭୂମିକା ତୁଲେଇଛି । ସମସ୍ତ ଚରିତ୍ର କମିଟେଡ୍ । ପରିସ୍ଥିତି ଓ ପରିବେଶ ସହିତ ଅହରହ ସେ ସାଲିସ କରିଆସିଛି । ତା'ର ବିଶ୍ୱାସ ଦିନେ ସମୟ ଆସିବ ପୁରୁଷ ନାରୀକୁ ବସ୍ତୁ ଅଥବା ଆଜ୍ଞାଧୀନା ନଭାବି, ସଖୀଟିଏ, ବନ୍ଧୁଟିଏ ବୋଲି ଗ୍ରହଣ କରିବ । ଲେଖିକାଙ୍କ କଲମ ମାଟି ଆଉ ଆକାଶର କଥା କହିଛନ୍ତି । ଚିରୁଡ଼ାଏ ମାଟି ଭିତରେ ଚରିତ୍ରମାନେ ଏକ ବୃହତ୍ତର ସମାଜର ସ୍ୱଚ୍ଛ ସଜଡ଼ା ଜୀବନର ଇଙ୍ଗିତ ଦେଇଛନ୍ତି- 'ସତରେ ଅନନ୍ୟା ହିଁ ଅନନ୍ୟା' ।

ପୁଷ୍ପେନ୍ଦୁ ଜଣେ ବିଶିଷ୍ଟ କ୍ରିଟିକ୍ ମଧ୍ୟ, ଅଜିତ୍ ଜାଣିଥିଲା ଆଗରୁ । ପୁସ୍ତକଟିକୁ ସିକତା ହାତରେ ପ୍ରତ୍ୟାର୍ପଣ କରିବା ଅବକାଶରେ ପୁସ୍ତକର ଆଲୋଚନା, ପର୍ଯ୍ୟାଲୋଚନା ଭିତରେ 'ନିଃଶବ୍ଦ ସଂଳାପ'ର ଆଙ୍ଗିକ ଓ ଆତ୍ମିକ ରୂପକୁ ପରୋକ୍ଷରେ ପାଠକମାନଙ୍କ ସହିତ ପରିଚୟ କରାଇ ଦେବାରେ ବେଶ୍ ସାହାଯ୍ୟ କରିଛନ୍ତି ପୁଷ୍ପେନ୍ଦୁ ଚୌଧୁରୀ ।

ତାଙ୍କ ମତରେ, ଲେଖିକା ପରିବର୍ତ୍ତନକୁ ସ୍ୱୀକାର କରନ୍ତି । ଯୋଉ ପରିବର୍ତ୍ତନ ମଣିଷକୁ ଉତ୍ତରଣ ଆଡ଼କୁ ନନେଇ ନିମ୍ନମୁଖୀ କରାଏ, ସେଇ ପରିବର୍ତ୍ତନକୁ ହାଇଲାଇଟ୍ କରିବା ପାଇଁ ସେ କୁଣ୍ଠିତ । କିଛି ସ୍ଥିରତା ନାହିଁ ସେଇ ପରିବର୍ତ୍ତନରେ ତଥାପି ସମସ୍ୟା ତ ରହିଥିବ । ଜାତ୍ୟାଭିମାନୀ ନନ୍ଦକର ପରିବାର- ଝିଅ ରେବାର ବିବାହକୁ ସମର୍ଥନ କରୁନଥିଲେ ବି ଅନନ୍ୟା ନିଜର ସମର୍ଥନ ଦେଇଛି । ଅନାଥାଶ୍ରମରେ ବଢ଼ି ଆସିଥିବା କୌଶିକ ରେବା ପାଇଁ ଯୋଗ୍ୟପାତ୍ର । ଲେଖିକା ଏ କ୍ଷେତ୍ରରେ କନଫ୍ଲିକ୍ଟଗୁଡ଼ିକ ଚମତ୍କାର ଭାବେ ଉପସ୍ଥାପିତ କରଛନ୍ତି । ନାରୀର ସଙ୍କଟଜନକ ସ୍ଥିତି ସହିତ ସମସାମୟିକ କାଳ ଓ ପରିବେଶ ସଂପର୍କରେ ଲେଖିକା ସଚେତନ ।

ଖାଉ ଖାଉ ମିଃ. ଚୌଧୁରୀ ଚରିତ୍ରମାନଙ୍କ ଉପରେ ନିଜର ସ୍ୱତନ୍ତ୍ର ଦୃଷ୍ଟିକୋଣକୁ ଥୋଇବାକୁ ଯାଇ, ସିକତାକୁ କୁହନ୍ତି- ଉପନ୍ୟାସର ନାୟକ କ୍ଷିତିଶ୍ ନନ୍ଦକର ଜଣେ ଉଚ୍ଚାଭିଳାଷୀ ଅହଂସର୍ବସ୍ୱ ମଣିଷ- ଅଥଚ ଲେଖିକା ଏଭଳି ସାଧାରଣ ମଣିଷଟିକୁ ଅସାଧାରଣ ବୋଲି ପ୍ରତିପାଦିତ କରିବା ପାଇଁ କାହିଁକି ଯେ ଚେଷ୍ଟା କରିଛନ୍ତି- ବୁଝି ହୁଏନା । ସେ

Digitized by PPRACHIN, SOA

ସ୍ୱୀକାର ବି କରିଛନ୍ତି ନାରୀ କ୍ଷମାମୟୀ, ତ୍ୟାଗମୟୀ । ତା'ର ଏଇଟା ଜନ୍ମଗତ ଦୁର୍ବଳତା ଏବଂ ଏଇ ଦୁର୍ବଳତାକୁ ପୁରୁଷ ନିଜ ପାଇଁ ଢାଲ ଭଳି ବ୍ୟବହାର କରି, ଗୋଟାଏ ସୁନ୍ଦର ଇମେଜ୍ ତିଆରି କରେ ନିଜ ପାଇଁ ।

ତେବେ ତାଙ୍କର ପ୍ରଶ୍ନ ଲେଖିକାଙ୍କ ପାଇଁ- ମଣିଷ ଜୀବନଟା ବଡ଼ ବିଶୃଙ୍ଖଳ । ବଣୁଆ ଲଟା ଭଳି, ଅଡୁଆ ଡତୁଆ, ମଣିଷର ମନଟା ହିଁ ଏମିତି । ଆପଣ କ'ଣ ଏଇ ବଣୁଆ ରୂପକୁ ଭୟ କରିଛନ୍ତି ନା ଅଙ୍କ ସେ ସଂପର୍କରେ, ନା ନିଜର ସାମାଜିକ ସ୍ଥିତିକୁ ଭୟ କରନ୍ତି ? ଆପଣଙ୍କ ଅନନ୍ୟା ଚାହେଁନା ତା' ଜୀବନର କ୍ଷତକୁ ଦେଖୁ ଅଥବା ସହାନୁଭୂତି ଜଣାଉ । ତା'ର ବୋଧେ ସାମନା କରିବାର ସାହସ ନାହିଁ ? ଅଥବା ନିଜ ଅବଚେତନ ଭିତରେ ଆଙ୍କି ରଖିଥିବା 'ଆଦର୍ଶ ପୁରୁଷର ଛବି'କୁ ଅଜାଣତରେ ମଡ଼େଇ ଦେଇଛନ୍ତି କ୍ଷିତିଶ ଉପରେ ।

ଏଥର ସିକତା ଉତ୍ତର ଦେବା ପାଇଁ ପ୍ରସ୍ତୁତ ହୋଇଛି । କହିଛି, ନାରୀ ଦୁର୍ବଳା ନୁହେଁ । ତା'ର ଦମ୍ଭ ଅଛି ନିଜ କଥା କହିବାକୁ, ନିଜ ଗୋଡ଼ରେ ଠିଆ ହେବାକୁ । ତେବେ ଆମ ଦେଶର/ ପ୍ରାଚ୍ୟ ପରଂପରାରେ ପାରିବାରିକ ଜୀବନର ସୁସ୍ଥ ଚେହେରାଟା ଟିକିଏ ଭିନ୍ନ । ଜଣେ ପୁରୁଷ ଓ ନାରୀକୁ ନେଇ କେବଳ ପରିବାର ନୁହେଁ, ଅନେକ ସଂପର୍କର ସୂତାଖିଅ ତାକୁ ବାନ୍ଧି ରଖିଛି । ତେଣୁ କୌଣସି ପଦକ୍ଷେପ ନେଲାବେଳେ, ଏଇସବୁ ସଂପର୍କକୁ ବିଚାରକୁ ନେବାକୁ ହୁଏ- କେହି ଏଥିରେ ଆଘାତ ନପାଉ, ଅସମ୍ମାନିତ ନହେଉ । ନାରୀର ଭୂମିକା ଏଠି ସବୁଠୁ ଗୁରୁତ୍ୱପୂର୍ଣ୍ଣ- ତା'ର ମୂଳସୂତ୍ର ତ୍ୟାଗ ଓ କ୍ଷମା ଉପରେ ପ୍ରତିଷ୍ଠିତ । ସେଥିପାଇଁ ତା'ର ବ୍ୟକ୍ତିଗତ ସ୍ୱାଧୀନତା ବେଳେବେଳେ ଫ୍ରିଜ୍ ହୋଇଯାଏ ।

ବୋଧେ ସେଇଥିପାଇଁ ଅନନ୍ୟାର ଯେତେସବୁ ସମ୍ଭାବନା, ସଂକଳ୍ପ ଓ ଅସାଧାରଣତ୍ୱକୁ ଲେଖିକା ଫ୍ରିଜ୍ କରିଦେଲେ । ସମାଜର ରୁଗ୍ଣ ବ୍ୟବସ୍ଥା ବିରୋଧରେ ସେ ସ୍ୱର ଉତ୍ତୋଳନ କରିପାରିଲା ନାହିଁ- ସୁସ୍ଥ ସୁନ୍ଦର ପରମ୍ପରାଟିଏ ପ୍ରତିଷ୍ଠା କରିନପାରି ଛଟପଟ ହେଲା । ଚରିତ୍ରଟିର ଏତେ ସମ୍ଭାବନା ଥାଇ ମଧ୍ୟ, ବଳିଷ୍ଠ କରି ଗଢ଼ିସାରି ବି କାହାଣୀର ପ୍ରବାହରେ ତାକୁ ନେଇ ନିଃଶବ୍ଦ ଇଲାକା ଭିତରେ ନିର୍ବାସିତ କରିଦେଲେ- ଅନେକ ସୁଯୋଗ ଥିଲା ଉପନ୍ୟାସରେ ତା'ପାଇଁ । ଠିକ୍ ସେମିତି କ୍ଷିତିଶ ଚରିତ୍ର; ତାକୁ ସ୍ୱାଧୀନତା ଦେଇଥିଲେ- ସ୍ୱାଭାବିକ ଢଙ୍ଗରେ ନିଜକୁ ପ୍ରକାଶ କରିଥାନ୍ତା । କଥାସାରି ପୁଷ୍ପେନ୍ଦୁ ସିକତା ମୁହଁକୁ ଚାହିଁଲେ ।

ଠିକ୍ ସେତିକିବେଳେ ବାହାର କରିଡୋରରେ ସମବେତ ନାରୀ ପୁରୁଷଙ୍କ କଳରବ ଶୁଭିଲା- ଭାବନା ଛିଣ୍ଡିଗଲା । ବିଶେଷ କରି ସିକତାର ଝିଅ ନିମି ମଧ୍ୟ ଖେଳ ଛାଡ଼ି ଧାଇଁ

Digitized by PPRACHIN, SOA

ଯାଇଥିଲା ବାହାରକୁ ପାପା, ପାପା ବୋଲି- ଅଜିତ୍ ତାକୁ କୌଶଳରେ ବାୟା ବସା ଦେଖାଇବା ପାଇଁ ନେଇଗଲା ।

ଅଚାନକ ହୋଟେଲ ବୟ ଅଇଁଠା ଥାଳି ଉଠେଇବା ପାଇଁ ଘର ଭିତରକୁ ଆସୁ ଆସୁ ଡୋର ସ୍କ୍ରିନ୍‌ଟା ଘୁଞ୍ଚିଗଲା- ସମବେତ ନାରୀ ପୁରୁଷଙ୍କ ଗହଣରେ ସୁପ୍ରିୟଙ୍କ ଚେହେରାଟା ଘୁଞ୍ଚି ଯାଉଥିଲା ଲିଫ୍ଟ ଆଡ଼କୁ । ହୁଏତ ନିମିର ପାପା ଡାକ ସୁପ୍ରିୟଙ୍କ କାନରେ ବାଜିଥିବ ଏବଂ ସେ ଅଚିହ୍ନା ମଣିଷ ଭଳି ଆଗେଇ ଯାଇଥିଲେ ।

ପୁଷ୍ପେନ୍ଦୁଙ୍କ ଆଖି ବି ପରିସ୍ଥିତିକୁ ଠିକ୍ ଅନୁମାନ କରି ପାରିଥିବ । ସେ କିନ୍ତୁ ସହଜ ଓ ସ୍ୱାଭାବିକ ଢଙ୍ଗରେ ସିଗାରେଟ୍‌ରେ ନିଆଁ ଧରେଇ, ଛାଡ଼ିଥିବା କଥାର ଖିଅକୁ ଦୋହରେଇଲେ- ଜୀବନଟା ବଡ଼ ଧୂଆଁଳିଆ, ଅସ୍ପଷ୍ଟ ଏବଂ ଦୁର୍ବୋଧ ସତରେ । ଆଦର୍ଶ ଆଉ ସ୍ୱପ୍ନ ସହିତ ବାସ୍ତବ ଜୀବନର କିଛି ତାଳମେଳ ନାହିଁ ।

ଉପନ୍ୟାସର ଶେଷ ବେଶ ନାଟକୀୟ ଏବଂ ବ୍ୟଞ୍ଜନାଧର୍ମୀ ।

ଏଥର ମୋର ବକ୍ତବ୍ୟ ସରିଲା । ଏଣିକି ମୋ ପ୍ରିୟ ପାଠକମାନେ ବିଚାର କରିବେ ମୋ ସୃଷ୍ଟ କାହାଣୀ ଓ ଚରିତ୍ରମାନଙ୍କୁ ଏବଂ ତା' ସହିତ ଲେଖକୀପଣର କାରିଗରି । ମୁଁ ମଣିଷକୁ ଭଲପାଏ, ସମ୍ମାନ କରେ । ଏଇ ମଣିଷଙ୍କ ଭଲ ପାଇବାକୁ ମୂଳଧନ କରି ମୁଁ କଲମ ଧରିଛି । ଜୀବନର ରୂପାନ୍ତର ମୋତେ ପ୍ରୋତ୍ସାହିତ କରିଛି । ତେଣୁ ମୋର ଆଶା ଅଛି ବିଶ୍ୱାସ ବି ଅଛି ଏଇ ପୃଥିବୀ ବଦଳିବ, ମଣିଷ ମଣିଷ ଭଳି ବଞ୍ଚିବ, ଅନ୍ଧାର ଘୁଞ୍ଚିବ, ଆଲୁଅ ଫିଟିବ, ସ୍ୱପ୍ନମାନେ ଫୁଲ ହୋଇ ଫୁଟିବେ, ଦୁଃଖ ରହିବନି, ଅପରାଧ ରହିବନି; ପଛେ ଘିଅ ମହୁରେ ନଭାସୁ ଏ ପୃଥିବୀ ବାସୋପଯୋଗୀ ହେଉ, ପ୍ରତିଷ୍ଠା ହେଉ ମାନବିକତାର, ଚେତନାର ଉତ୍ତରଣ ଘଟୁ, ରକ୍ତର ହୋରି ନ ଖେଳି ମଣିଷ ଅମୃତର ଜୟଗାନ କରୁ । କ୍ଷତାକ୍ତ ବସୁଧା ସୁସ୍ଥ ହୋଇଉଠୁ । ନାରୀ ଓ ପୁରୁଷ ମଧ୍ୟରେ ବିଭେଦର ରେଖା ନ ରହୁ । ପ୍ରତିଭା ବଞ୍ଚି ରହୁ । ଏଇ ଆଶା ଓ ବିଶ୍ୱାସ ନେଇ ମୋ କଲମ ଚାଲିଛି ଓ ଚାଲୁଥିବ... ।

**ସ୍ୱରାଜ୍ୟଲକ୍ଷ୍ମୀ ମିଶ୍ର**

Digitized by PPRACHIN, SOA

## ଉପନ୍ୟାସ କ୍ରମ





Digitized by PPRACHIN, SOA

ରାତି ପାହୁ ନ ପାହୁଣୁ, କିଏ ଡାକ ପକେଇଲା ଦାଣ୍ଡ ଦୁଆରେ ।

ଆରେ ହେ କେଶବା... କେଶବା...ଏ କେଶବା... କେଶବାରେ...

ପାହାନ୍ତି ପହରର କାକର ପବନରେ ଏପରି ଡାକ ଢେମାପୁର ଗାଁର ନିଷ୍ଟୁପ ପରିବେଶକୁ ଥରେଇ ଦେଉଥିଲା ତରଙ୍ଗାୟିତ ହୋଇ । କେଶବାରେ... ଦୁଆର ଫିଟାରେ ପୁଅ... । ଧଡ଼ପଡ଼ ହୋଇ ଉଠିବସିଲା କେଶବ ଦେହୁରୀ । ଘର ଭିତରଟା ମାଛି ଅନ୍ଧାର । ସେଇ ଅନ୍ଧାର ଭିତରେ ଆଶା ବାଡ଼ିଟା ଅଣ୍ଡାଳୁ ଅଣ୍ଡାଳୁ ଝୁଣ୍ଟିପଡ଼ିଲା କେଶବା । ହେମଲତାର ନିଦ ଛାଡ଼ି ଛାଡ଼ି ଆସୁଥିଲା ତ, ହଠାତ୍ ସେ ଉଠି ବସି ପଡ଼ିଲା । କିଏ, ଏମିତି ହୁରି ପକେଇ ଡାକୁଛି କି ପାହାନ୍ତାଟାରୁ... । 'ଏଇ ନିଅ ତମର ଆଶାବାଡ଼ି' କହି ହେମ ବଢ଼େଇ ଦେଲା କେଶବା ହାତକୁ ।

ବାଡ଼ିରେ ଭରାଦେଇ ଉଠୁ ଉଠୁ କେଶବ କହିଲା, 'କେଜାଣି କିଏ, କ'ଣ ଏମିତି ଅସମ୍ଭାଳ ପଡ଼ିଲା ଯେ...ଡାକ ଛାଡ଼ିଛି ତୁହାକୁ ତୁହା । ଯାଏ... ଦେଖେ... ତୁ ଥା' । 'ରୁହ ଭାଇ, ଥୟ ଧର' କହୁ କହୁ ଦୁଆର ଖୋଲି ଚାହିଁଲା ଆଖି ମଳିମଳି । କିଏ, ଧଡ଼ିମଉସା... ।।

ବାଟ ମୁହଁରେ ଠିଆ ହୋଇଛନ୍ତି ସାଇମୁଣ୍ଡର ଧଡ଼ିମଉସା । ଆଶ୍ଚର୍ଯ୍ୟ ଲାଗିଲା ତାକୁ । କେବେ ତ ଏମିତି ଆସନ୍ତିନି, କ'ଣ ହେଲା କି ମଉସା... ଏତେ ପାହାନ୍ତାଟାରୁ ଆପଣ..."

Digitized by PPRACHIN, SOA

"ଆରେ ପୁଅ... ଛେପ ଢୋକିଲେ ଧଡ଼ିମଉସା । କ'ଣ କିମିତି କରି କଥାଟାକୁ କହିବେ, ଭାବି ପାରୁ ନ ଥାନ୍ତି ହୁଏତ, ସତେକି ଗଣ୍ଠିରିଏ ଭୟ ବାନ୍ଧି ଆଣିଛନ୍ତି ଗାମୁଛାରେ । ମୁହଁଟା ବିବର୍ଣ୍ଣ ଦିଶୁଥାଏ, ପାହାନ୍ତି ଅନ୍ଧାରରେ କେଶବା ଠିକ୍ ଭାବେ ଦେଖିପାରୁ ନ ଥାଏ, ହେଲେ ମୁହଁରେ ତା'ର ପ୍ରଶ୍ନର ଧାଡ଼ି । କିଛି ଗୋଟାଏ ନିଶ୍ଚୟ ଘଟିଛି, ଅଘଟଣ । ନହେଲେ ଧଡ଼ିମଉସା ଏମିତି ଥ'ମାରି ଯାଉଛନ୍ତି କାହିଁକି ? କେଶବା ମନକୁ ପାପ ଛୁଇଁଲା । କ'ଣ ହୋଇଥିବ ଆଉ... ଏଇ ପରଦେଶରେ କିଏ ଅଛି ତାର ଯେ... । ତଥାପି...ପୁଣି ଦୋହରେଇ ପଚାରିଲା, କହୁନ ମଉସା କ'ଣ ହୋଇଛି, କାହା ଦିହପା' କ'ଣ ହେଇଛି କି... ??

ଲମ୍ବା ନିଃଶ୍ୱାସଟିଏ ନେଇ ଧଡ଼ି ମଉସା କହିଲେ, 'କ'ଣ କହିବିରେ ପୁଅ, ଅଶୁଭ ଖବର । ଏଇ ଆମ ପଛପଟ ସାହିର ସୁବଳ ଜେନା, ତା'ରି ପୁଅ ସୁଢଳ... ଏଇ ପାହାନ୍ତା ବସ୍‌ରେ ମ... କଟକ ଯିବ ବୋଲି ବାହାରିଥିଲା । ତୋରି ଦୋକାନ ମୁହଁରେ ଠିଆ ହୋଇଥିଲା ବସ୍‌କୁ ଅପେକ୍ଷା କରି । ରତରତ ଅନ୍ଧାର ଥାଇ ବସ୍ ଆସିଲା । ତରତର ହୋଇ ବସ୍ ଉପରକୁ ଉଠିବା ପାଇଁ ତ ପାଦ ବଢ଼େଇଛି, ହଠାତ୍ ତା' ପଛଆଡୁ ମାଡ଼ିଆସିଲା ପଥର ବୋଝେଇ ଟ୍ରକ୍‌ଟାଏ । ଟ୍ରକ୍ ଧକ୍କା ଦେଲା ବସ୍‌କୁ । ଡ୍ରାଇଭର ଆଖି ଲାଗିଯାଇଥିଲା କି କ'ଣ... କୁଆଡୁ କିଛି ବାଟ ନ ପାଇ ମଝିରେ ସୁଢଳଟା ପେଷି ହୋଇଗଲାରେ ପୁଅ, ମୁହୂର୍ତ୍ତକରେ ତା'ର ପ୍ରାଣବାୟୁଟା ଉଡ଼ିଗଲା ।

କେଶବା ଚମକି ପଡ଼ିଲା । ତା'ହାତରୁ ଆଶା ବାଡ଼ିଟା ଖସି ପଡ଼ିଗଲା ବାରଣ୍ଡା ତଳକୁ । ବାଡ଼ିଟା ବଢ଼େଇ ଦେଇ ଧଡ଼ି ମଉସା କହିଲେ, ମୁଁ ଯାଉଥିଲି ବିଲଆଡ଼କୁ । ହୋ-ହଲ୍ଲା ପାଟି ଶୁଣି ଠିଆ ହୋଇଗଲି ଘଟଣା କ'ଣ ଜାଣିବାକୁ । ଲୋକେ ଧାଁ ଦଉଡ଼ କରୁଥିଲେ । ହେଲେ ତୁ ତ ଜାଣୁ ଆମ ଲୋକଙ୍କ କଥା, ଥାନାକୁ ଖବର ଦେବା ପୂର୍ବରୁ ଲୋକମାନେ ଆଗ ଡ୍ରାଇଭରକୁ ଧରି ବାଡ଼େଇଲେ... ମାଡ଼ ଖାଇ ବିଚରା ନୟାନ୍ତ... ଏତିକିରେ ବି ଶାନ୍ତ ହୋଇ ନ ଥିଲା ଲୋକଙ୍କ ରୋଷ । ହିତାହିତ ଜ୍ଞାନଶୂନ୍ୟ ହୋଇଗଲେ ଭଲମନ୍ଦ କି ମନେ ରହେ... । ମଉସା ଛେପ ଢୋକିଲେ ଅସଲ କଥାଟା କହିବାକୁ... । ବାକିତକ ଲୋକଙ୍କ ରାଗ ଅଜାଡ଼ି ହୋଇପଡ଼ିଲା ତୋ' ଦୋକାନଟା ଉପରେ । କ'ଣ ନା, ଏଇ ଦୋକାନ ଯୋଗୁଁ ତ ସୁଢଳର ପ୍ରାଣ ଗଲା । କାହା ପାଟିରୁ ଏଇ ପଦକ ଖସିଗଲା କେଜାଣି । ଠିଆ ହୋଇ ଘଟଣା ନିରେଖୁଥିବା ଲୋକେ ତ ମିଶିଗଲେ ଏକାଠି ଚାହୁଁଚାହୁଁ । ଠିକ୍ କଥା, ଏଇ ଦୋକାନ ଯୋଗୁଁ ଏ ଅଘଟଣ ଘଟିଲା, ଭାଙ୍ଗ ଶଳା ଦୋକାନକୁ । ଗାଡ଼ି ମୋଟର ଯିବା ରାସ୍ତାକୁ ମାଡ଼ି ଠିଆ ହୋଇଛି ଏ ଦେକାନଟା । ଏଇଟା ଚଲାବାଟ, ଖାତିରି ନାହିଁ, ଦମ୍ଭ ଦେଖଉଛି, କୋଉ ଗାଁରୁ ଆସି ଏଠି ଅଧିକାର

Digitized by PPRACHIN, SOA

ଜମେଇଛି ଶଳା ! ଭାଙ୍ଗ ସବୁ, ଭାଙ୍ଗିଭୁଙ୍ଗି ସଫା କରିଦିଅ... । ମୋ' କାନରେ କଥା ବାଜିଛି କି ନାହିଁ ରେ ପୁଅ ଧଡ୍‌ଧାଡ୍, ଭୁସ୍‌ଭାସ୍ ଠେଙ୍ଗା ଶାବଳ ପଡ଼ିଲା ବାପୁଡ଼ା ଦୋକାନ ଉପରେ । ମୁହୂର୍ତ୍ତେ ଲାଗିଲାନିରେ ପୁଅ, ଦୋକାନଟାକୁ ମାଟିରେ ମିଶେଇ ଦେଲେ ସେମାନେ ।

କେଶବା ଯାହା କାନ୍ଥକୁ ଭରାଦେଇ ଠିଆ ହୋଇଥିଲା, ଧଡ଼ି ମଉସାଙ୍କ କଥା ଶୁଣୁଶୁଣୁ ଝୋଲାଖାଇ ଖସିପଡ଼ିଲା ବାରଣ୍ଡା ଉପରେ । ତା' ଆଖି ଅନ୍ଧାର ହୋଇଗଲା । ପାଦତଳୁ ମାଟି ଯେମିତି ଧସିଯାଉଛି ତା'ର । ରସାତଳକୁ ପଶିଯିବ । ଥର ଥର ହୋଇ ଥରିବାକୁ ଲାଗିଲା ତା' ଦିହଟା । ପାହାଚ ଉଠି ଧରିବାକୁ ଧାଇଁ ଆସିଲେ ଧଡ଼ିମଉସା । କ'ଣ ହେଲା, କ'ଣ ହେଲା କହି, ଉଠି ଆସିଲା ହେମ, ଧରିପକେଇଲା କେଶବାକୁ ।

ଧଡ଼ି ମଉସା ଦମ୍ଭଦେବାକୁ ଯାଇ କହିଲେ, 'ପୁଅ ଧୈର୍ଯ୍ୟ ଧର, ନିଜକୁ ସମ୍ଭାଳ, ମନକୁ ସ୍ଥିର ରଖ । ନହେଲେ ବିପଦକୁ ସାମ୍‌ନା କିମିତି କରିବୁ ବାପ... । ଆମେ ସମେତେ ଏକୁଟିଆ, ଆଗପଛକୁ କେବେ କିଏ ନ ଥାଏ । ମରଦ ପୁଅ ତୁ । ବିପଦ ଆଇଛି ଯେତେବେଳେ, ମୁକାବିଲା କରିବାକୁ ତ ହେବ, ଏମିତି ଭାଙ୍ଗି ପଡ଼ିଲେ ହେବ କି ? ଏଥର ଉଠୁ, ଠାକୁରଙ୍କୁ ଡାକି ମୁହଁହାତ ଧୋଇ ଆ' ଦୋକାନ ପାଖକୁ । ମନଟା ସମ୍ଭାଳି ହେଲାନି ବୋଲି ଧାଇଁ ଆସିଲି ତୋତେ ଖବରଦେବି ବୋଲି । ଫରଚା ହେଲାଣି, ଏଥର ମୁଁ ଯାଉଛି ପୁଅ, ତୁ ଆସ ମୋ' ପଛରେ । ଧଡ଼ି ମଉସା ଉଠି ଠିଆ ହେଲେ । ହେମକୁ କହିଲେ, ନେଇ ଯା' କେଶବାକୁ ଘର ଭିତରକୁ; ଦମ୍ଭ ଦେ' ତାକୁ ।' ପାଦ ବଢ଼େଇଲେ ମଉସା ଆଗକୁ ତରତର ହୋଇ, 'ଗୋରୁମାନେ ବୋବାଳି ଛାଡୁଥିବେ ଗୁହାଳରୁ ତାଙ୍କ କଥା ବୁଝିବାକୁ ହେବ' କହି ।

କେଶବା ମୁଣ୍ଡରେ କିଛି ପଶୁ ନ ଥିଲା । ଚାରିଆଡ଼ ଅନ୍ଧାର ଦିଶୁଥିଲା ତାକୁ । ହେମ ପାଟିରୁ କଥା ବାହାରୁ ନ ଥିଲା । କ'ଣ କିମିତି କରି ସମ୍ଭାଳିବ ସେ ମଣିଷଟାକୁ ! ଦୋକାନ କଥା ନ ଭାବି, ହେମ ସେଇ ମୁହୂର୍ତ୍ତରେ କେବଳ କେଶବା କଥା ହିଁ ଭାବିଲା ତା'ଦେହ ହାତ ଆଉଁଶୁ ଆଉଁଶୁ ।

ଏଇ ହଇଚଇ ଭିତରେ ଲକ୍ଷ୍ମୀର ନିଦ ଭାଙ୍ଗି ଯାଇଥିଲା । ବିଛଣାରୁ ଉଠିଆସି ଠିଆ ହୋଇ ବୋଉ ପିଠିକୁ ଆଉଜି ବାପାକୁ ଚାହିଁଥିଲା । ବୁଝିପାରୁ ନ ଥିଲା ଘଟଣା କ'ଣ, ବାପା କାହିଁକି ଏମିତି ଚେତା ନ ଥିଲା ଭଳି ଶୂନ୍ୟକୁ ଚାହିଁ ବସିଛନ୍ତି ! ବୋଉ ବି ଏମିତି ବ୍ୟସ୍ତ ହେଉଛି କାହିଁକି ! ପିଲା ମନ ତା'ର ଧନ୍ଦି ହୋଇଯାଉଥିଲା । ବୋଉ ପାଟିରୁ କଥା ନ ସରୁଣୁ ସେ ଧାଇଁଯାଇ ପାଣି ଢାଳେ ଆଣି ବଢ଼େଇଦେଲା ବୋଉ ହାତକୁ ।

Digitized by PPRACHIN, SOA

କେଶବା ମୁହଁରେ ପାଣି ଛାଟି ସାଷ୍ଟାମ କଲା ହେମ । ବୁଝେଇବାକୁ ଯାଇ କହିଲା, 'ତମେ ଇମିତି ଅଧୈର୍ଯ୍ୟ କାହିଁକି ହେଉଛ କହିଲ । ଯାହା ଘଟିବା କଥା ତ ଘଟିଗଲାଣି । ଆମ ହାତରେ ଆଉ କିଛି ନାହିଁ । କେବଳ ଠାକୁରେ ଅଛନ୍ତି । ସେଇ ଭରସା । ସେଇ ବାଟ ଦେଖେଇବେ । ତମେ ଥିରହୋଇ ଆଗେ ବୁଝ ଘଟଣାଟା କ'ଣ । ତେଣିକି ପରିସ୍ଥିତି ଯେମିତି ବାଟ ଦେଖେଇବ, ଆଜିଯାଏ ତ ସେଇଆ କରିଆସିଛେ । ତା'ଠୁ ଅଧିକା କ'ଣ ଆଉ ହେବ । ଆମେ ତ ନିଆଶ୍ରୀ ମଣିଷ ।

ହେମ କଥାରେ ଆଶ୍ୱାସ ଥିଲା ।

କେଶବାକୁ ଦମ୍ଭ ଲାଗିଲା ଟିକିଏ । ସତେତ ! ଏ'ଯାବତ୍ ଯାହାସବୁ ଭୋଗିଆସିଛି ଜୀବନରେ ତା'ଠୁ ଆଉ ଅଧିକା କ'ଣ ହୋଇଯିବ କି ? ଦେଖାଯାଉ । ପରିସ୍ଥିତି କୁଆଡ଼କୁ ବାଟ କଢ଼ଉଛି । କପାଳରେ କ'ଣ ଲେଖିଛନ୍ତି ଠାକୁରେ । ସେ କ'ଣ ଦେଖିପାରୁଛି ନା ପଢ଼ିପାରୁଛି । ଭାବୁ ଭାବୁ ଦୀର୍ଘ ନିଃଶ୍ୱାସ ଛାଡ଼ି ବିରସ ମନରେ ଉଠିବସିଲା ଏବଂ ସଳଖି ଠିଆ ହେବାକୁ ଚେଷ୍ଟାକଲା ଆଶାବାଡ଼ିକୁ ଧରି । ହେଲେ ଲଡ଼ବଡ଼େଇ ଯାଉଥାଏ । ନିଜକୁ ବୁଝେଇ ପାରୁ ନ ଥାଏ । ଯେମିତି ଆକାଶଟା ଛିଣ୍ଡିପଡୁଛି ମୁଣ୍ଡ ଉପରେ । ଭାବିଲା, ଛିଣ୍ଡିପଡ଼ିବନି ବି କିମିତି ? ସିଏ ତ ଆଉ ଶହେ ଜଣଙ୍କ ଭଳି ଦମ୍ଭିଲା, ପାରିବାର ମଣିଷଟାଏ ନୁହଁ ଯେ, ଗୋଟାଏ ଆଶ୍ରା ଗଲେ, ଆଉ ଗୋଟାକୁ ହାତ ବଢ଼େଇଦେବ । କି ଏଇଠି ନ ହେଲା, ଆଉ କୋଉଠିକି ଯାଇ ମୂଲ ଲାଗି ପେଟ ପୋଷି ପାରିବ । ଠାକୁରେ ସେଇ ଦମ୍ଭ ଟିକକ ବି ଛଡ଼େଇ ନେଇଛନ୍ତି । ଅଥର୍ବ, ପଙ୍ଗୁ କରି ଦେଇଛନ୍ତି ତାକୁ । କିଛି ଗୋଟାଏ କରିପକେଇବାକୁ ଚାହିଁଲେ ବି କରିପାରିବନି । ହତାଶିଆ, କଲବଲିଆ ଜୀବନ ତା'ର । କେଡ଼େ ନୁଖୁରା... । କୁଆଡ଼କୁ ଭରସା ନାହିଁ । କେହି ନାହିଁ ତାର ନିଜର ହେଇ, ସୁଖଦୁଃଖ ବାଣ୍ଟିବାକୁ କି ପରାମର୍ଶ ଲୋଡ଼ିବାକୁ । ଆହୁରି ଦି'ଟା ପେଟ ତା' ମୁରବିପଣକୁ ଆଶ୍ରାକରି ଚାହିଁଛନ୍ତି । ଯୋଉ ପ୍ରକାରେ ବି ହେଉ, ତାକୁ ତ ଶାଗପଖାଳର ବ୍ୟବସ୍ଥା କରିବାକୁ ହେବ । ଚାଖଣ୍ଡେ ଲୁଗା ସାଙ୍ଗକୁ, ମୁଣ୍ଡ ଉପରେ ଛାଇ ଟିକେ ଖୋଜିବାକୁ ପଡ଼ିବ । କ'ଣ କରିବ ସେ ଏବେ ? ଭାବୁ ଭାବୁ କେଶବା ଧୀର ପାଦ ପକାଇ ଦୋକାନ ଆଡ଼କୁ ମୁହାଁଇଥିଲା, ଅବସୋସ ମନ ନେଇ । ଶରୀର ପୀଡ଼ାକୁ ହେଜି ନ ପାରି ମୁହୂର୍ତ୍ତେ ଠିଆ ହୋଇ ପଡ଼ିଲା ।

ଦୀର୍ଘ ନିଃଶ୍ୱାସ ନେଇ ପୁଣି ଭାବିଲା, କ'ଣ କରିବ ସେ ଏବେ, କୋଉ ବାଟ ଧରିବ; କି ପ୍ରକାରର ? ଯୋଉ ଡାଳ ଧରିଲେ ତ, ସେଇଟା ଭାଙ୍ଗିଲା । ଭଲ କରି କ'ଣ ସେ ଚାଲିପାରୁଛି ହେଲେ ? ଡାହାଣ ଗୋଡ଼ ତ ଅଧାରୁ ନାହିଁ । ବାଁ ଗୋଡ଼ର ପାଦରେ ବି ସେମିତି ଜୋର ନାହିଁ । ଓଃ ! ଗୋଡ଼ କଥା ଭାବୁ ଭାବୁ ମନେପଡ଼ିଗଲା

Digitized by PPRACHIN, SOA

ଜୀବନର ଆଉ ଗୋଟିଏ ବିପର୍ଯ୍ୟୟର କାହାଣୀ ଏବଂ କେଶବାର ପୁରୁଷପଣଟା ଯିମିତି ମୋଡ଼ି ସାଙ୍କୁଡ଼ି ହୋଇଗଲା; ପୋକ ଲଗା ଦରମରା ଲାଉଡଙ୍କ ଭଳି । ଉପରକୁ ଚାହିଁଲା, ଆକାଶ ଫରଚା ହେଇଗଲାଣି, ହେଲେ ତା' ଜୀବନଆକାଶରେ ଯୋଉ ଅନ୍ଧାରକୁ ସେଇ ଅନ୍ଧାର ।

ଟିକିଏ ଆଗରେ ହାଇୱେ । ଏଇ ଗଳି ରାସ୍ତାଟା ଛୁଉଁଚି ତାକୁ । ସେଇ କର ମୁଣ୍ଡରେ ତା'ର ଦୋକାନ । ସେମିତି କିଛି ନାଁ ଡାକ ଦୋକାନ ନୁହେଁ । ତଥାପି ତିନିପ୍ରାଣୀ ତାକୁ ହିଁ ଭରସା କରି ବଞ୍ଚିଥିଲେ । ରାତି ପାହିଲେ ଚୁଲି ଉପରକୁ ହାଣ୍ଡି ଯାଉଥିଲା । ଆଃ, ଅକୁହା ଯନ୍ତଣାରେ ଛାତି ଭିତରଟା ଦଳିଚକଟି ହୋଇଗଲା ଯିମିତି ।

ଗାଡ଼ି ମୋଟର ଚାଲିଛନ୍ତି ସାଇଁ ସାଇଁ ହେଇ । ଦୂରରୁ ଭିଡ଼ ଦିଶୁଛି । ମଣିଷ ବି ଚାଲିଛନ୍ତି ନିଜ ନିଜ ବାଟରେ । କାହାକୁ ତର ଅଛି, ଅନ୍ୟ ପାଇଁ ଭାବିବାକୁ । ଏତେ ବଡ଼ ପୃଥିବୀ । କେତେ ପ୍ରକାର ମଣିଷ । ସମସ୍ତେ ବଞ୍ଚିବାକୁ ଚାହାନ୍ତି, ବଞ୍ଚିବେ ବି ଖାଇପିଇ ସୁସ୍ଥ ଢଙ୍ଗରେ । ଏଇତକ ପାଇଁ ତ ଯେତେ ପ୍ରଚେଷ୍ଟା ମଣିଷର । ଅଥଚ ତା'ପାଇଁ ଚାଖଣ୍ଡେ ଠା'ନାହିଁ ସଂସାରରେ । ମୁଠେ ଭାତର ବରାଦ ହେଇନି । କେଡ଼େ ନିର୍ଦ୍ଦୟ ଠାକୁରେ ! କେଶବାର ଭାବନା ହଠାତ୍ ଅଟକିଗଲା ଏକଥା ଭାବିଲା ବେଳକୁ । ଛିଃ, ସେ କାହିଁକି ଏମିତି ଭାବୁଛି । ଠାକୁରେ ନିର୍ଦ୍ଦୟ କାହିଁକି ହେବେ । ସିଏ ନିଜେ ହିଁ ହତଭାଗା ।

ବଡ଼ ମନ ବଡ଼ ସାହସ ଗୋଟାଇ, ଏଇ ଚାଳିଆ ତା'ଦୋକାନକୁ ଠିଆ କରିଥିଲା ସେ । ମାସ ଚାରିଟା ବି ପୂରିନି । ଭାବିଥିଲା, ସୁରୁଖୁରୁରେ ନ ହେଉ ପଛେ, ସଂସାରର ଗୁଜୁରାଣ ତ ମେଣ୍ଟିଯିବ । ରାତି ପାହିଲେ ଖାଇବା ଚିନ୍ତାଟା ତ ରହିବନି ଆଉ । ଅବଶ୍ୟ ଲକ୍ଷ୍ମୀଟା ଏବେ ପିଲା । ତା' ପାଇଁ ଏତେ ବେଶି ଚିନ୍ତା କରିବାକୁ ପଡ଼ୁନି । ଦି'ଅକ୍ଷର ପାଠ ପଢ଼େଇବ ବୋଲି ଏଇ ପାଖ ଇସ୍କୁଲକୁ ପଠଉଛି ତାକୁ । ଏଯାଏ ବହି ସିଲଟ ଖଣ୍ଡେ କିଣିପାରିନି । ମାଗି ଯାଚି ଚଳିଯାଉଛି ତ ଏବକୁ । ଜାମା ଖଣ୍ଡିଏରୁ ଦି'ଖଣ୍ଡ ନାହିଁ । ପିଲାଟା ବୋଲି ସିନା କିଛି କହୁନି ହେଲେ ମନମାରି ରହୁଛି । ଶୀତ, ବରଷାକୁ ବି ତ କଷ୍ଟ । ସାଥି ପିଲାଙ୍କୁ ଦେଖିଲେ ତା'ମନ ବି କେତେ କ'ଣ ହେଉଥିବ । ତଥାପି ଅଝଟ ନାହିଁ । ସତରେ ଗୁଣବନ୍ତ ଝିଅଟା ତା'ର । ରୂପରେ ବି ଊଣା ନାହିଁ । ଠାକୁରେ ସିନା ଭଙ୍ଗା ଦଦରା ଘରେ ତାକୁ ଜନମ ଦେଇଛନ୍ତି, ନହେଲେ ତା'ର ଚନ୍ଦ୍ରଉଦିଆ ମୁହଁକୁ ଘଡ଼ିଏ ଚାହିଁଦେଲେ ପେଟ ପୂରିଯାଏ । ବାଁ ପଟ ଗାଲରେ ତା'ର ଯୋଉ କଳାଜାଇମହାଟା ଜନ୍ମରୁ ଅଛି, ତାକୁ ଯିଏ ଦେଖୁଛି, କ୍ଷଣେ ନ ଚାହିଁ ରହିପାରୁନି । କହୁଛି, ସାକ୍ଷାତେ ଲକ୍ଷ୍ମୀ ପ୍ରତିମା । ତୋ ଭାଗ୍ୟ ଏବେ ଝଟକିବରେ କେଶବା । ଦେଖିବୁ... ଏଇ ଝିଅ ତୋତେ

Digitized by PPRACHIN, SOA

ଶ୍ରୀସଂପଦ ଆଣି କୁଢ଼େଇ ଦେବ । ଏବେ ସିନା ତୋର ପରତେ ହେଉନି, ଦେଖିବୁ... କନ୍ୟା ଭାଗ୍ୟେ ଲକ୍ଷ୍ମୀ ପରା । ଏଇ ପଦକ ଶୁଣିଦେଲେ ତା'ମନ ଉଛୁଳି ଉଠେ ଖୁସିରେ । ଅବଶ୍ୟ ଏକଥା ବି କୁହନ୍ତି ଯେ, ପୁଅଟିଏ ହେଇଥିଲେ କାନ୍ଧକୁ କାନ୍ଧ ମିଶାନ୍ତା ଦିନେ ।

ସେ କିନ୍ତୁ ଆଉ ପ୍ରକାରେ ଭାବେ, ମନ ଊଣା କରେନା । ଝିଅ ହେଲେ କ'ଣ ହେଲା, ଏମିତି ଚନ୍ଦ୍ରଉଦିଆ ଲକ୍ଷ୍ମୀବନ୍ତ ଝିଅ ଭାଗ୍ୟରେ ଥିଲେ ମିଳେ । ଠାକୁରେ ପରମାୟୁ ଦେଇଥାନ୍ତୁ । ଦି'ଅକ୍ଷର ପଢୁ । ତେଣିକି ଯାହା ହେବ । ଝିଅ କଥା ଭାବୁଭାବୁ କେଶବାର ମନ ପୂରିଉଠେ ମାୟାରେ । ଅଥଚ ଆଜି ସେଇ ଝିଅ ପାଇଁ ମୁଠେ ଦାନା ଯୋଗାଡ଼ କରି ନ ପାରିବାର ଦୁଃଖରେ ତା' ଅନ୍ତ ଦୁହିଁ ହେଇଯାଉଛି ।

ଏଇ ଲକ୍ଷ୍ମୀ ଜନ୍ମ ହେଲା ବେଳକୁ ସେ ରାହାସପୁର ଜମିଦାରଙ୍କ ଘରେ କୋଠିଆ ଥିଲା । ଆଗରୁ ବେଶ୍ ସୁଖରେ ଦିନ କଟୁଥିଲା, ରୋଜଗାର ବି ଭଲଥିଲା । ଜମିଦାରଙ୍କ ବିଶ୍ୱାସ ଥିଲା ତା'ଉପରେ । ତାଙ୍କର ଚାରିପୁଅ ସାଙ୍ଗକୁ କାନ୍ଧ ମିଶେଇଥିଲା କେଶବା ପଞ୍ଚମ ପୁଅ ହୋଇ ।

ସେତିକିବେଳେ ହେମ ନୂଆ ହୋଇ ଆସିଥାଏ ତା' ଜୀବନକୁ । ସୁଧାର ଝିଅଟିଏ ହେମ । ମାଛିକୁ ମ' କହିବନି । ଭାରି କାମିକା । ଚାରିଆଡ଼କୁ ନଜର, ଥରେ ଦେଖିଲେ ହେଲା, କରି ଥୋଇଦେବ ପାଖରେ । ସବୁକାମକୁ ଧୁରନ୍ଧର । ତେଣୁ ସା'ନ୍ତାଣୀ ତାକୁ ଖୁବ୍ ଭଲପା'ନ୍ତି । ଯେତେସବୁ ଗଲା ଅଇଲା, ପର୍ବପର୍ବାଣି ଭଲମନ୍ଦରେ ସେ ହେମଲତାକୁ ଖୋଜନ୍ତି । ଦି'ଚାରିଦିନ ହେଇଗଲେ ଡକେଇ ପଠାନ୍ତି 'ହେମ ଭଲ ଅଛିଟି, ତା'ର କ'ଣ ଦେଖାନାହିଁ । କାଲି ଆସିଲାବେଳେ ତାକୁ ସାଙ୍ଗରେ ଆଣିବୁରେ କେଶବା, ଆରିସା ଖାଇବାକୁ ମନ କରିଛନ୍ତି ପିଲାଏ ତ ।"

କେଶବା ନିଃଶ୍ୱାସ ନେଲା ମୁହୂର୍ତ୍ତେ ଠିଆ ହୋଇ । ସାଷ୍ଟାମ ହେଇ ଚାଲୁଚାଲୁ ପୁଣି ଧଇଲା ଭାବନାର ହାତ । ଆଉ କିଏ ତା' ସହିତ ଥାଉ କି ନଥାଉ, ଏଇ ଭାବନା କିନ୍ତୁ ତା'ସାଥି ଛାଡ଼େନା । ଭାରି ବିଶ୍ୱସ୍ତ ଅନ୍ତରଙ୍ଗ ବନ୍ଧୁ ଭଳି । ନହେଲେ ମଣିଷଙ୍କୁ ତ ତା'ର ଭାରି ଡର । କିନ୍ତୁ ସା'ନ୍ତାଣୀ ଭାରି ଭଲ ମଣିଷ । ସମସ୍ତଙ୍କ ଠୁଁ ଅଲଗା ବାଛି ହୋଇଗଲା ଭଳି । ଅଥଚ ତାଙ୍କରି ପେଟରୁ ଜନ୍ମ ହେଇଥିବା ପୁଅଝିଅ ପାଞ୍ଚୋଟି ପୂରାପୂରି ଅଲଗା ଢଙ୍ଗର । ଝିଅ ନିରୁପମା ଗୋଟାଏ ଧରଣର । ଜମିଦାରୀ ଗରିମା ଟିକକୁ ବାଦ୍‌ଦେଲେ ଆଉ ସବୁ ଚଳନୀୟ ସେରେନ୍ତୀଟିଏ ତ, ଚାରି ଭାଇରେ ଗୋଟିଏ ତଅପୋଇ । ସବୁକଥା ତା'ର ଆଗ ହେବ । କେହି କଥା କହିପାରିବେନି ତା' କଥା ଉପରେ । କହିଲେ ଲୁହ ଝରିପଡ଼ିବ ଝରଝର ହୋଇ । ହେଲେ ପୁଅମାନେ... କେମିତି କେଜାଣି ଏତେ ଅମଣିଷ । ସ୍ୱାର୍ଥୀ ସବୁ । ନିଜ ସୁଖକୁ ଛାଡ଼ି ଦେଲେ ଆଉ କିଛି

Digitized by PPRACHIN, SOA

ଜାଣନ୍ତିନି । ରୁକ୍ଷ ବ୍ୟବହାର । ପାଠ ଘର ଶୂନ୍ । ଗାଁର ସବୁକଥାରେ ଅଯଥା ମୁଣ୍ଡ ପୁରେଇବା ସ୍ୱଭାବ । ସେଥିପାଇଁ କିଛି ନା କିଛି ଗଣ୍ଡଗୋଳକୁ ନିତି ଡାକି ଆଣନ୍ତି । ସା'ନ୍ତଙ୍କ ପାଖରେ କିଏ ନା କିଏ କିଛି ନା କିଛି ଅଭିଯୋଗ ନେଇ ଆସିବା ନିତିଦିନିଆ କଥା । ଜମିଦାରେ ବି ଘଣ୍ଟ ଘୋଡ଼ାଇ ରଖିଥାନ୍ତି । ବିଶେଷ କରି ମଝିଆ ପୁଅ ଘନଶ୍ୟାମ ନିହାତି ପଶୁଟାଏ, ବାଜେ ପ୍ରକୃତିର, ଅବିବେକୀ । ତା ଅଦଉତିରେ ଗାଁ ଝିଅ ବୋହୂ ଅତିଷ୍ଠ । ସା'ନ୍ତାଣୀଙ୍କ ଅକ୍ତିଆର ଭିତରେ ପୁଅମାନେ କେହି ନ ଥିଲେ । ସା'ନ୍ତାଣୀଙ୍କର ଭାରି ଦୁଃଖ ସେଥିପାଇଁ । ଖାସ୍ ତାରି ପାଇଁ ହେମର ସହଜ ସରଳ ଜୀବନ ଦୁର୍ବିଷହ ହେଇପଡୁଥିଲା । ଘନିଆର କୁଦୃଷ୍ଟି ଯୋଗୁଁ ହେମ ଭୟ ପାଏ ସା'ନ୍ତଙ୍କ ଘରକୁ ଯିବାକୁ । ନହେଲେ ସା'ନ୍ତାଣୀ ତାକୁ କେବେ ପାଖରୁ ଛାଡ଼ିବାକୁ ଚାହୁଁନଥିଲେ "ଦି'ମୁଠା ଭାତ ଏଠି ନିଅଣ୍ଟ ହେବନି ଲୋ ହେମ । କେଶବା ତ ସକାଳୁ ରାତିଯାଏ ଏଇଠି କାମରେ ଲାଗିଛି । ତୁ କିଆଁ ତୋଟା ଭିତରେ ଏକୁଟିଆଟା ରହିବୁ ଯେ, ସଂସାର ବଢ଼ିଲେ ଆପେ ରହିବୁ ।" ଲକ୍ଷ୍ମୀ ଦି'ମାସର ମାତ୍ର ହେଇଥାଏ । ସେମାନେ ସା'ନ୍ତଙ୍କ ଆମ୍ବତୋଟା ଭିତରେ ଥିବା ଦି'ଚାଳିଆ ଘର ଭିତରେ ରହୁଥିଲେ ।

ଧୀରେ ଧୀରେ ଘନଶ୍ୟାମର ବ୍ୟବହାର ହେମ ପାଇଁ ଅସହନୀୟ ହୋଇପଡ଼ିଲା । ଥଟ୍ଟାମଜା କରିବା ଆଳରେ ଆଜେବାଜେ କଥା କହିବାକୁ ଆରମ୍ଭ କଲା ଘନିଆ । ପାଞ୍ଚଣଟାଏ କି, ପାଣିଗିଲାସେ ନହେଲେ ଆଜି ନିଶୁଣିଟା କି କେଶବାକୁ ଖୋଜିବା ବାହାନା କରି ଘର ଭିତରକୁ ଧାପ ଦେଲା ଘନିଆ । ହେମ ବିପଦ ଗଣିଲା- ଇଏ ତ ଭଲ ଲକ୍ଷଣ ନୁହେଁ, ଦିହେଁ ବିଚାର କରିଥିଲେ କିମିତି କଥାଟା ସା'ନ୍ତଙ୍କ କାନକୁ ନେବା । କାଳେ କାଳେ ତ ଗରିବ ଖଟିଖିଆଙ୍କ ପାଇଁ ପେଟକଥା ପହିଲେ ଚିନ୍ତା କରିବାକୁ ପଡ଼େ । ହେମକୁ ସେ ବୁଝେଇଥିଲା, ଟିକିଏ ଥୟଧର- କାଳେ ଘନିଆ ବଦଳିବ, ତା'ସ୍ୱଭାବ ବଦଳେଇବ, ଅଯଥା ଅଶାନ୍ତି ବଢ଼େଇବା କାହିଁକି..."

ନା, ବଦଳିଲାନି ଘନିଆ । ଦିନେ କେଶବା ଗାଁ ବାହାରକୁ ଯାଇଥିବା ସୁଯୋଗରେ ଘନିଆ ହେମ ବସାକୁ ଯାଇ ଦୁର୍ବ୍ୟବହାର କଲା । ହେମ ଆଉ କେତେ ଚୁପ୍ ରହନ୍ତା । ସା'ନ୍ତାଣୀଙ୍କ କାନକୁ ନେଲା କଥାଟା । ସା'ନ୍ତାଣୀ ଶୁଣି ପଥର ପାଲଟିଗଲେ ମୁହୂର୍ତ୍ତେ । କ'ଣ କେମିତି ପୁଅକୁ ଶାସନ କରିବେ ବୁଦ୍ଧି ବାଟ ନ ପାଇ, ଶେଷରେ ଜମିଦାରଙ୍କ ଆଗରେ ଫେରାଦ ହେଲେ । "ତମେ ତାକୁ ବୁଝାଅ । ପରଝିଅ ବୋହୂଙ୍କ ଉପରେ ନଜର ପକେଇଲେ ଅମଙ୍ଗଳ ହେବ । ଲକ୍ଷ୍ମୀ ଛାଡ଼ିଯିବେ । ଗାଁରେ ମାନମହତ ରହିବନି ଆମର । ଘରେ ବଢ଼ିଲା ଝିଅ ଅଛି । ହେମ ତ ଘରର ବୋହୂ ଭଳି । ତମେ ତାକୁ ଆକଟ କର ।" ସା'ନ୍ତାଣୀଙ୍କ ମନସ୍ତାପ ବଢ଼ିଥିଲା କ୍ରମଶଃ... ହେଲେ କିଏ ଆକଟ

Digitized by PPRACHIN, SOA

କରିବ କାହାକୁ । ସିଏ ତ ଜମିଦାର । ଗାଁର ସର୍ବେସର୍ବା । ହୁକୁମ ଦେଲାବାଲା । ତେଣୁ ଫଳ ଓଲଟା ହେଲା ପରିଣତିରେ । ଧୃତରାଷ୍ଟ୍ର ପାଲଟିଗଲେ ସା'ନ୍ତେ । ଅନ୍ଧ ସ୍ନେହ । ପୁଅକୁ ଶାସନ କରିବା ବଦଳରେ କେଶବା ଓ ହେମ ତାଙ୍କ ଶାସନକାଳର ସରହଦ ଭିତରକୁ ଆସିଯାଇଥିଲେ । ଅକଥନୀୟ ଦଣ୍ଡ ଓ ଅବିଚାର ସହିବାକୁ ପଡ଼ିଥିଲା । ତା'ପରେ ପରେ ଷଡ଼ଯନ୍ତ୍ରର ସୂତ୍ରପାତ ।

କେଶବା ଚାଲୁ ଚାଲୁ ଠିଆ ହୋଇପଡ଼ିଲା ରାସ୍ତାକଡ଼ରେ ଆକାଶିଗଛର ଗଣ୍ଡିକୁ ଆଉଜି । ସେତିକିବେଳେ କେତେ ଘଟଣା ଦୁର୍ଘଟଣାକୁ ସାମ୍ନା କରିଥିଲେ ଦୁହେଁ । ସବୁ ମନେ ଅଛି । ଭୁଲିବାକୁ ଚାହିଁଲେ ବି ଭୁଲିହେଉନି ।

ଦୈବାତ୍ ଦିନେ ଝିଅ ନିରୁପମାର ବେକରୁ ସୁନାହାରଟା ଚୋରି ହେଇଗଲା କି କୋଉଠି ଖସିପଡ଼ିଲା କେଜାଣି, ଅସନ୍ତୋଷ ଓ ସନ୍ଦେହର ଧୂଆଁ କୁହୁଳିବାକୁ ଲାଗିଲା ଏବଂ ସେଇ ଧୂଆଁ ଦିନେ ଶିଖା ଟେକି ଜଳିଉଠିଲା ମଧ୍ୟ । ସନ୍ଦେହର ଜାଲ ଭିତରେ ଦୁହେଁ ଛନ୍ଦି ହୋଇପଡ଼ିଲେ । ଘର ଭିତରକୁ ଆଉ କିଏ ଆସିବ, କେଶବା କି ହେମ ଛଡ଼ା । ଏଇମାନେ ହିଁ ଚୋର । ବାସ୍ କେଶବା ନିଜ ସଚ୍ଚୋଟତାକୁ ପ୍ରମାଣ କରିବା ପାଇଁ ସୁଯୋଗ ପାଇଲାନି । ସା'ନ୍ତାଣୀଙ୍କ ପଣତ ଉହାଡ଼ରେ ହେମ କିଞ୍ଚିତ୍ ରକ୍ଷା ପାଇ ଯାଉଥିଲା ଯାହା, କିନ୍ତୁ ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ଚାରିଭାଇ ମନ୍ତ୍ରଣା କରିସାରିଥିଲେ । ଦିନେ ରାତିରେ ଖଳାବାଡ଼ି ଭିତରେ ଛୋଟିଆ କଥାଟି ପାଇଁ ଉଚ୍ଚବାଚ କଳି ଝଗଡ଼ା ଆରମ୍ଭ ହେଇ ବିରାଟ ଆକାର ଧାରଣ କଲା ଏବଂ ସେଇ ରାତିର କଳା ଅନ୍ଧାର ଭିତରେ କେଶବା ଉପରେ ଠେଙ୍ଗାମାଡ଼ ଅଜାଡ଼ି ହୋଇପଡ଼ିଲା । ସେ ମାଡ଼ କିନ୍ତୁ ସାଧାରଣ ନ ଥିଲା । ତାର ଗୋଡ଼ ଦି'ଟା ଭାଙ୍ଗି ଯାଇଥିଲା । ପଙ୍ଗୁ ହେଇଗଲା ସେ ସବୁଦିନ ପାଇଁ । ଚାରିଚାରିଟା ଭେଣ୍ଡିଆ ଟୋକାଙ୍କୁ ସାମ୍ନା କରିବା ତା'ପକ୍ଷରେ ସମ୍ଭବ ନ ଥିଲା ସେଇ ରାତିରେ । ଏକୁଟିଆ ଥିଲା ସେ । କେହି ନ ଥିଲେ ପାଖରେ ।

ଭାବୁ ଭାବୁ ତା' ରୋମମୂଳ ଟାଙ୍କୁରି ଉଠିଲା ଭୟାର୍ତ୍ତ ହେଇ ଏବଂ ନିଜ ଅଜାଣତରେ ନିଜର ରୁଗ୍ଣ ଅପାରଗ ଗୋଡ଼ ଦି'ଟାକୁ ଚାହିଁ ବିକଳ ହେଇ ପଡ଼ିଲା ଅଣ୍ଟାଳୁ ଅଣ୍ଟାଳୁ । ଭରି ଉଠିଲା ଛାତି ଭିତରଟା ଆହାପଣରେ । ଗରିବ ହୋଇ ଜନ୍ମ ହେବା ସତରେ ଗୋଟାଏ ଅଭିଶାପ । କେହି ନ ଥାନ୍ତି ତା' ସାଥିରେ । ଏମିତିକି ଈଶ୍ୱର ବି । ନହେଲେ ତା'ର ଅପରାଧ କ'ଣ ଥିଲା ଯେ ?

ସେତିକିବେଳେ ଗାଁର କିଛି ଆଗୁସାର ଯୁବକ ଦୟାପରବଶ ହୋଇ ତାକୁ ନେଇ ଡାକ୍ତରଖାନାରେ ଭର୍ତ୍ତି କରିଥିଲେ ଚିକିତ୍ସା ପାଇଁ ମାନବିକତା ଦୃଷ୍ଟିରୁ । କେବଳ ସା'ନ୍ତାଣୀଙ୍କ ପାଇଁ ସେତକ ସମ୍ଭବ ହେଇଥିଲା । ନହେଲେ ଜମିଦାରଙ୍କ ଇଚ୍ଛା ବିରୋଧରେ କିଏ

Digitized by PPRACHIN, SOA

ଆଗେଇ ଆସିଥାନ୍ତା । ସେ ହିଁ ହେମର ବିକଳ କାନ୍ଦଣା ସହି ନ ପାରି ଖବର ପଠେଇ ଡକେଇଥିଲେ ସେଇ ଯୁବକମାନଙ୍କୁ । ତାଙ୍କ ଅନୁରୋଧ କେହି ଅମାନ୍ୟ କରିପାରି ନ ଥିଲେ ସା'ନ୍ତଙ୍କ ଆଡୁଆଳରେ । ପୁଅମାନଙ୍କୁ ଲୁଚେଇ ଛପେଇ ତା'ର ଚିକିତ୍ସା ଖର୍ଚ୍ଚ ତୁଲେଇ ଥିଲେ ବୋଲି ଏଇ ପ୍ରାଣ ଖଣ୍ଡିକ ତା'ର ବଞ୍ଚିଯାଇଛି ଯାହା । ସାନ୍ତାଣୀ ସାକ୍ଷାତ୍ ଅନ୍ନପୂର୍ଣ୍ଣା । ଖୁବ୍ ମନକଷ୍ଟ କରିଥିଲେ ସେ ହେମ ଆଗରେ । ଅମଣିଷ ପିଲାଙ୍କୁ ଜନ୍ମ ଦେଇ ଜୀବନ ତାଙ୍କର ବ୍ୟର୍ଥ ହେଇଗଲା ବୋଲି ଲୁହ ଗଡ଼େଇଛନ୍ତି ସେ ବଞ୍ଚିଥିବା ଜୀବନତକ ।

ଦୁଇମାସ ଡାକ୍ତରଖାନା ଖଟରେ ଶୋଇ, ଶେଷରେ ଏଇ ଆଶାବାଡ଼ି ନେଇ ସେ ଘରକୁ ଫେରିଥିଲା । ସେତିକିବେଳେ ସେ ହେମ ଆଖିର ଶୂନ୍ୟତାକୁ ଦେଖିଛି । ତାକୁ ବୁଝେଇବା ପାଇଁ ଭାଷା ବି ନ ଥିଲା ତା'ପାଖରେ । କେବଳ ଏଇ ଲକ୍ଷ୍ମୀଟାର ହସିଲା ମୁହଁକୁ ଦେଖି ଯାହା ଦୁଃଖକୁ ଭୁଲିଯାଉଥିଲେ ଦୁହେଁ ।

ତା'ପରଠୁ ସେ ଆଉ ଜମିଦାରଙ୍କ ଦୁଆର ମାଡ଼ିନି । ସାନ୍ତାଣୀ ହିଁ ମଝିରେ ମଝିରେ ମନ୍ଦିର ଯିବା ବାହାନା କରି ଆସି ଦେଖିଯା'ନ୍ତି । ଜମିଦାରଙ୍କ ତୋଟା ଘର ବି ସେ ଛାଡ଼ି ଆସିଥିଲା ଡାକ୍ତରଖାନା ପାଖ ଶାମଭାଇଙ୍କ ଘରକୁ । ଶାମଭାଇ ଦୟାକରି ମାସ କେଇଟା ବଖୁରିଏ ଘର ଦେଇଥିଲେ ସାନ୍ତାଣୀଙ୍କ ଅନୁରୋଧ ରକ୍ଷା କରି । ଶାମଭାଇ ତାଙ୍କର ଭାଇଲେଖା ହେବେ । ଭଲ ମଣିଷ ବି । ଅସୁସ୍ଥ ଅବସ୍ଥାରେ ସେ ହିଁ ତାର ଦେଖାଶୁଣା କରୁଥିଲେ ।

ସେ ସୁସ୍ଥ ହେଲା, ଅନେକଦିନ ଲାଗିଲା ସେଥିପାଇଁ । ହାତରେ ଟଙ୍କା ପଇସା ନ ଥିଲା । ଚାକିରି ତ ଗଲା । ସାନ୍ତାଣୀଙ୍କ ଦୟା ଉପରେ କେତେଦିନ ସେ ବଞ୍ଚିଥାନ୍ତା, ମାତ୍ର ନିଜ ଗୋଡ଼ରେ ଠିଆ ହେବା ପାଇଁ ତା'ର ଦମ୍ଭ ବି ନ ଥିଲା । ବଞ୍ଚିବା ପାଇଁ ଅନ୍ୟ କିଛି ବାଟ ତ ଖୋଜିବାକୁ ହେବ । ଲକ୍ଷ୍ମୀ ବି ତ ବଢୁଥିଲା । ସାହସ ବି ହେଉନଥିଲା ଆଗାମୀ ଝଡ଼କୁ ସାମ୍ନା କରିବାକୁ । ଅଗତ୍ୟା ସେ ମନସ୍ଥ କଲା ରାହାସପୁର ଛାଡ଼ି ନିଜ ଭିଟାମାଟିକୁ ଚାଲିଯିବ । ଦିନେ ସାହସ ଜୁଟେଇ ସାନ୍ତାଣୀଙ୍କ ଆଗରେ କହିଲା ମଧ୍ୟ ।

ସା'ନ୍ତାଣୀ ମନା ବା କାହିଁକି କରିଥାନ୍ତେ । ତାର ଲମ୍ବା ଭବିଷ୍ୟତକୁ ସେ କୋଉ ବାଟରେ କିମିତି ସଜାଡ଼ି ଥା'ନ୍ତେ । ତାଙ୍କ ହାତରେ ତ କିଛି ଉପାୟ ନ ଥିଲା । ଶେଷରେ ଟଙ୍କା ପାଞ୍ଚଶ ହେମ ହାତରେ ଗୁଂଜି ଦେଇ କହିଥିଲେ, ଇଏ କିଛି ନୁହଁ ମା । କେଶବାଟା ଆଉ ଟିକିଏ ସୁସ୍ଥ ହୋଇଗଲେ କିଛି ଗୋଟାଏ ବ୍ୟବସ୍ଥା ତ କରିବ ନିଶ୍ଚୟ । ସେତେବେଳଯାଏ ଅନ୍ତତଃ... ପିଲାଟାର ଭଲମନ୍ଦ ଅଛି... ନିଜକୁ ଦୋଷୀ ଦୋଷୀ ଲାଗୁଛିରେ, କ'ଣ କରିବି କହ । ତାଙ୍କ କଣ୍ଠରୁଦ୍ଧ ହୋଇଯାଇଥିଲା ସେଦିନ ।

Digitized by PPRACHIN, SOA

ଅଗତ୍ୟା ରାହାସପୁର ଛାଡ଼ି ନିଜ ଭିଟାମାଟିକୁ ଫେରିଯାଇଥିଲା କେଶବା ସୁସ୍ଥ ହେବା ପରେ । ଭାବିଥିଲା ପଦନପୁର ତାକୁ ବଞ୍ଚିବାର ରାହା ଦେଖାଇବ । ମା' ଭଳି ଆଦରିନେବ କୋଳକୁ । ସବୁ ଆତ୍ମୀୟସ୍ୱଜନ ତ ଅଛନ୍ତି ଏଇଠି । ଭାଇ ଭାଉଜ, ଝିଆରୀ, ପୁତୁରା, ଦାଦି, ବଡ଼ା'ପା, ମଉସା, ମାମୁଙ୍କ ସାହାଯ୍ୟର ହାତ ଲମ୍ବି ଆସିବ ତା'ପାଖକୁ । ଦଶ ଜଣ କରି ସଙ୍ଖୋଳିବାକୁ ବି ଆସିଥିଲେ ସମସ୍ତେ । ହେଲେ ହତାଶ ହେବାକୁ ହେଲା । ଦିନ ଚାରିଟା ବିତିଛି କି ନାହିଁ, ଆରମ୍ଭ ହେଇଗଲା ଖିଟ୍‌ଖିଟ୍ ଭାଇଭାଉଜଙ୍କ ଭିତରେ । 'ଭାଇ ତ ଭଗାରୀ' । ଭିତରୁ ଭାଉଜଙ୍କ ପାଟି ଶୁଣିପାରିଲା କେଶବା । -ମଣିଷଟା ଘରେ ବସି ଖାଇବ ! ଇଏ କିମିତି ହବ ! ଘର ବୋଲି ତିନି ବଖୁରି । ଚଳପ୍ରଚଳ ହେବାକୁ ଅସୁବିଧା ।

ଭାଉଜ ଚନ୍ଦ୍ରିକା ସବୁ କଥାରେ ଅଶାନ୍ତି ହେଲା । ଭାଇ ବୋଲି ଦି'ଚାରିମାସ ବସେଇ ଖାଇବାକୁ ଦେବ ସିନା, ତା'ପରେ । ସିଧା ସିଧା ଅଭିଯୋଗର ଫର୍ଦ୍ଦ ଯୋଡ଼ି ଚାଲିଲା ସ୍ୱାମୀଙ୍କ ପାଖରେ । ଦିନକୁ ଦିନ ପରିସ୍ଥିତି ଅସମ୍ଭାଳ ହେଇଉଠିଲା । ନିତିଦିନର ଲଗେଇ ଶୁଣେଇ କଥା କ୍ରମଶଃ ଉଚ୍ଚବାଚ କଳିଗୋଳରେ ପରିଣତ ହେଲା । ଭଲ ଲାଗୁ ନ ଥିଲା କେଶବାକୁ । ହେମ ପାଟି ଫିଟଉ ନ ଥିଲା ବଡ଼ ଜା'କୁ । ନିଜ ଉପରକୁ ତ ଦୁର୍ଭାଗ୍ୟ ଆସିଛି । ସହିବା ବ୍ୟତୀତ ଆଉ ଉପାୟ କ'ଣ !

ହେଲେ ସହିବାର ସୀମା ତ ଅଛି । ଯୋଉଦିନ ଝିଅ ପାଇଁ କ୍ଷୀର ଟାଟିଆଏ ଦେବାକୁ ଚନ୍ଦ୍ରିକା ମନା କରିଦେଲା, ହେମର ଛାତି ଫାଟିଗଲା ସତକୁ ସତ । କୋଳ ପିଲା କ'ଣ ଖାଇ ବଞ୍ଚିବ । ଚନ୍ଦ୍ରିକା ଯୁକ୍ତି ବାଢ଼ିଲା ଗାଈରେ ତା'ର ଭାଗ ନାହିଁ । ଗାଈ ତା' ବାପଘରୁ ଆସିଛି । ଜନମ କରିଛି ଯେତେବେଳେ ଝୁଅକୁ କିମିତି ଖୁଆଇ ପିଆଇବ, ସେ ଦାୟିତ୍ୱ ତା'ର । ବଉଁଶଯାକ ଖାଇ ପିଇ ହେଣ୍ଡି ମାରିବେ, ସେଥିରେ ମୋ' ପିଲାଙ୍କ କ୍ଷୀରରେ ଭାଗ ବସିବ । କାହିଁକି ଜଣକର ସିନା ଗୋଡ଼ ନାହିଁ- ଆଉ ଜଣକର କ'ଣ ଗୋଡ଼ ନାହିଁ ନା ତୋଡ଼ ନାହିଁ ? ଦାନ୍ତ ନେଫେଡ଼େଇ ହେମକୁ କହିଲା ଚନ୍ଦ୍ରିକା । ରାଗ ତମତମ ହୋଇ ତା' ଭାଇ ଘରକୁ ଚାଲିଯାଇଥିଲା ।

ହେମ ପଥର ପାଲଟି ଯାଇଥିଲା । ଲକ୍ଷ୍ମୀଟା ରାଉରାଉ ହୋଇ କାନ୍ଦୁଥିଲା ଭୋକରେ । ତାକୁ କ'ଣ ଖୁଆଇ ଶାନ୍ତ କରିବ ବୁଦ୍ଧି ଦିଶି ନ ଥିଲା ହେମକୁ । କେଶବା ପାଟିରେ ଭାଷା ନ ଥିଲା । କ'ଣ କିମିତି କରିବ । କାହାକୁ ଯାଇ ମାଗିବ ଝିଅ ପାଇଁ କ୍ଷୀର । ଛିଃ, ହୋଇଗଲା ମନ । କେଡ଼େ ଛୋଟ ମନ । ପିଲା ଉପରେ ଅହନ୍ତା ! ହେମ ମନ କରୁଥିଲା, ଚିନି ଦି'ଚାରି ଚାମୁଚ ଆଣି ପାଣିରେ ଗୋଳେଇ ପିଆନ୍ତା ଝିଅକୁ । ହେଲେ ଇଚ୍ଛା ହେଲାନି ଆଉ । ମନ ପୋଡ଼ି ଯାଉଥିଲା ।

Digitized by PPRACHIN, SOA

ନିଜ ମନକୁ ବୁଝେଇ ସାରି, କେଶବାକୁ କହିଲା ହେମ, "ସତ କଥା, ମନକଷ୍ଟ କରିବାର ତ କିଛି ନାହିଁ, ସେ ତ ଅଛି, ଚାରିପାଇଟି କରିପାରିବ ଚାରିଘରେ । ଆମର ଇମିତି କୋଉ ରଜାଘର ହୋଇଛି ଯେ, ଦାଣ୍ଡକୁ ଗୋଡ଼ କାଢ଼ିବାକୁ ଲାଜ ଲାଗିବ । ଏତେ ମନସ୍ତାପ କରନି । ଠାକୁରେ ଗୋଟିଏ ଦୁଆର ବନ୍ଦ ହୋଇଗଲେ ଆଉ ଗୋଟାଏ ଦୁଆର ଖୋଲିଦିଅନ୍ତି ।" ଆଶ୍ୱାସ ଦେଲା ହେମ । କେଶବାର ଛାତି କୋରି ହୋଇଯାଇଥିଲା ସେଦିନ ହେମ କଥା ଶୁଣି, କେଡ଼େ ହତଭାଗା ସେ । ନିଜ ପିଲାଙ୍କ ମୁହଁରେ ଦାନା ମୁଠେ ଦେବାକୁ ଅସମର୍ଥ । ଆଶା କରିଥିଲା, ଗାଁ ତାକୁ କେବେ ହତାଶ କରିବନି । ତା' ଭାଗ୍ୟ ପୁଣି ଫିଟିବ । ହେଲା ଓଲଟା ସବୁ । ରାତି ପାହିଲେ ଦାନା ନାହିଁ, ହେମକୁ ଗୋଡ଼ କାଢ଼ିବାକୁ ପଡ଼ିବ । କି ଲଜ୍ଜା ତା'ପାଇଁ । ଧିକ୍କାର କଲା ନିଜକୁ କେଶବା ।'

ସେଦିନ ରାତିରେ ଝିଆରୀ କାମିନୀ ତା'ଭାଗର କ୍ଷୀର କୁନି ଭଉଣୀକୁ ନେଇ ଦେଇଥିଲା । ଖୁଡ଼ୀ, ବୋଉ ତ ମାମୁ ଘରକୁ ଯାଇଛି । ସଂଜ ହେଲାଣି ଫେରିବନି ଆଉ । ବାପା ଆସିବାକୁ ଡେରି ଅଛି, ତୁ ଝିଅକୁ ପିଆଇ ଦେ ଏ କ୍ଷୀର, ସେ କାନ୍ଦୁଛି ଭୋକରେ । ମୁଁ ବୋଉକୁ କହିବିନି ପିଆଇ ଦେ ତୁ । ଛୁଆଟା କେତେ କାନ୍ଦୁଛି ଆଠ ବର୍ଷର ଝିଅ କାମିନୀ ଦୁଧ ଗିନା ଧରି ଠିଆ ହୋଇଥିଲା ସାମ୍ନାରେ କରୁଣାର ମୂର୍ତ୍ତି ହେଇ । ତା'ଭାଗର କ୍ଷୀର, ସେ ପିଇ ପାରିବନି କୁନି ଭଉଣୀ କାନ୍ଦିଲେ... । ଆହା, ସେ ନିଷ୍ଠୁର ମା' ପେଟରେ ଏମିତିକା କରୁଣାମୟୀ ଜନ୍ମ ହୋଇଥିଲା କିମିତି କେଜାଣି, ସେ ମନା କରି ପାରିଲାନି । କାମିନୀ ମୁଣ୍ଡରେ ହାତ ବୁଲାଇ କେବଳ କଲ୍ୟାଣ କଲା, "ତୁ ରାଜରାଣୀ ହୁଅ ମା', ମନ ତୋର ଏମିତି ବଡ଼ ହୋଇଥାଉ । ଠାକୁରେ କୋଟି ପରମାୟୁ ଦିଅନ୍ତୁ । ମୁଁ ଋଣୀ ରହିଲି ଚିରଦିନ ।" ସେଇ ରାତିରେ ଲକ୍ଷ୍ମୀ କ୍ଷୀର ଖାଇ ଶୋଇ ପଡ଼ିଥିଲା ଶାନ୍ତିରେ । ହେଲେ କେଶବା କି ହେମ ଆଖିକୁ ନିଦ ଆସି ନ ଥିଲା । କେଶବା ଭାବୁଥିଲା, ରାତି ପାହିଲେ ସେ ଗାଁ ଭିତରକୁ ଯାଇ ଅନ୍ୟ କୋଉଠି ଚାଳିଆ ଖଣ୍ଡେ ଖୋଜିବ । ଏକାଠି ଆଉ ଚଳି ହେବନି । ତାହାହିଁ ହୋଇଥିଲା । ଭାଗ୍ୟକୁ ବଖୁରାଏ ଘର ମିଳିଗଲା ମଧ୍ୟ । ଅନୁମତିକୁ ଅପେକ୍ଷା ନ କରି ଭାଇକୁ କହିଲା କେଶବା, "ସେ ଭଡ଼ାଘରକୁ ଯିବାକୁ ଠିକ୍ କରିଛି । ଆମେ ଆଉ ଏକାଠି ରହିପାରିବାନି ଭାଇ । ଏ ନିତିଦିନର ଅଶାନ୍ତି ଭଲ ଲାଗୁନି ।"

ବଡ଼ଭାଇ ମାଧବ ବା କାହିଁକି ମନା କରନ୍ତା । ସେ ତ ଚାହୁଁଥିଲା ସେଇୟା, କହିଲା ଠିକ୍ ଅଛି, ଇଏ କୋଉ ନୂଆଁ କଥା ଯେ, 'ଯେତେ ଭାଇ ସେତେ ଘର' । ମାଧବକୁ ଟିକିଏ ଉଶ୍ୱାସ ଲାଗିଲା । ଯା'ହେଉ ଭଲରେ ଭଲରେ ସମସ୍ୟା ସମାଧାନ ହୋଇଗଲା ।

Digitized by PPRACHIN, SOA

ଚନ୍ଦ୍ରିକା ଭାଇ ଘରୁ ଫେରିବା ପୂର୍ବରୁ କେଶବା ପିଲାଙ୍କୁ ନେଇ ଭଡ଼ାଘରକୁ ଚାଲିଯାଇଥିଲା । ହେଲେ ରାତି ପାହିଲେ ଝିଅର କ୍ଷୀର ପାଇଁ ଚିନ୍ତା- ଚିନ୍ତା ପଡ଼ିଲା ଦି' ଓଳିର ଦାନା ପାଇଁ । ଚିନ୍ତା ପଡ଼ିଲା ଘରଭଡ଼ା କଥା ଭାବିଲାବେଳକୁ । ଶେଷରେ ହେମ ଚାରିଘର ପାଇଟି କରିବାକୁ ଗୋଡ଼ କାଢ଼ିଲା । ମାସଟିଏ କଷ୍ଟେମଷ୍ଟେ କଟିଲା । ତଥାପି ସୁଧୁରିଲାନି ପରିସ୍ଥିତି ।

ଗାଁ ଭିତରେ କାମ ପାଇଟି ପାଇଁ କିଏ କାହିଁକି ଖୋଜିବ । ସମସ୍ତେ ତ ଖଟିଖିଆ । ଦିନେ ଅଧେ ସିନା ସମ୍ଭାଳି ନେବେ ଆହା କରି । ଆଗକୁ ଚାହିଁଲା ବେଳକୁ ସବୁ ଅନ୍ଧାର ଦିଶିଲା କେଶବାକୁ । ନିଦ ଆସିଲାନି ଆଖିକୁ । କାହାକୁ ପରାମର୍ଶ ମାଗିବ । ଦୁହେଁ ବସି ଦିନେ ଚିନ୍ତା କଲେ । କେଶବା ମନକୁ କଥାଟିଏ ଜୁଟିଲା- "ଗାଁ ଛାଡ଼ିଲେ କିମିତି ହୁଅନ୍ତା । ଶୁଣିଛି, ଲୋକେ କାମଧନ୍ଦା ଖୋଜି ସହରକୁ ଯା'ନ୍ତି । ସେଠି ଅନେକ ଉପାୟ ଅଛି ବଞ୍ଚିବା ପାଇଁ ।

ଗାଁ ଭିତରେ ସିନା ମାଡ଼ି ପଡୁଛି ନିଜକୁ, ବାହାରେ କିଏ ଚିହ୍ନୁଛି କାହାକୁ ।" ତା'ଛଡ଼ା ପେଟ ପୋଷ ନାହିଁ ଦୋଷ । କାହା ଆଗରେ ହାତ ପାତିଲେ ସିନା ଲାଜ । ଦି'ମୁଠା ଦାନା ଆଉ ପିଲାଟିକୁ କ୍ଷୀରଟୋପେ ତ ତାକୁ ଯେମିତି ହେଲେ ଯୋଗାଡ଼ କରିବାକୁ ପଡ଼ିବ । ଯା' ଛଡ଼ା ତା' ଆଗରେ ତ କିଛି ସ୍ଥିର ଲକ୍ଷ୍ୟ ନାହିଁ । ଆଉ ତ କିଛି ଉପାୟ ଦିଶୁନି । ଏକଥା ଭାବିଲା ବେଳକୁ ତାକୁ ଟିକିଏ ଦମ୍ଭ ଲାଗିଲା । ଲୋକେ ତ ଯାଉଛନ୍ତି । ଭାବିଲା, ରାତି ପାହିଲେ ହେମକୁ କହିବ, ତା' ମନର କଥା । ଆକାଶକୁ ଚାହିଁଲା କେଶବା, ଅଧାରାତିରୁ ବେଶି ହେବ, ଆଖି ମାଡ଼ି ପଡୁଛି । ତା' ପରଦିନ ହେମ କାମ ସାରି ଘରକୁ ଫେରିଲା । ହାତରେ କିଛି ଜାଳ ଆଉ ଝିଅ ପାଇଁ କ୍ଷୀର ଗିନାଏ ଧରି ଚୁଲି ଜାଳିବାକୁ ବସିଲା । ନଡ଼ିଆ ବାହୁଙ୍ଗାକୁ ଭାଙ୍ଗୁ ଭାଙ୍ଗୁ କେଶବା କହିଲା-

"ଗୋଟେ କଥା ମନକୁ ଆସୁଛି, କହିବି କହିବି ବୋଲି ତୋତେ..."

"କହିପାରୁନ ତ ? ଇମିତି କ'ଣ କଥା ଯେ, ଏତେ ଭାବି ହେଉଛ ମୋ'ପାଖରେ କହୁନ ।"

"କ'ଣ କହୁଥିଲି କି, ଆମେ ଏଇ ଗାଁ ଛାଡ଼ି ଆଉ କୁଆଡ଼ିକି ଗଲେ କିମିତି ହୁଅନ୍ତା କହିଲୁ । ଆମ ଭଳି ହତଭାଗ୍ୟଙ୍କ ପାଖରେ ତ ଆଉ କିଛି ବାଟ ନାହିଁ। ଦିନକୁ ଦିନ ଅଭାବ ବଢୁଛି । ଏଠି ବଞ୍ଚିବାର କିଛି ବାଟ ଦିଶୁନି ।"

ହେମ ନିଜ ଭିତରେ ଟିକିଏ ଚମକି ଉଠିଲା ଶୁଣୁଶୁଣୁ । ଲୋକଟା କ'ଣ କହୁଛି । କୁଆଡ଼େ ଆଉ ଯିବ ! କିଏ ଅଛି ଭରସା କରିବାକୁ ଯେ । ମନ କଥା ହଠାତ୍ ଖୋଲି ନ ଦେଇ କହିଲା, "କୁଆଡ଼େ ଯିବାକୁ ଭାବୁଛ ?"

Digitized by PPRACHIN, SOA

"ପାଖ ସହରକୁ ।" ଲୋକେ ତ ଯାଉଛନ୍ତି । ଶୁଣିଛି, ସେଠି ଅନେକ ବାଟ ଅଛି... ଯିବା ?

"ମୁଁ ଆଉ କଣ କହିବି, ଠାକୁରେ ଆମ ପାଇଁ କୋଉଠି ଅନ୍ନଜଳ ଖଞ୍ଜିଛନ୍ତି କିଏ କହିବ । ସହର ବିଷୟରେ ଆମେ କ'ଣ ଜାଣିଛେ, ହାତରେ ତ ଦିନଚାରିଟା ବଞ୍ଚିବା ପାଇଁ ପଇସା ନାହିଁ । ଛୁଆଟାକୁ ନେଇ ଗୋଡ଼ କାଢ଼ିଲେ ବଞ୍ଚିପାରିବା ତ... ?" ହେମର ପ୍ରଶ୍ନ କେଶବା ଆଖିରେ ଅନିଶ୍ଚିତତାର ଅଖଣ୍ଡ ଅନ୍ଧାରକୁ ଡାକି ଆଣିଲା । ଦୁହେଁ ଝିଅଟାକୁ କୋଳେଇ ଧରି କାନ୍ଦିଥିଲେ ଅନେକ ସମୟଧରି ।

ହଠାତ୍ ଚମକି ଉଠିଲା ଭଳି କେଶବା କହିଲା, ଏତେ ଭାବିହେବା କାହିଁକି, ଏଠି ରହିଲେ ଏମିତି ଭୋକ ଉପାସରେ ମରିବା । ଗୋଡ଼ କାଢ଼ିଲେ ଅନିଶ୍ଚିତତା ଅଛି ସତ । ଯଦି ମରିବା କଥା ତ ମରିବା, ନଚେତ୍ ବାଟ ଦିଶିବ । ତୁ କହୁ ନା ଗୋଟାଏ ବାଟ ବନ୍ଦ ହେଇଗଲେ, ଆର ବାଟ ଖୋଲିଯାଏ । କିଏ ଜାଣେ ସେଭଳି କିଛି ଘଟଣା ଘଟିବ, ଅନ୍ଧାର ଭିତରେ ଆଲୁଅ ଦିଶିବ । ହତାଶା ଭିତରେ ମରିବା ଅପେକ୍ଷା, ସାହସ କରି ଥରେ ଦେଖିବା... ଦୁଆର ଡେଇଁଲେ ସିନା ବାଟ ଦିଶିବ ।

ହେମ ବି ଆଉ କିଛି କହି ନ ଥିଲା । ଅସ୍ଥିରତା ଆଉ ଅନିଶ୍ଚିତତା ଭିତରେ ଚାରିରାତି କଟେଇ ସାରିଲା ପରେ ଦିନେ ସ୍ଥିର କଲେ ଗାଁ ଛାଡ଼ିବାକୁ ।

ପାଖ ସହର ଉଦ୍ଦେଶ୍ୟରେ ହିଁ ଗୋଡ଼ କାଢ଼ିଥିଲେ ଦୁହେଁ । ଭାବି ନ ଥିଲେ ଅଧିକା କିଛି । ବେଶି ବାଟ ଯିବା ପାଇଁ ହାତରେ ପୁଞ୍ଜି ବି ନ ଥିଲା । ଲକ୍ଷ୍ୟସ୍ଥଳ ବି ସ୍ଥିର ନ ଥିଲା । ଆସିବା ଦିନ ଅପେକ୍ଷା କରିଥିଲେ କୌଣସି ଏକ ବସ୍‌କୁ, ଯିଏ ପାଖ ସହରକୁ ଯାଉଥିବ । କାହାକୁ ଟିକେ ପଚାରି ବୁଝିବ ବୋଲି କେଶବା ଆଗପଛକୁ ଅନିଷା କରୁଥିଲା । ଠିକ୍ ସେତିକିବେଳକୁ ଦେଖା ହେଇଗଲା ଗୋପଦାଦିଙ୍କ ସହିତ । ଗୋପଦାଦି ପାଖ ଗାଁର, ତା'ବାପାଙ୍କ ପିଇସୀ ପୁଅ ଭାଇ ହେବେ । ଦୁହେଁ ଓଳଗି ହେଇଥିଲେ । ଦାଦି ଆଶ୍ଚର୍ଯ୍ୟ ହୋଇ କେଶବାକୁ ପଚାରିଲେ, "କିରେ କୁଆଡ଼େ ବାହାରିଛ, ଅନେକ ଦିନ ପରେ ଦେଖୁଛି । ଶୁଣିଥିଲି ତୁ ଗାଁକୁ ଫେରିଆସିଛୁ ବୋଲି । ତୋ' ବିପଦ କଥା ବି ଶୁଣିଛି । ଦୁଃଖ ଲାଗିଲା । କେତେବେଳେ ଈଶ୍ୱର କାହାକୁ କୋଉ ଦୁଃଖ ଭିତରକୁ ଠେଲିଦିଅନ୍ତି କିଏ କହିପାରିବରେ ପୁଅ- ସହିବା ଛଡ଼ା ମଣିଷର ଆଉ ଉପାୟ କ'ଣ ଅଛି କହ । ହେଲେ ତୁ ଏବେ କୁଆଡ଼େ ବାହାରିଛୁ ଯେ ?"

କେଶବା ମୁହୂର୍ତ୍ତେ ନିରବ ରହି ଦୀର୍ଘଶ୍ୱାସଟିଏ ନେଇ କହିବ ନ କହିବ ଭାବୁ ଭାବୁ ମନକଥା ଖୋଲି କହିଲା । ସେ ଗାଁ ଛାଡ଼ି ଯାଉଛି । ଆମ ରହିବାକୁ ନେଇ ଭାଇ-ଭାଉଜଙ୍କର ପଡ଼ିଲାନି । ଭାଉଜ ନିତିଦିନ ଖିଟ୍‌ଖିଟ୍ ଲଗେଇଲେ । ଅଶାନ୍ତି ବଢ଼ିଲା ।

Digitized by PPRACHIN, SOA

ମୁଁ ଅକ୍ଷମ, ଅପାରଗ । ତିନିପ୍ରାଣୀ କିମିତି ବଞ୍ଚିବୁ ଦାଦି; ସହରକୁ ଗଲେ କିଛି କାମଧନ୍ଦା ଯଦି ମିଳିଯିବ... ।"

"କ'ଣ ହେଲା, ମାଧବ ମନା କରିଦେଲା, ତୁ ଚପ୍‌ଚାପ୍ ଶୁଣି ଘରଛାଡ଼ି ଆସିଲୁ ? ଗାଁରେ ଭଲଲୋକ କେହି ନ ଥିଲେ, ମୋତେ ବି ଟିକିଏ ଖବର ଦେଲୁନି, ଏମିତି ଅଭିମାନରେ କିଏ ଗାଁ ଛାଡ଼େ କିରେ ପୁଅ ! ମାଧବର ଯେତିକି ହକ୍ ତୋର ବି ତ ସେତିକି । ସମ୍ପତ୍ତି ବାପର, ସେ ସଂପାଦିଥିଲା । ତା' ରୋଜଗାର ତ ନୁହଁ । ନା, ତୁ ତ କିଛି ବୁଦ୍ଧିଆ କାମ କଲୁନି । ଚେଷ୍ଟା ତ କରିଥାନ୍ତୁ ଥରେ ।" ଏବେ ବି ସମୟ ଅଛି... କହିବୁ ଯଦି ମୁଁ ଥରେ ଚେଷ୍ଟା କରନ୍ତି... କହିଥିଲେ ଗୋପଦାଦି ।

ସେ କିନ୍ତୁ କୌଣସି ଉତ୍ତର ଦେଇ ନ ଥିଲା । କେବଳ ହସି ଦେଇଥିଲା । କ'ଣ ଆଉ ଅଧିକା ହେବ ଦାଦି । ଆପଣା ମଣିଷଙ୍କୁ ତ ଖୋଜିଛି । ମୋ ଦୁଃଖ କଷ୍ଟର କଥା ବି କହିଛି । ବଡ଼ସାନ, ଭଲଲୋକ ତ ଶୁଣିଛନ୍ତି । କାହିଁ କିଛି ବି ଫଳ ହେଲାନି । ଅଶାନ୍ତି ବଢ଼ିଥାନ୍ତା ସିନା । ମୁହଁରେ ଲାଜ, ପେଟର ଭୋକକୁ ନେଇ କେତେ କାଳ ଆଉ ପଡ଼ି ରହିଥାନ୍ତି ଗାଁରେ । ନିଜେ ସିନା ଭୋକ ସମ୍ଭାଳନ୍ତି- କୋଳଛୁଆ କିମିତି ସମ୍ଭାଳନ୍ତା କହୁନ ? ଆଉ ମୋତେ ଆଶା ଦେଖାଅନି ଦାଦି, ଆଉ ଫେରିବିନି ପଛକୁ । ଗୋଡ଼ ଯଦି କାଢ଼ିଛି ତ ଯିବି, ଯୁଆଡ଼େ ଭାଗ୍ୟ ନେଇଯିବ । କାହା ବୋଝ ହେବି କାହିଁକି ?" ଦାଦି ମୁହଁ ଶୁଖି ଯାଇଥିଲା । କ'ଣ ବା ସେ କରିଥାନ୍ତେ ! ପଚାରିଲେ, "ଏବେ ତୁ ଯିବୁ କୁଆଡ଼େ, ରାଉରକେଲା ନା କଟକ ?"

"ଜାଣେନା ଦାଦି, ତମେ କହୁନ କୁଆଡ଼େ ଗଲେ ମୋ' ପାଇଁ ସୁବିଧା ହେବ । ଦାନା ମୁଠେ ଯୋଗାଡ଼ କରିପାରିବି । ଗୋପଦାଦିଙ୍କ କପାଳରେ ଚିନ୍ତାର ରେଖା ଫୁଟି ଉଠିଥିଲା । କ'ଣ ପରାମର୍ଶ ଦେବେ ସେ । ତାଙ୍କର ବା କେତେ ଧାରଣା ସହର ସମ୍ପର୍କରେ । ଗାଁ ମାଟି କାମୁଡ଼ି ରହି ତ ପଡ଼ିରହିଛନ୍ତି କେତେକଲେ ହେଲା । ତେବେ ଲୋକଙ୍କ ମୁହଁରେ କଟକ ନାଁଟା ବାରବାର ଶୁଣି ଆସିଛନ୍ତି । ଭଲମନ୍ଦରେ, କଚେରି କାମରେ ଲୋକେ କଟକ ଧାଆଁନ୍ତି । ଠିକ୍ ତାଙ୍କ ଭାବନାକୁ ଖାପ୍ ଖାଇଲା ଭଳି କଟକ ବସ୍ ଆସି ଠିଆ ହେଲା । କାଳ ବିଳମ୍ୱ ନ କରି ଗୋପଦାଦି କହିଲେ, "ପୁଅରେ ଏଇ କଟକ ବସ୍, ତୁ କଟକ ଯା' ପହିଲେ । ମନ ବୁଝିଲେ ରହିବୁ, ନଚେତ୍ ତେଣିକି ଯାହା ଭାବିବୁ... ଯା ବସିଯା' ।"

ଆଉ କିଛି ନ ଭାବି, ଦୁହେଁ ଗୋପଦାଦିଙ୍କୁ ପ୍ରଣାମ କରି ବସ୍‌ରେ ଉଠିଲେ । ସେ'ଦିନ ବି ସାଥିରେ କେହି ନ ଥିଲେ, କିଛି ନ ଥିଲା, କେବଳ ଅଦେଖା ଭାଗ୍ୟର ହାତ ଧରି ଅନ୍ଧାର ଭିତରକୁ ପାଦ ବଢ଼େଇଥିଲେ ଦୁହେଁ ।

Digitized by PPRACHIN, SOA

ତା'ପରେ ତ ଏଇଠି । ଏଇ ଗାଁରେ । ଭାବପୁର-ଡିଆଡ଼ି ଘରେ । ଏମାନେ ଜମିଦାର ନ ଥିଲେ ସତ, ହେଲେ ଜମିଦାର ଭଳି । ବେଶ୍ ଥିଲା ପକ୍ଷ । ଗାଁରେ ବୁଢ଼ୀ ସା'ନ୍ତାଣୀ ଜମିବାଡ଼ି, ତୋଟାପାଟ ଦିଅଁ କଥା ବୁଝନ୍ତି । ପୁଅମାନେ ସବୁ ପାଠ ପଢୁଆ, ଚାକିରିଆ ବାହାରେ ରହନ୍ତି । ଚାକର, ହଳିଆ ହୋଇ ଫୁଞ୍ଜେ ପାଞ୍ଚଟା, ରୋଷେଇ କରିବାକୁ ଜଣେ ସବୁବେଳେ ଥା'ନ୍ତି ପାଖରେ । ବଡ଼ ମନ, ବଡ଼ ବିଚାର ମା' ସା'ନ୍ତାଣୀଙ୍କର । ଘଟଣାକ୍ରମେ ଭାଗ୍ୟ କେଶବାକୁ ଆଣି ଏଇଠି ମା' ସା'ନ୍ତାଣୀଙ୍କ ଦୁଆରେ ପହୁଞ୍ଚେଇଥିଲା ।

ସବୁ ଭାଗ୍ୟର ବରାଦ... ନହେଲେ ସେ କିଏ, କୋଉ ମଣିଷରେ ଲେଖା । ସେଇ ବସ୍‌ରେ... ଦେଖା ହୋଇଥିଲା, ଜଣେ ଭଲମଣିଷ ସହିତ । କୋଳର ପିଲାକୁ ନେଇ ଟଳମଟଳ ହେଉଥିବା ହେମକୁ ବସିବା ପାଇଁ ଜାଗାଟିଏ ଦେଲେ । ସେଇ ଭଲ ମଣିଷ ଜଣକ ଦୁଃଖସୁଖ ଭଲମନ୍ଦ ପଚାରି ବସିଲେ ନିଜଆଡୁ । ସାହସ ପାଇ ଦୁହେଁ କହିଥିଲେ ନିଜ ଦୁଃଖ ଏବଂ ବଞ୍ଚିବାର ବାଟ ଖୋଜି ବାହାରିଛୁ ସହରକୁ, ଭାଗ୍ୟ କୁଆଡ଼େ ନେବ ଜାଣିନୁ; ଚିନ୍ତା ପ୍ରକଟ କରିଥିଲେ ମଧ୍ୟ ।

ସେଇ ଉଦାର ମଣିଷଟିର ମନ ତରଳି ଯାଇଥିଲା । ଆହାପଣରେ ହୁଏତ ଭରି ଉଠିଥିଲା ତାଙ୍କର ଛାତି । ଭଲମଣିଷ ତ ସବୁବେଳେ, ସବୁଠି, ସମସ୍ତଙ୍କ ପାଇଁ ଭଲ ହିଁ । ସେଇ ତିନି ଚାରି ଘଣ୍ଟା ଦୁଃଖରେ ଭାଗ ବାଣ୍ଟୁ ବାଣ୍ଟୁ, ସେ ହିଁ ଦେଇଥିଲେ ଡିଆଡ଼ିଘର ଠିକଣା । ବାଟ ଦେଖାଇଥିଲେ ଭାବପୁରର । "ଏଇ ଆଗରେ ପଡ଼ିବ ଭାବପୁର । ଦୁହେଁ ସେଠି ଓହ୍ଲେଇ ସିଧା ଚାଲିଯାଅ ବୁଢ଼ୀ ସା'ନ୍ତାଣୀଙ୍କ ଦୁଆରକୁ । ନିର୍ଭୟରେ ନିଜ ଦୁଃଖ କୁହ । ବଡ଼ମାପର ମଣିଷ ସେ । କେବେ ଆଡ଼େଇ ଦେବେନି । ଅନେକ ଦୁଃଖୀ ରଙ୍କିଙ୍କୁ ସେ ଠା'ଦେଇଛନ୍ତି । ସେ କୁଳରେ ଲଗେଇଦେବେ । ତାଙ୍କ ମନ କିଣି ପାରିଲେ ହେଲା... ଦେଖିବ ସବୁ ସୁବିଧା ହେଇଯିବ ।

କେଶବା ଭଲମଣିଷର କଥା ଆଉ ଆଶ୍ୱାସନା ଶୁଣି ହେମ ମୁହଁକୁ ଚାହିଁଲା, ହେମ ଆଖି ଉଜ୍ଜ୍ୱଳି ଉଠୁଥିଲା । ଆଲୁଅ ଦିଶିଲା କେଶବାକୁ । ଆଗ ଛକ ଭାବପୁର, କଣ୍ଡକ୍ଟର ଜଣେଇଦେଲା ଯାତ୍ରୀଙ୍କୁ ।

ଆତ୍ମୀୟତା ପ୍ରକଟ କରି ସେଇ ଭଲ ମଣିଷ ଜଣକ କହିଲେ, ଏଇଠି ଓହ୍ଲେଇ ଯାଅ ଦୁହେଁ ଏଥର ।

ଆଉ କିଛି ଚିନ୍ତା ନ କରି ଦୁହେଁ ଓହ୍ଲେଇ ପଡ଼ିଲେ ତରତର ହେଇ । ମଣିଷଟି ନିଜେ ବଢ଼େଇ ଦେଇଥିଲା ବ୍ୟାଗ୍ ଆଉ ଲୁଗାପଟାର ପୁଟୁଳିଟି । ଭଲ ମଣିଷମାନେ ସବୁବେଳେ ଏମିତି ଲୋକଲୋଚନର ଅନ୍ତରାଳରେ ହିଁ ଥା'ନ୍ତି । ମଣିଷର କିମିତି ଭଲ

Digitized by PPRACHIN, SOA

ହେଉ, ଭଲରେ କିମିତି ସଭିଏଁ ବସବାସ କରନ୍ତୁ; ନିରନ୍ତର ଏଇ ଭାବନା ସେମାନଙ୍କର । ଏମାନଙ୍କ ଦର୍ଶନ ଛାଣ ଦିଅଁ ଦର୍ଶନ ଠୁ ବଳି- କେଶବା କହିଥିଲା ହେମକୁ ।

ବାଟ ପଚାରି ପଚାରି ଦୁହେଁ ତିଆଡ଼ି ଘର ଦୁଆର ମୁହଁରେ ପହଞ୍ଚି ସା'ନ୍ତାଣୀଙ୍କୁ ଭେଟିଥିଲେ । ଲକ୍ଷ୍ମୀଟା ସେତେବେଳକୁ ରାଆ ଧରି କାନ୍ଦୁଥିଲା, ଭୋକରେ ଆଉଟୁ ପାଉଟୁ ହେଇ । ମା' ସା'ନ୍ତାଣୀଙ୍କୁ ମୁହୂର୍ତ୍ତେ ଲାଗି ନ ଥିଲା, ହେମକୁ କଥା କହିବାକୁ ନ ଦେଇ କହିଥିଲେ, "ଆଗ ଛୁଆ ଖବର ବୁଝ, ତା'ପରେ ନିଜ ଦୁଃଖ କହିବୁ... ।" ଘର ଭିତରକୁ ଯାଇ କ୍ଷୀର ଗିନାଏ ଆଣି, ହେମ ଆଗରେ ଥୋଇ ପଚାରିଲେ ତୋ ପୁଟୁଳିରେ ଶାମୁକା ଅଛି ନା ଚାମୁଚ ଆଣିବି ? ଆଗ ପିଆଇ ଦେ', ପିଲାଟା ଅଥୟ ହେଲାଣି । ହେମ ଶାମୁକା ବାହାର କରି ଲକ୍ଷ୍ମୀକୁ କ୍ଷୀର ପିଆଉ ପିଆଉ ଭାବିଲା, ସତରେ ବଡ଼ମାପର ମଣିଷ ! ସାକ୍ଷାତ୍ ଅନ୍ନପୂର୍ଣ୍ଣା !

ତା'ପରେ ରମାକୁ କହିଲେ, ଏ ଦୁହିଁଙ୍କ ପାଇଁ ପଖାଳ ବାଢ଼ିଦେ, ବେଳ ଗଡ଼ିଯାଉଛି । ଆଗ ସାଷ୍ଟାମ ହୁଅନ୍ତୁ । ପଛକେ ବୁଝିବା ସେମାନଙ୍କ କଥା ।

ସେ'ଦିନ ନିଜ ତଦାରଖରେ ଆମକୁ ପେଟପୁରା ଖୁଆଇଥିଲେ ମା' ସା'ନ୍ତାଣୀ । ମନ ଥୟ ଧରିଥିଲା । ଦମ୍ଭ ବି ଲାଗିଥିଲା ।

କେଶବା ସଙ୍କୋଚ ନ କରି ସବୁକଥା ଟିକିନିଖି କରି ସା'ନ୍ତାଣୀଙ୍କୁ କହି ଆଶ୍ରା ଭିକ୍ଷା କରିଥିଲା । ସା'ନ୍ତାଣୀଙ୍କ ଆଖି ଜକେଇ ଆସିଥିଲା । ଆହା, ଦୁଃଖୀ ମଣିଷଟିଏ । ମୁହୂର୍ତ୍ତେ ଭାବି କହିଲେ ଆଉ କୁଆଡ଼େ ଯିବୁ ଏଇ ଚାଖଣ୍ଡେ ଛୁଆକୁ ନେଇ । ବାଡ଼ିପଟରେ ବଖୁରିଏ ଚାଳିଆ ଅଛି; ତାକୁ ଟିକିଏ ବାଗିଲା କରି ସଜାଡ଼ି ଦେଲେ ରହିବା ଯୋଗ୍ୟ ହୋଇଯିବ ବୋଲି ଭାବୁଛି । ଟିକେ ଯାଇ ଦେଖିନେ, ସେଠି ଚଳିପାରିବୁ କି ନାହିଁ ।

ଆଉ କ'ଣ ଦେଖିବୁ ମା', ସେଇ ଯଥେଷ୍ଟ, କହିଥିଲା କେଶବା । ଜିନିଷ ଥୋଇବାକୁ ଯାଇ ଦିହେଁ ଦେଖିଲେ । ତଳିଆ ଘର, ଟିକେ ସନ୍ତସନ୍ତିଆ । ଭାଉଁଭାଉଁ ମଶା ହେଉ ପଛେ, ଘର ତ, ଖରାବରଷାକୁ ଛାଇଛତା । ଏତକ ବି କାହାକୁ ମିଳୁଛି ଯେ, ତା'ଭଳି ଅଭାଗାକୁ ଭଲ ଘର ମିଳିବ କୋଉଠୁ । ଚଳପ୍ରଚଳ ବ୍ୟବହାର ଉପଯୋଗୀ ହେଲେ ଏଇ ତା' ପାଇଁ ସରଗ ପାଲଟିଯିବ । ତିନିପ୍ରାଣୀ ଚଳିବାକୁ ବିଶେଷ ଅସୁବିଧା ନାହିଁ । ସବୁ ତ ଅଛି, ପାଣି, ଜାଳେଣି ଆଲୁଅର ଅଭାବ ହେବନି । କେବଳ ଚିନ୍ତା ହେଲା, ଗୁଜୁରାଣର । ସବୁଦିନ ତ ମା'ଙ୍କ ଘରେ ବୋଝ ହେଲେ ଚଳିବନି । ନିଜେ ତ ଅକ୍ଷମ, ପଙ୍ଗୁ, ଅଧା ଗୋଡ଼ ହାତର ମଣିଷ ।

ମା' ସା'ନ୍ତାଣୀଙ୍କୁ କହିବାକୁ ପଡ଼ି ନ ଥିଲା କିଛି । ସବୁ କଥା ସେ ବୁଝିପାରିଥିଲେ ଅନ୍ତର୍ଯାମୀ ଭଳି । କଥା ଛିଣ୍ଡେଇଥିଲେ ହେମ ସାଙ୍ଗରେ । ତାଙ୍କୁ ସେ ଘରକାମରେ

Digitized by PPRACHIN, SOA

ସାହାଯ୍ୟ କରିବ ଏବଂ ସେଇ ବାବଦକୁ ସେ ଭାତ ଲୁଗା ପାଇବ । ଗୁହାଳରେ ଦି'ଯୋଡ଼ା ଗାଈ କ୍ଷୀର ଦେଉଛନ୍ତି, ପିଲାଟା ପାଇଁ କିଛି ଚିନ୍ତା ନାହିଁ । ଆଉ କେଶବା କଥା, ବସି ବସି ଯାହା ପାରିବ ତାହା କରିବ ।"

କିଛି ମାସ ଚଳିଲା । କଥାରେ ଖିଲାପ କରି ନ ଥିଲେ ସାନ୍ତାଣୀ ସତ, ହେଲେ ସେତିକିରେ ତ ସଂସାରର ସମସ୍ୟା ମେଣ୍ଟିବା ସମ୍ଭବ ନୁହେଁ । କେଶବାକୁ ମାଡ଼ି ପଡ଼ିଲା । ନିଜକୁ ଅନ୍ୟର ବୋଝ ଭଳି ମନେହେଲା । ଛ' ଆଠମାସ ହେଲାଣି ତ ସେ ବସି ବସି ଖାଉଛି । ଏବକୁ ସିନା ଚଳିଯାଉଛି । ପିଲାଟା ବଡ଼ହେବ ଧୀରେ ଧୀରେ । ଭବିଷ୍ୟତ ଚିନ୍ତା ମାଡ଼ିବସି ତାକୁ ଅଥୟ କରୁଥିଲା ମଝିରେ ମଝିରେ ।

ଅବଶ୍ୟ ସା'ନ୍ତାଣୀଙ୍କ ନିର୍ଦ୍ଦେଶରେ ହଳିଆ ମୂଲିଆଏ କେଶବାକୁ ତାଙ୍କ କାମରେ ଲଗଉଥିଲେ । ବସି ଶୋଇ ସେ କାମ କରୁଥିଲା, ତଥାପି ମନ ମାନୁ ନ ଥିଲା । ଗାଁ ଭିତରେ କାହାର କିଛି ଆବଶ୍ୟକ ପଡ଼ିଲେ ବି ସେ ଯାଉଥିଲା, ଯିଏ ଯାହା ଖୁସିରେ ଦେଉଥିଲେ, ଆଣୁଥିଲା ବି । ଅଭିମାନ ନ ଥିଲା ଦୁହିଁଙ୍କର । ତେଣୁ ଗାଁ ଭିତରେ ଅନ୍ୟମାନେ ଖୋଜି ଲୋଡୁଥିଲେ ସେମାନଙ୍କର ଆବଶ୍ୟକ ବେଳେ । ସା'ନ୍ତାଣୀଙ୍କର ଏଥିରେ କୌଣସି ଆପତ୍ତି ମଧ୍ୟ ନ ଥିଲା ।

ସମୟ ଗଡ଼ିଚାଲେ ନିଜ ବାଟରେ । ଋତୁ ବଦଳେ, ଗ୍ରୀଷ୍ମ ବର୍ଷା, ଶୀତ ବସନ୍ତ ହୋଇ । ଫୁଲ ଫୁଟେ, ଫୁଲ ଝରେ । ପୁଣି କଢ଼ ଧରେ ଗଛ । କେହି କାହାକୁ ଅପେକ୍ଷା ରଖନ୍ତିନି । ଅଥଚ ସବୁ ଯିମିତି କାହା ନିର୍ଦ୍ଦେଶରେ ଘଟେ । ମଣିଷ କେତେବେଳେ ତାକୁ ଅଦୃଷ୍ଟ କୁହେ ତ କେତେବେଳେ ଈଶ୍ୱର କୁହେ । ସେଇ ଅଦୃଶ୍ୟ ଶକ୍ତି ହିଁ ସବୁ କରେ, କରାଏ । ମଣିଷ କେବଳ ଖେଳ କଣ୍ଢେଇ ଭଳି ନାଚେ । ଭାଙ୍ଗେ ବି ଗଢ଼େ ବି । ମଣିଷ ହାତରେ କିଛି ନାହିଁ । କେବଳ ଅପେକ୍ଷା... ସମୟକୁ ।

ପ୍ରତ୍ୟେକ ବର୍ଷ ରାଧାରମଣଙ୍କ ବିବିଧ ଯାନିଯାତ୍ରା, ପର୍ବପର୍ବାଣି ପାଳନ କରାହୁଏ ପାରମ୍ପରିକ ରୀତିରେ । ଦି'ପୁରୁଷର ମନ୍ଦିର । ଉଆସ ଭିତରେ ନହେଲେ ବି ଉଆସକୁ ଲାଗି ପ୍ରତିଷ୍ଠିତ ହୋଇଛନ୍ତି । ବିଶେଷକରି ରାଧାରମଣଙ୍କ ଜନ୍ମୋତ୍ସବ କାର୍ତ୍ତିକ ମାସରେ ଏବଂ ଦୁର୍ଗାପୂଜା । ଭାବପୁର ଜମିଦାରଙ୍କ ବିଶେଷ ପର୍ବ । ଗାଁ ଗୋଟା ଏଥିରେ ଭାଗ ନିଅନ୍ତି । ସେତେବେଳେ ଛୋଟିଆ ଗାଁ ହେଲେ ବି ତା' ଚେହେରା ବଦଳିଯାଏ ଉତ୍ସବର ସରଗରମରେ । ଜମିଦାର ଥିଲା ବେଳର ଆଟୋପ ଯଦିଓ ଏବକୁ ଆଉ ନାହିଁ । ତଥାପି ସା'ନ୍ତାଣୀ ତାଙ୍କ ସମର୍ଥକୁ ଦେଖି ପରମ୍ପରାକୁ ଚଳେଇ ରଖିଛନ୍ତି । ଆଗରୁ ବନ୍ଧୁବାନ୍ଧବ, ଆତ୍ମୀୟସ୍ୱଜନଙ୍କୁ ଖୋଜିଲୋଡ଼ି ଆଣୁଥିଲେ । ଗହଳଚହଳ ଲାଗୁଥିଲା । ଗାଁ ଗୋଟା ଏକାଠି ଖାଉଥିଲେ ଯଜ୍ଞାନ କରି । ଏବେ ବି ସେଇ ପ୍ରଥା ଅଛି । ସମୟକୁ ଚାହିଁ କମିଯାଇଛି ଯାହା ।

Digitized by PPRACHIN, SOA

ପିଲାଏ ଆଗରୁ ବର୍ଷେ ଦି'ବର୍ଷରେ ଆସୁଥିଲେ ଘରକୁ । ଏବେ ଆଉ ଆସିବା ସମ୍ଭବ ହେଉନି । ବଡ଼ପୁଅ ବିବୁଧ ସିଙ୍ଗାପୁରରେ, ସାନପୁଅ ଜାପାନରେ । ତାଙ୍କ ପିଲାଏ ପାଠ ପଢ଼ିଲେଣି ସିଆଡ଼େ । ମା' ସା'ନ୍ତାଣୀ ବି କୁହନ୍ତି । "ବିପଦ ଆପଦ ଅଛି ଏତେ ଯିବାଆସିବା ଆବଶ୍ୟକ ନାହିଁ । ମୁଁ ତ ଏବେବି ସମର୍ଥ ଅଛି, ଏଠା କଥା ବୁଝିବାକୁ । ଗାଁ ଲୋକେ ଅଛନ୍ତି । ତମେ ଯୋଉଠି ଥାଅ ଭଲରେ ଥାଅ । ସୁସ୍ଥ ଥାଅ । ଆଉ ରୀତିମତ ନିଜ ଭଲମନ୍ଦ ଖବର ଜଣେଇବାକୁ ଯିମିତି ଭୁଲି ନ ଯାଅ । ମୋ କଥା ଚିନ୍ତା କରନି । ହାତୀ ବଣରେ ଥିଲେ ବି ରଜାଙ୍କର ।"

ଆଗରୁ ରମା ଥିଲା ଏବେ ହେମ ବି ଅଛି ପାଖରେ । ଦମ୍ଭ ଧରିଲାଣି ମନ । ହେଲେ ଆଜିକାଲି ଗାଁ ଲୋକେ ଆଗଭଳି ନୁହନ୍ତି । ଲୋକଚରିତ୍ର ବଦଳିଲାଣି । ତୋ' ମୋ' ଭାବ ଆସି ବସା ବାନ୍ଧିଲାଣି ସବୁଠି । ବେଳେବେଳେ ତାଙ୍କୁ ଏଇ ଲୋକସ୍ୱଭାବ ସନ୍ଦେହରେ ପକଉଛି ।

ତଥାପି ପିଲାଙ୍କୁ ଅପେକ୍ଷା ନ ରଖି, ଗାଁ ଲୋକଙ୍କୁ ନେଇ ଯାନିଯାତ୍ରା, ଦୁର୍ଗାପୂଜା ସମ୍ଭାଳି ନେଉଛନ୍ତି । ଆଜି ବି ତାଙ୍କ କଥାକୁ ଆଡ଼େଇଲା ଭଳି ଲୋକ ଭାବପୁରରେ ନାହିଁ । ତେଣୁ ହିଁ ସବୁ ଚଳିଯାଉଛି ।

ହେମ ସବୁ କଥା ସମ୍ଭାଳି ନେଉଛି ଘର ମଣିଷ ଭଳି । ମା ସା'ନ୍ତାଣୀଙ୍କୁ ସେ ଚିନ୍ତାମୁକ୍ତ କରିଦେଇଛି ସତ, ହେଲେ ନିଜ ଚିନ୍ତାରୁ ସେ ମୁକ୍ତ ହେଇପାରିନି । "ଲକ୍ଷ୍ମୀ ବଡ଼ ହେଉଛି । ସ୍କୁଲ ଯିବା ବୟସ ହେଲାଣି । ପାଠ ଦି'ଅକ୍ଷର ନ ପଢ଼ିଲେ ଯେ ହେବନି । ଯୁଗ ବଦଳୁଛି । ଆମବେଳ ତ ଆଉ ନାହିଁ, କହିଲା ହେମ । ତା' ଭବିଷ୍ୟତ ଅଛି । ପାଠ ଦି'ଅକ୍ଷର ପଢ଼ିଥିଲେ, ଯୋଉ ବାଟ ହେଲେ ତାକୁ ଦିଶିବ । ନହେଲେ ପଛକେ ସେ ଆମକୁ ଦୋଷ ଦେବନି ?"

"ଠିକ୍ କଥା ଯେ, ମା' ସା'ନ୍ତାଣୀଙ୍କ ଦୟାରୁ ଗୁଜୁରାଣଟା ମେଣ୍ଟିଯାଉଛି ଏବକୁ । ଖାଇ ପିଇ ଲୁଗାପଟା ଦି'ଖଣ୍ଡର ଅଭାବ ହେଉନି । ଯା ବୋଲି ସବୁକଥାକୁ ତାଙ୍କ ଉପରେ ଭରସା କଲେ କିମିତି ହେବ । ଭାବୁଛି ନିଜେ କିଛି ଗୋଟେ କରନ୍ତି... ହେଲେ କ'ଣ କରିପାରିବି, ଗୋଡ଼ ତ ନାହିଁ... ।" କେଶବାର ମନସ୍ତାପ ବଢ଼େ ଦିନକୁ ଦିନ ।

ମନସ୍ତାପ ହେବାର କାରଣ ବି ଅଛି । ସିଏ ତିଆଡ଼ି ଉଆସରେ ରହିଲା ଦିନୁ, ସା'ନ୍ତାଣୀଙ୍କ ବିଶ୍ୱାସ ତା'ଉପରେ ବିଶେଷ ଭାବେ ଜମି ଆସୁଥିବା ଲକ୍ଷ୍ୟ କରି, ହଳିଆ ମୂଲିଆଙ୍କର ମନରେ ଟିକିଏ ଟିକିଏ ଖୁଁତ୍ ଖୁଁତ୍ ଭାବ ଧରିଆସୁଛି । କେତେବେଳେ କିମିତି ତା'ର ପରିପ୍ରକାଶ ବି ଘଟୁଛି । ଭଲ ଲାଗୁନି ତାକୁ । ପୁଣି ଅଶାନ୍ତି ବଢ଼େଇବ କାହିଁକି- କିଛି ଗୋଟାଏ କରିପାରନ୍ତା ଯଦି... ।

Digitized by PPRACHIN, SOA

ଦିନେ ରାତିରେ କେଶବ ହେମ ଆଗରେ କହିଲା, 'ତୁ ଥରେ ମା ସା'ନ୍ତାଣୀଙ୍କ ଆଗରେ ଏ କଥାଟା ବାଗେଇବୁଗେଇ ପକେଇ ପାରନ୍ତୁନି, ଦେଖିଥାନ୍ତେ ସେ କ'ଣ କହୁଛନ୍ତି । କୋଉ ବାଟ ଦେଖଉଛନ୍ତି... ବଡ଼ ଅସ୍ଥିର ଲାଗୁଛି ଲୋ ହେମ ।

ତମେ ଏତେ ତର ତର ଅସ୍ଥିର କାହିଁକି ହେଉଛ ଯେ, ସମୟ ଆସିଲେ ସବୁ ଠିକ୍‌ଠାକ୍ ହୋଇଯିବ... ସବୁର କର । ଆମଭଳି ମଜିମୁଣ୍ଡିଆ ହାତରେ କ'ଣ ଅଛି ଯେ କରିପାରିବା । କହି ସିନା ଦେଲା, ହେଲେ ମନେ ମନେ ଭାବିଲା, ମଣିଷଟା କଥାଟାକୁ ମନରେ ଧରିଛି କାହିଁକି, କିଏ କ'ଣ କହିଲା ନା, ଆଉ କ'ଣ ଭାବୁଛି କେଜାଣି !

"ସମୟ ଆମ ପାଇଁ ସୁଯୋଗ ନେଇ ଆସିବନି ଲୋ, ଆମକୁ ହିଁ ବାଟ ଖୋଜିବାକୁ ହେବ । ଏଇ କାଲି କଥା, ନିଧି ନନା କଥା ପ୍ରସଙ୍ଗରେ ଖେଣ୍ଟା ମାରିଲା, କହିଲା..." ଆମେ ତ ଭାଇ ଦି'ପୁରୁଷ ହେଲା ସା'ନ୍ତଙ୍କ ଘରେ ଖଟୁଛୁ, କିଛି ଅସୁବିଧା ଅଭାବ ରଖନ୍ତିନି ମା' ସା'ନ୍ତାଣୀ ସତ ହେଲେ ତୋ' କଥା ନିଆରା, ବର୍ଷ ଚାରିଟାରେ ତୁ ଘରପୁଅ ହେଲୁଣି । ଦାଣ୍ଡଦୁଆରେ ବସି ତୁ ଯେଡ଼େ ଜୋରରେ କଥା କହିପାରିବୁ, ମୁଁ କାହିଁକି ଆଉ କେହି ବି ପାରିବେନି ।" ଅବଶ୍ୟ କଥାକୁ ବନେଇ ଚୂନେଇ ସହଜ କରି କହିଲା, ହେଲେ ତା' ଭିତର ଭାବ ବୁଝିବାକୁ ମୋର ଅସୁବିଧା ହେଲାନି । ଅସହଣି ଭାବ ମୁଣ୍ଡ ଟେକୁଛି । ଗୋଡ଼ ନାହିଁ ବୋଲି, ସମସ୍ତିଙ୍କ ଭଳି ସବୁ କାମକୁ ଅଣ୍ଟା ଭିଡ଼ିପାରୁନି ଯେତେବେଳେ, ମୋ' ବସିବାଟା ତ ଦିଶିବ ଆଖିକି ସଭିଙ୍କର ।

ହେମ ମନକୁ କଥାଟା ଛୁଇଁଲା । ସତ କଥା । ଆଖି ଦୁରୁଶିଆ ହେଇ ମଣିଷଟା ବସିଛି ଯେତେବେଳେ... ପାଞ୍ଚଜଣଙ୍କ ଆଖିକି ଦିଶିବ । କିଏ କାହିଁକି ଚିନ୍ତା କରିବ ଅସୁବିଧାଟା କୋଉଠି । କହିଲା, ହଉ କେତେବେଳେ ସୁବିଧା ଦେଖି ସାନ୍ତାଣୀଙ୍କୁ କହିବି ।

ଆଗକୁ ପନ୍ଦରଟା ଦିନ ବି ନାହିଁ ଦୁର୍ଗାପୂଜା । ଘର ସଫେଇ, ମନ୍ଦିରରେ ଚୂନ ଧଳେଇ, ପାର୍ବଣ ପାଇଁ ପ୍ରସ୍ତୁତି ଶେଷ ହେଇ ଆସିଲା କ୍ରମଶଃ । ସା'ନ୍ତାଣୀଙ୍କୁ ଟିକେ ନିଃଶ୍ୱାସ ମାରିବାକୁ ବେଳ ହେଲା । ଦିନକର ସଂଜବେଳକୁ ହେମ ବସି ସଂଜ ବଳୁଛି, ସା'ନ୍ତାଣୀ ନିଜଆଡୁ ହିଁ କହିଲେ, ଆଲୋ ହେମ, ଏଇ ଲକ୍ଷ୍ମୀକୁ ଏଇଥର ସ୍କୁଲକୁ ପଠା, କାଲି ଓଝା ପଣ୍ଡିତେ ଆସିବେ ପୁରୋହିତଙ୍କୁ ନେଇ, ଡାକି ପଠେଇଛି, ପୂଜା ହୋମ ପାଇଁ ଚିଠା ଦେବାକୁ । ମନେପଡ଼ିଲା, ଲକ୍ଷ୍ମୀ କଥା, ତାଙ୍କୁଇ କହିବି ଭାବିଛି । ତାଙ୍କ ଚାହାଳିରେ ନେଇ ପିଲାଟାକୁ ବସାନ୍ତୁ ଏଥର, କ'ଣ କହୁଛୁ ? ପଢୁ ଦି'ଅକ୍ଷର ।

ସତେକି ଠାକୁରଙ୍କ କରୁଣା ଝରିପଡ଼ିଲା । ଲକ୍ଷ୍ମୀର ପାଠପଢ଼ାକୁ ନେଇ ସ୍ୱାମୀ-ସ୍ତ୍ରୀ ଦିହେଁ କେତେ କଥା ଭାବିଛନ୍ତି । କହିବାକୁ ଯାହା ଭରସା ପାଉନଥିଲା, ଠାକୁରେ କୁହାଇଦେଲେ ।

Digitized by PPRACHIN, SOA

"ମୁଁ କିଆଁ ମନାକରିବି ସା'ନ୍ତାଣୀ । ଇଏ ତ କେଡ଼େ ବଡ଼ କଥା । ମୋ ଝିଅର ଭାଗ୍ୟ । ତମେ ତ ଆମର ମା'-ବାପ । ତମ ପାଟିରୁ ଅମୃତ ଝରିଛି ଯେତେବେଳେ, ନିଶ୍ଚୟ ଲକ୍ଷ୍ମୀ ଇସ୍କୁଲ ଯିବ । ମଣିଷ ହେବ । ଅଗଣାରେ ଚଟେଇ ଖେଳୁଥିବା ଲକ୍ଷ୍ମୀକୁ ଉଦ୍ଦେଶ୍ୟ କରି ହେମ ଡାକିଲା । ଅଇଲୁ ଲକ୍ଷ୍ମୀ, ଆ', ମାଆଙ୍କୁ ମୁଣ୍ଡିଆ ମାରେ; ଏଥର ପାଠ ପଢ଼ିବାକୁ ଇସ୍କୁଲ ଯିବୁ ହେଲା...ଖୁସି ତ ।"

ଲକ୍ଷ୍ମୀ ମୁଣ୍ଡିଆ ମାରିଲା ।

ହେମ ଏଇ ସୁଯୋଗରେ କେଶବାର କଥା ଉଠେଇଲା । କହିଲା ମଧ ମନର କଥା । ସା'ନ୍ତାଣୀ କହିଲେ, ଏଇ କଥାକୁ ଏତେ ସଙ୍କୋଚ କାହିଁକି । ଇଚ୍ଛା ଥିଲେ ବାଟ କ'ଣ ଦିଶିବନି । ପ୍ରଥମ କଥା ହେଲା, ତା'ର ସାହସ, ମନର ଦମ୍ଭ । ସାହସ ଥିଲେ ପଙ୍ଗୁ ପରା ଗିରି ଲଂଘିବ, ଭାଗବତ କହିଛି । ମୁଁ ଟିକିଏ ଭାବେ । ସଞ୍ଜ ହେଇ ଆସୁଥିଲା, ସା'ନ୍ତାଣୀ ଉଠିଗଲେ ସନ୍ଧ୍ୟା ଆଳତି ପାଇଁ । ହେମକୁ ଉଶ୍ୱାସ ଲାଗିଲା କଥାଟାକୁ କହିଦେଇ, ତେଣିକି ଠାକୁରଙ୍କ ଇଚ୍ଛା ।

ସେଦିନ ସଞ୍ଜ ବସେଇ, ହେମ ବାପ ଝିଅଙ୍କ ପାଇଁ ଗୁହାରି ଜଣେଇଲା ଚଉରା ମୂଳେ ।

ତା'ପରଦିନ ସକାଳୁ ସା'ନ୍ତାଣୀ କେଶବାକୁ ଡକେଇଲେ । ତାକୁ ଅଗଣା ପାହାଚ ଉପରେ ବସିବାକୁ କହି ପଚାରିଲେ, ହେମ କହୁଥିଲା, ତୁ କିଛି ଗୋଟାଏ କରିବାକୁ ଚାହୁଁଛୁ ? କେଶବା ମୁଣ୍ଡ ପୋତି ନିଜର ସମ୍ମତ ଜଣେଇଲା । ହେଲେ... ।

ହେଲେ ଆଉ କ'ଣରେ ପୁଅ, ଇଚ୍ଛା ଶକ୍ତି ଟାଣ ଥିଲେ, ବାଟ ଆପେ ଦିଶିଯିବ । ତୋର ସାହସ ହେଉଛି ଯଦି କହ । ମୋତେ ଗୋଟାଏ ବାଟ ଦିଶୁଛି ତୋ'ପାଇଁ । ହାଇୱେଟା ଆମ ଗାଁରୁ ପରା ପାଏ ମାତ୍ର ବାଟ । ପୁଣି ସେଇଟା ଆମ ଗାଁ ସଡ଼କ ସାମ୍ନାସାମ୍ନି ଶାଳିଗାଁକୁ ବି ସିଧାସଳଖ ବାଟ ଫିଟିଛି । ଦି'ଗାଁ ମୁହାଁମୁହିଁ । ଅନବରତ ଲୋକଗହଳି । ହେଲା ଏବେ ଗାଁ ସଡ଼କ । କଚା ନାଲିମାଟିର ରାସ୍ତା ଯେତେବେଳେ ବର୍ଷାଦିନେ ଟିକିଏ କଷ୍ଟ ହୁଏ । ବିଲ ଭଳି ଦିଶେ । ସତର୍କ ହେଇ ଚାଲିଲେ, ସେଭଳି କିଛି ଅସୁବିଧା ବି ହେବନି । ଏଯାଏ ତ ସେମିତି ଚଳିଆସିଛି । ଯିବା ଆସିବା ଲାଗି ରହିଛି । ତୋର ବି କିଛି ଅସୁବିଧା ହେବନି ମ... ।

କେଶବା କିଛି ବୁଝିପାରୁ ନଥିଲା, କୋଉ କଥା କହୁଛନ୍ତି ମା' ସା'ନ୍ତାଣୀ ଯେ... । ମୋ ସୁବିଧା ଅସୁବିଧା... ହେବ ବା କାହିଁକି ? ସେ ତ ଅକ୍ଷମ, କୁଆଡ଼େ ଯା'ଆସ କରୁଛି କି ! କିଛି ବୁଝିନପାରି ବୋକାଙ୍କ ଭଳି ଚାହିଁଲା ।

ସା'ନ୍ତାଣୀ ଟିକିଏ ହସି ଦେଇ ଭଜନମାଳାକୁ ଦି'ଥର ମୁଣ୍ଡରେ ମାରି, ପାନ

Digitized by PPRACHIN, SOA

ବଟୁଆରୁ ଖିଲେ ପାନ ନେଇ କଲରେ ଜାକୁଜାକୁ କହିଲେ, ତୋରି କଥା କହୁଥିଲି, ତୁ ଯଦି ଆମ ଗାଁ ସଡ଼କ ମୁଣ୍ଡରେ ଚା'ଦୋକାନଟିଏ ଦିଅନ୍ତୁ, ବୋଧେ ବେଶି କିଛି ଅସୁବିଧା ହୁଅନ୍ତାନି । ହେମ ତ ଅଛି ନା, ସାହାଯ୍ୟ କରିବାକୁ । ସକାଳୁ ସଅଳ ଟିକିଏ ଯାଇ ଚୁଲିପାଣି ଇତ୍ୟାଦିର ବ୍ୟବସ୍ଥା କରିଦେଇ ଆସନ୍ତା । ବାକି ସବୁ ତୁ ନିଜେ ହିଁ ତୁଲେଇ ନେଇପାରିବୁ । ପାରିବୁ ନି ? ପାରିବୁ ତୁ ।

କେଶବା ଆଖିରେ ବିସ୍ମୟର ଚିହ୍ନ । ମା' କ'ଣ ଏକାବେଳକେ ଯୋଜନାକୁ କଥାରେ କଥାରେ କାର୍ଯ୍ୟକାରୀ ବି କରିଦେଲେଣି ।

ଲୋକେ ତ ଏବେ ଚା' ଖାଇବାକୁ ପାଗଳ । ଭଲ ଚାଲିବ ଚା'ଦୋକାନ । ପ୍ରଥମେ ପ୍ରଥମେ ତ ଅଭ୍ୟାସରେ ପଡ଼ିବାକୁ ଯାହା ଟିକିଏ କଷ୍ଟ ହେବ । ହେଲେ ସାହସ ବାନ୍ଧିବା କଥା ନା କ'ଣ, କହୁଛୁ । ତୋତେ ବି ଫୁର୍ତ୍ତି ଲାଗିବ । ହାତକୁ ଆସିବ ଦି'ପଇସା । ଦମ୍ଭ ଆସିବ ତୋ' ମନରେ । ପଛକୁ ଠାକୁରେ ଚାହିଁଲେ ଅଧିକା ବଢ଼ୋତିରି ହେବ । ସେଇ ପାଖାପାଖି ବି ସେଭଳି କିଛି ଦୋକାନ ନାହିଁ । ତୋ' ମନ କ'ଣ ଡାକୁଛି କହ ?

ମା' ସା'ନ୍ତାଣୀଙ୍କ କଥା ମନକୁ ପାଇଥିଲା, ସାତସିଂହର ବଳ ଆଣିଦେଇଥିଲା ତା ମନରେ । ମା'ଙ୍କର ପଦୁଟିଏ କଥା 'ତୁ ପାରିବୁ'ରେ ଆଖି ପିଛୁଳାକେ ମା' ଖଞ୍ଜପଣଟା କୁଆଡ଼େ ଉଭେଇଗଲା ସତେକି । ହେମ ଦମ୍ଭ ଦେଲା ତା'ଆଡ଼ୁ... ମୁଁ ଅଛି ପରା, ଅଧେ କାମ ସମ୍ଭାଳି ନେବାକୁ... ।'

ହେଲେ ପର ମୁହୂର୍ତ୍ତରେ ମନ ଭିତରକୁ କିଏ ଯେମିତି ଅଙ୍କୁଶ ଗେଞ୍ଜିଲା । କେବଳ ସ୍ୱପ୍ନ ଦେଖିଲେ ତ ହେବନି । ତା'ସାଙ୍ଗକୁ କେତେ କଥା ଅଛି । ମୂଳ କଥା ହେଲା ପୁଞ୍ଜି । ପାହୁଲାଟିଏ ନାହିଁ ହାତରେ ଦୋକାନଟିକୁ ଠିଆ କରିବା ପାଇଁ । କିମିତି କ'ଣ ହେବ ! ସେଇ ଚିନ୍ତାରେ ଦି' ପ୍ରାଣୀଙ୍କର ରାତିରେ ନିଦ ହେଲାନି ।

ମନ ଜାଣି ସା'ନ୍ତାଣୀ କହିଲେ, ପୁଣି ଚିନ୍ତା କାହିଁକି ? କ'ଣ ଠିକ୍ କଲୁ ? କ'ଣ ଆଉ ଠିକ୍ କରିବି ସା'ନ୍ତାଣୀ । ଭାବିଲେ ତ ସବୁ ହେଇଯିବନି...

ଟଙ୍କା ପଇସା କଥା ଭାବୁଛୁ କି ?

କେଶବା ଓ ହେମ କିଛି ନ କହି ମୁଣ୍ଡ ନୁଆଁଇ ଠିଆ ହେଲେ ।

ସା'ନ୍ତାଣୀ କହିଲେ, ତୁ ଚିନ୍ତା କରନା ଟୁଅ ମୁଁ ସେ କଥା ବୁଝିବି । ରାଧାରମଣଙ୍କ କୃପାରୁ ଦି'ହାତ ପାଟିକୁ ଯାଉଛି ଯେତେବେଳେ, ସେଥିରୁ ମୁଠାଏ ତୋତେ ଦେଇ ପାରିବିନି । ତୁ କେବଳ ସାହସ ବାନ୍ଧେ- 'ମୁଁ ପାରିବି' । ମୁଁ ଜାଣିଛି, ତୋ' ଭିତରେ ଯୋଉ ମଣିଷଟା ଅଛି, ସେ କେବେ ବି ପର ଦୟା ଉପରେ ବଞ୍ଚି ପାରିବନି । ସେଇଥିପାଇଁ

Digitized by PPRACHIN, SOA

ତ କହୁଛି ତୋତେ । ତୁ ସିନା ନିଜକୁ ଖଞ୍ଜା ଭାବୁଛୁ, ହେଲେ ତୋ' ଭିତରର ସେଇ ମଣିଷଟା ଭାରି ପାରିଲାର, ମୁଁ ତାକୁ ଚିହ୍ନିଛି ।

ଭଜନମାଳାକୁ ମୁଣ୍ଡରେ ଲଗେଇ ଅଣ୍ଟିରୁ ବଟୁଆ କାଢ଼ିଲେ । ସେଥିରୁ ପାଞ୍ଚଶ ଟଙ୍କିଆ ନୋଟ୍‌ଟିଏ କାଢ଼ି କେଶବା ହାତକୁ ବଢ଼େଇ ଦେଇ କହିଲେ, ନେ' ଏଇ ଟଙ୍କାରେ କାମ ଆରମ୍ଭ କର ଆଗେ । ହଳିଆ ଦି'ଜଣଙ୍କୁ ଡାକି ଦାୟିତ୍ୱ ଦେଇ କହିଲେ, "ଗାଁ ମୁଣ୍ଡରେ ବ୍ୟବହାରରେ ଲାଗୁ ନ ଥିବା ଜାଗା ଟିକକରେ ମାଟି ଚାଳର କୁଡ଼ିଆ ଖଣ୍ଡେ କାଢ଼ି ସଜାଡ଼ି ଦିଅ ପ୍ରଥମେ । ତା' ପରକଥା ମୁଁ ବୁଝିବି । ଅସମର୍ଥଟା ମନ କରିଛି ଯେତେବେଳେ ତାକୁ ସାହାଯ୍ୟ କର ।"

କେଶବା ସବୁ କଥା ଦେଖୁଥିଲା ଓ ଶୁଣୁଥିଲା । ଏତେ ଗୁଡ଼ାଏ ଟଙ୍କା ସେ କ'ଣ ଶୁଝିପାରିବ ! କୁହୁକୁହୁ ହେଲା । ସା'ନ୍ତାଣୀ ତା ମନ ଜାଣି କହିଲେ, "ତୁ ବ୍ୟସ୍ତ ହଅନା । କାମ ଆରମ୍ଭ କର । ନିଜ ଉପରେ ବିଶ୍ୱାସ ରଖ । ସବୁ ଠିକ୍ ହୋଇଯିବ ସମୟ ଆସିଲେ । ଧୈର୍ଯ୍ୟ ଧର ।' ପୁଣି କ'ଣ ଭାବି କହିଲେ, ନିଜ ରୋଜଗାରର ଅଲଗା ଗୋଟାଏ ମର୍ଯ୍ୟାଦା ଅଛିରେ କେଶବା ।

ମା' ସା'ନ୍ତାଣୀଙ୍କ କଥାରେ ସତେକି ଯାଦୁ ଥିଲା । ସ୍ୱପ୍ନ ଝାଡ଼ିଝୁଡ଼ି ହୋଇ ଠିଆ ହେଲା । ସ୍ୱାମୀ-ସ୍ତ୍ରୀ ଦୁହେଁ ପରସ୍ପରକୁ ଚାହିଁ, ଦୀର୍ଘଶ୍ୱାସ ନେଲେ ।

ଦି'ଜଣ ମୂଲିଆ, ଦିନ ଚାରିଟାରେ ଝାଟିମାଟିର ଚାଳିଆ ଖଣ୍ଡେ ଠିଆ କରିଦେଇଥିଲେ । ଗାଁ'ମୁଣ୍ଡ ରାସ୍ତାର ଗୋଟାଏ କୋଣକୁ କୋଉ କାଳର ମଳା ଆମ୍ବଗଛଟିଏ ଠିଆହୋଇଥିଲା । ତାରି ପିଠିକୁ ଆଉଜିଲା ଭଳି ଚାଳିଆ ଖଣ୍ଡିକ ଠିଆହୋଇ ନିଜ ପରିଚୟ ଗଢ଼ିଲା ।

ହେମଲତା ଚାରି ଛ'ଦିନ ଲାଗି ତାକୁ ଲିପାପୋଛା କରି ବ୍ୟବହାର ଉପଯୋଗୀ କରିଦେଲା ଅଣ୍ଟିଏ ଉଚ୍ଚରେ ଚୂଲି, କେଶବାକୁ ସୁବିଧା ହେଲା ଭଳି । କିରୋସିନୀ ଯୋଗାଡ଼ କରିବା ସମ୍ଭବ ନୁହେଁ ବୋଲି, କୋଇଲା ଅଙ୍ଗାରର ଚୂଲି ହିଁ କରିଥିଲା ହେମ । କୋଉ କାଳର ହେବ କେଜାଣି, କାଠଘର ଭିତରୁ ବାହାର କରି ମା'ସାନ୍ତାଣୀ ବେଞ୍ଚ ଖଣ୍ଡିଏ ଦେଲେ । ଚାରିପାଞ୍ଚଜଣ ବସିଲା ଭଳି । ସଜାଡ଼ି ଦେଇ କହିଲେ, ତୋ'କାମରେ ଲାଗିବରେ କେଶବା, ତୋ' ବୁଢ଼ା ସା'ନ୍ତଙ୍କ କଚେରିରେ ପଡ଼ିଥିଲା ଅଗାଡ଼ି ହୋଇ ନେଇ ଯା' । ଦୋକାନ ସରଞ୍ଜାମ କହିଲେ ଚା' କେଟ୍‌ଲି ସାଙ୍ଗକୁ ସିଲଭର ଥାଳିଆ ଦି'ଟା, ପାଣିମାଠିଆ, ଛ'ଆଠଟା କାଚ ଗିଲାସ, ଚାରିଟା ଚାମୁଚ । ପ୍ଲାଷ୍ଟିକ ବାଲ୍‌ଟି ସହିତ ଝାଡୁଟିଏ । ବାସ୍ ଏତିକିରେ ଆରମ୍ଭ ହେବ ଦୋକାନ । ଦୋକାନ ସମ୍ପତ୍ତି କହିଲେ ବି ଏତିକି । ଟିକିଏ ଦୂରରେ ନଳକୂଅଟିଏ ଅଛି, କାମ ଚଳିଯିବ ।

Digitized by PPRACHIN, SOA

ଦୋକାନକୁ ଚାହିଁ ତୃପ୍ତିର ନିଃଶ୍ୱାସ ନେଲା ହେମଲତା । କେଶବା ସ୍ୱପ୍ନ ଦେଖିବାକୁ ଆରମ୍ଭ କଲା । ତା'ର ସ୍ୱପ୍ନ ଭିତରେ ଥିଲା ଲକ୍ଷ୍ମୀ ଆଉ ଲକ୍ଷ୍ମୀର ଭବିଷ୍ୟତ ମାତ୍ର । ଆଉ ଯୋଉଦିନ ଦୋକାନର ଶୁଭାରମ୍ଭ ହେଲା, ମା'ସାନ୍ତାଣୀ ତାକୁ ଜଗନ୍ନାଥଙ୍କ ଫଟୋଟିଏ ବଢ଼େଇଦେଇ କହିଥିଲେ ଟାଙ୍ଗିଦେବୁ ତୋ' ଦୋକାନ କାନ୍ଥରେ । ହେମଲତା ବି ତାକୁ ଆଣି ଟାଙ୍ଗି ଦେଇଥିଲା ସେ ଝାଟିମାଟିର କାନ୍ଥରେ । ଫୁଲଚନ୍ଦନ ଦେଇ ଧୂପକାଠି ଜାଳି ନଡ଼ିଆଟିଏ ଭାଙ୍ଗି ଦେଇ ଗୁହାରି କରିଥିଲା ଠାକୁରେ, ତମେ ତ ସଂସାରକୁ ପାଳୁଛ, ସଭିଙ୍କୁ ଦେଖୁଛ ପତା ନ ପକେଇ, ଆମେ ନିଆଶ୍ରୀ ମଣିଷ; ତମଛଡ଼ା କେହି ନାହିଁ ଆମର । ତମେ ଦେଖ, ଅନ୍ନ ବସ୍ତ୍ରର ଅଭାବ ନ ରହୁ । ବଞ୍ଚେଇ ରଖ ମୋ ଦଦରା ସଂସାରକୁ ଝଡ଼ବତାସର ଦାଉରୁ । ମା' ସା'ନ୍ତାଣୀଙ୍କ ବଡ଼ ମନ ଆଉରି ବଡ଼ ହେଉ । ତାଙ୍କ କୁଟୁମ୍ବର ମଙ୍ଗଳ କର । ଆଉ ଅଧିକା କ'ଣ ଚାହିଁବି ଠାକୁରେ ।

କେଶବା ବି ସେଇୟା ଚାହିଁଥିଲା ।

ପହିଲୁ ପହିଲୁ ଦୋକାନ ଭଲ ଚାଲିଲା । ଏ ଗାଁ ସେ'ଗାଁର ଲୋକ ଧୀରେ ଧୀରେ ଆସି ଜମିଲେ । ଚାରି ମଣିଷଙ୍କ ସହିତ ଚାରିକଥା ହେଲେ । ବସ୍ ଗୋଟେ ଅଧେ ବି କଡ଼େଇ ହୋଇ ଠିଆ ହେଲେ ଚା' କପେ ଖାଇ ଲୋକ ଉଠେଇ ନେବାକୁ । ସବୁ ସହଜ ହେଇଗଲା ଅଭ୍ୟାସରେ ପଡ଼ି । ହେମ ପାହାନ୍ତା ପହରୁ ଆସି ଚୁଲିରେ ନିଆଁ ଧରେଇ ଚା' କେଟଲି ବସେଇ ଦେଇଯାଏ । ବାଲଟିଏ ପାଣି ଥୋଇ ଦେଲେ କେଶବା ବ୍ୟବହାର କରେ । ଧୀରେ ଧୀରେ ଲୋକ ଗଡ଼ନ୍ତି, ଗପ ଜମେ । ଦିନେ ସାମ୍ନା ଶାଳିଗାଁର ଶିବ ପଲେଇ କହିଲା, "ଆରେ କେଶବା'ଇ ଖାଲି ତୁଚ୍ଛା ଚା' ଖାଇବାକୁ ଭଲ ଲାଗୁନିମ, ବିସ୍କୁଟ କି ମୁଢ଼ି ଗଣ୍ଡେ ରଖୁନୁ ।" ତାରି କଥାରେ ଖାସେ ଦିଟା ଡବାରେ ମୁଢ଼ି ବିସ୍କୁଟ ଆଣି ରଖିଥିଲା । କେତେ ଆଉ ସମ୍ବଳ ଯେ । ତେବେ ଆଖି ଦୁରୁଶିଆ କିଛି ନ ଥିଲା ।

ତେବେ ସଂସାରର କଥା, ମଣିଷର ସ୍ୱଭାବ, ହେଉ ପଛେ ଶହେରେ ଜଣେ । ଅସହଣି, ଈର୍ଷାଳୁ ମଣିଷ, ଅନ୍ୟର ଦୁଃଖରେ, ଅସୁବିଧାରେ ଆହା, ଉହୁ, ଚୁଚୁ କରିବା ଲୋକର ଅଭାବ ନ ଥାଏ କେବେ । ଏଇଟା ସହଜ ମଧ୍ୟ । ତୁଣ୍ଡ ସହାନୁଭୂତି । ଉପର ଠାଉରିଆ । ଅନ୍ୟର ଖୁସିରେ ଖୁସି ହେବା ଏତେ ସହଜ ନୁହେଁ । ଖୁବ୍ କ୍ୱଚିତ୍ ଥା'ନ୍ତି । ତପସ୍ୟା ଥିଲେ ଏଭଳି ଈଶ୍ୱର ସମାନ ମଣିଷର ସାକ୍ଷାତ୍ ମିଳେ । କୃପା ମିଳେ ଜୀବନରେ । ଆଉ ଥୋକେ ଅଛନ୍ତି, ସେମାନେ ନିଜ ସୁଖସୁବିଧା କଥା ଚିନ୍ତା କରନ୍ତୁ କି ନ କରନ୍ତୁ କିଛି ଯାଏ ଆସେନା, କିନ୍ତୁ ଆଉ ଜଣେ ସୁଖରେ ରହୁ, ତା'ର କିଛି ସୁବିଧା ହେଇଯାଉ ସେକଥା ସେମାନେ କେବେ ଚାହାନ୍ତି ନାହିଁ । ବାଟରେ କଣ୍ଟା ପକେଇବା ତାଙ୍କର ଅଭ୍ୟାସ । ଏଥିରେ ସେମାନଙ୍କର ଆନନ୍ଦ ।

Digitized by PPRACHIN, SOA

ତଥାପି ମଣିଷ ବଞ୍ଚେ । ଏଇ ଭଲ, ମନ୍ଦ, ଦୁଷ୍ଟ, ଖଳ ସ୍ୱଭାବର ମଣିଷମାନଙ୍କ ଭିତରେ । ପାଦ କଣ୍ଟ କଣ୍ଟି, ସେମାନଙ୍କ ଦୃଷ୍ଟି ଆଢୁଆଳରେ, କୃପାଭିକ୍ଷା କଲା ଭଳି କାକୁସ୍ଥ ହୋଇ । କେଶବା ତ ବଞ୍ଚିତ ମଣିଷ ।

ଗାଁର ଅନାଦି ଓଝା, ହରିଆ ପଟ, ଭୁବୁନି ସାହାଣୀ ଏଇ ଧରଣର ମଣିଷମାନଙ୍କ ଭିତରୁ ଜଣେ ଜଣେ । ଭୁବୁନି ସାହାଣୀଙ୍କର ତ ଆଖି ଖୋଷି ହୋଇଯାଉଥିଲା, କେଶବାର ଦୋକାନକୁ ଦେଖି । କେଡ଼େ ବଢ଼ିଆ ଜାଗାରେ ଦୋକାନ ଦେଇଛି, ବେଶ୍ ରୋଜଗାର ହେଉଥିବ । ସମସ୍ତେ ତାଙ୍କର ମାମଲତପଣକୁ ତାରିଫ କରନ୍ତି । ଅଥଚ ତାଙ୍କ ଭଳି ମୁଣ୍ଡକୁ ବି ଏ ବୁଦ୍ଧି ଜୁଟି ନ ଥିଲା କେବେ । ବେରୋଜଗାରିଆ ପୁଅଟା ଅନ୍ନଧ୍ୱଂସ କରି ଘରେ ବଇଛି । ତାସଖେଳ ଆଉ ବିଡ଼ିଫୁଙ୍କାରେ ସମୟ କଟୁଛି ନା, ସେ ତ ପାରିଥାନ୍ତେ, ଦୋକାନଟିଏ ଦେଇ ବସେଇ ଦେଇଥାନ୍ତେ ପୁଅକୁ । ଅଥଚ ତିଆଡ଼ି ବୁଢ଼ୀଙ୍କ ମୁଣ୍ଡକୁ ବୁଦ୍ଧି ଆସିଲା । କୋଉଠୁ ଆଶ୍ରିତ ସର୍ବହରାଟିକୁ ଆଣି ଏକାବେଳକେ ଥାଇତି ଦେଲେ ଜାଣ । ଗାଁ ଲୋକଙ୍କୁ ଥରେ ପଚାରିଥାନ୍ତେ । ତମ ସୁଖ ଦୁଃଖରେ ତ ଗାଁ ଲୋକେ ସଦାସର୍ବଦା ଅଛନ୍ତି । ନା, କ'ଣ କହୁଛ ମଉସା, ମୁଁ କ'ଣ ଭୁଲ କହୁଛି ?

କହିଲେ ସାହାଣୀଏ । କୋଉ ଭଲକଥାଟେ କରି ପକେଇଲ । ଉତ୍ତରରେ ହରିଆ ପଟ କହିଲେ, ବେସ୍ତ କାହିଁଖି ହେଉଛ ହେ, ଦେଖିବାନି କୋଉ ପାଣି କୁଆଡ଼କୁ ଯାଉଛି । ବରଷ ପୂରିଗଲା ବୋଲି କ'ଣ ମୁଣ୍ଡି ମାରିଦେଲା କି ? ଦଇବ ସହିଲେ ହେଲା- ତମେ ଦେଖ, ଥୟ ଧର ।"

କେହି ନ ଥିଲା ବେଳେ ନିଜ ନିଜ ଭିତରେ କୁହାକୁହି ହୁଅନ୍ତି । କେଶବା ଦୋକାନରେ କିନ୍ତୁ ଚା' ଖାଉ ଖାଉ କେଶବାକୁ ପ୍ରଶଂସାରେ ପୋତି ପକାନ୍ତି । ବିଚରା, ସରଳ ଅମାୟିକ କେଶବାର ଭାବପୁର ମଣିଷଙ୍କ ପାଇଁ ଅମାପ ଶ୍ରଦ୍ଧା ଆଉ ଭକ୍ତି । ଏଇ ଗାଁ ତାକୁ ଅନ୍ନବସ୍ତ୍ର ଦେଇ ବଞ୍ଚେଇଛି । ଯୋଉଠି ମା' ଠାକୁରାଣୀଙ୍କ ଭଳି ମଣିଷ ଅଛନ୍ତି । ସେଇ ଗାଁର ମଣିଷମାନଙ୍କୁ ସେ ଅନ୍ୟଥା ଭାବିପାରେନା । ତା' ସାମର୍ଥ୍ୟମତେ ସାହାଯ୍ୟର ହାତ ବଢ଼ାଏ କେଶବା । ଭାବେ ଗାଁର ମଙ୍ଗଳ ହେଉ । ସେମାନେ ଭଲରେ ଥିଲେ ତ ସେ ଭଲରେ ରହିବ । ରାଧାରମଣଙ୍କ କୃପା ବରଷୁଥାଉ ।

ହେଲେ କାହିଁ ? ? ଠାକୁରେ ଆଉ କ'ଣ ଚାହିଁଲେ ତାକୁ । ସେ ତ କିଛି ଅଧିକା ସୁଖ ସଂପଦ ମାଗିନଥିଲା । ନିଃଶ୍ୱାସେ ନେଇ ବଞ୍ଚିରହିବା ପାଇଁ ତୋକେ ତୋରାଣି, ମୁଠେ ଭାତ । ଲଜ୍ଜା ଢାଙ୍କିବାକୁ ଲୁଗା ଚାଖଣ୍ଡେ । ସେତକ ବି ସମ୍ଭବ ହେଲାନି, ଭାଗ୍ୟରେ ନାହିଁ ବୋଲି । ଏଯାଏ ତ ଭଲରେ ଚାଲି ଆସିଥିଲା । ଆଶା ଅଙ୍କୁର ଦେଇଥିଲା । ସ୍ୱପ୍ନ ଦାନା ବାନ୍ଧି ଆସୁଥିଲା, ରାତି ନ ପାହୁଣୁ ଏଇ ଅଜଣା ବିପର୍ଯ୍ୟୟର

Digitized by PPRACHIN, SOA

ଝଡ଼ ତା'ର ସବୁ ଆଶା ଭରସାକୁ ଧୂଳିରେ ମିଶେଇ ଦେଲା ! ଯାକୁ ସମ୍ଭାଳିବାକୁ ତା' ଅଣ୍ଟାରେ କ'ଣ ଦମ୍ଭ ଅଛି ? ହେ ଠାକୁରେ ! ଏ କ'ଣ କଲ !

ଭାବୁ ଭାବୁ କେତେବେଳେ ଯେ ସେ ପହଞ୍ଚି ଯାଇଥିଲା ତା' ଦୋକାନ ପାଖରେ ହୋସ୍ ନ ଥିଲା । ଦୋକାନକୁ ଚାହୁଁ ଚାହୁଁ ସେ ପଥର ପାଲଟିଗଲା । ସେଠି କିଛି ନ ଥିଲା । ଗଦାଏ ଝାଟିମାଟି ଆଉ ଚାଳଛପର ବ୍ୟତୀତ । ଥୁଣ୍ଟା ଆମ୍ବଗଛଟା କେବଳ ଠିଆ ହୋଇଥିଲା ମୂକସାକ୍ଷୀ ହେଇ । ଆଖିରୁ ଗରମ ଲାଭା ସତେ ଯେମିତି ଝରି ଆସିଲା ଲୁହ ହେଇ ।

ଲୋକ ହାଉଯାଉ, ଗହଳି ପାଟିତୁଣ୍ଡ ଭିତରେ ବସ୍ ଓ ଟ୍ରକ୍ ଯୋଡ଼ିକ ଠିଆ ହୋଇଥିଲେ ସାମ୍ନାସାମ୍ନି ହୋଇ ରାସ୍ତା ଉପରେ ଯମରାଜ ଭଳି । ସୁଦ୍ଧଳର ରକ୍ତାକ୍ତ ନିଷ୍ପ୍ରାଣ ଶରୀର ପାଖରେ ନିଜେ ସୁବଳ ଓ ସୁବଳର ସ୍ତ୍ରୀ ମୁଣ୍ଡପିଟି କାନ୍ଦୁଥିଲେ । ଆଉ ଥୋକେ ଗାଁ ଲୋକ ଠିଆ ହୋଇଥିଲେ ତାଙ୍କ ପାଖରେ । କେଶବାର ବାପ ହୃଦୟଟା ହଠାତ୍ ଫାଟିଫୁଟି ଖଣ୍ଡବିଖଣ୍ଡ ହେଇ ସତେକି ଅଜାଡ଼ି ହେଇପଡ଼ିଲା । ସୁଦ୍ଧଳ ପାଇଁ ସମବେଦନାରେ ତା'ଅନ୍ତର ହାଉହାଉ ହେଇ କାନ୍ଦି ଉଠିଲା, ଆହା ! କେଡ଼େ ଘଟଣାଟିଏ ନ ଘଟିଲା । ଭେଣ୍ଡାପୁଅ ସୁଦ୍ଧଳ ଆଗରେ ତା' ଦୋକାନଟା କିବା ଛାର । ଠାକୁରେ ବଡ଼ ନିର୍ଦ୍ଦୟ ସତରେ ।

ଆଶାବାଡ଼ିକୁ ଶୁଆଇ ଦେଇ ଲଥ୍କରି ବସିପଡ଼ିଲା ସେ ଭୂଇଁ ଉପରେ । କପାଳରେ ହାତ ଦେଇ ନିର୍ବାକ୍ ନିଶ୍ଚଳ ହୋଇ ଚାହିଁ ରହିଲା ଆଖି ଆଗରେ ସଂଘଟିତ ହୋଇସାରିଥିବା ବିପର୍ଯ୍ୟୟର ହାଟକୁ । ସାହସ ପାଉ ନ ଥିଲା, ସେମାନଙ୍କ ପାଖକୁ ଯାଇ ସମବେଦନା ଜଣେଇବାକୁ । କାରଣ ସେ ତ ଛାର ମଣିଷଟାଏ ନା । ସେମାନଙ୍କ ସରିସମାନ ନୁହେଁ ଯେ, ତାଙ୍କ ଆଖିଲୁହ ପୋଛିଦେବାର ଅଧିକାରକୁ ସାବ୍ୟସ୍ତ କରିବ । ନା, ସେ କରିବନି । କେଶବା, ଠାକୁରଙ୍କ ଉଦ୍ଦେଶ୍ୟରେ ହାତ ଯୋଡ଼ିଲା, ତମେ ହିଁ ତାଙ୍କୁ ବୁଝାଅ, ଲୁହ ଦେଇଛ ତମେ, ତମେ ହିଁ ପୋଛି ଦିଅ ଠାକୁରେ । ଆଖି ବୁଜିଲା କେଶବା ।

ହଠାତ୍ କାହାର ଗୋଟାଏ ନଜର ପଡ଼ିଗଲା କେଶବା ଉପରେ- 'ହେଇରେ...ଏଇଠି କେଶବା... ।' ସମସ୍ତଙ୍କ ଦୃଷ୍ଟି ଏକା ସଙ୍ଗେ ତାକୁ ଅନୁସରଣ କଲା । ସମସ୍ତଙ୍କ ଆଖି, ନାକ, ମୁହଁରେ ଅଗ୍ନିର ସ୍ଫୁଲିଙ୍ଗ, କ୍ରୋଧ ଉତୁରି ଆସୁଥିଲା । ପରିସ୍ଥିତି ସହଜ ନୁହେଁ । କେଶବା ଅନୁମାନ କରିପାରିଲା ସେଇ ଭୟଙ୍କରତାକୁ । ତା' ଭିତରର ଆର୍ତ୍ତ ମଣିଷଟା କ୍ରୁଧିତ ଜନତା ପାଖରୁ କରୁଣା ଭିକ୍ଷା କରିବାକୁ ଚାହିଁଲେ ମଧ୍ୟ ସଳଖି ଠିଆ ହେଇପାରୁ ନ ଥିଲା । ଅନ୍ୟ ଉପାୟ ବି କିଛି ନ ଥିଲା ।

ଜନତାର ଦାନବୀୟ ରୋଷ ବର୍ଷାଭଳି ଅଜାଡ଼ି ହେଇ ପଡ଼ିଲା ତା' ଉପରେ ।

Digitized by PPRACHIN, SOA

ଆଖିର ଲୁହ ପୋଛି, ଚିହିଁକି ଆସିଲା ସୁବଳ ତା'ଉପରକୁ । ତାରି ଚାଳର ଖଣ୍ଡିଆ ବାଉଁଶବତାଟିଏ ଧରି ରାଗ ତମତମରେ କହିଲା, 'ଶେଷ କରିଦେବି ଆଜି ତୋତେ ।' ତୋରି ଯୋଗୁଁ ମୋ ରଜାଭଳି ପୁଅର ପ୍ରାଣ ଗଲା ସିନା... ତୁ ବଞ୍ଚି କ୍ଷୀର ଭାତ ଖାଇବୁ ଭାବିଛୁ...ପକେଇଲା ପାହାର ପରେ ପାହାର... ମିଶିଗଲେ ଆଉ ଥୋଡ଼ାଏ ମଣିଷ । ମାଡ଼ରେ ପୋତି ପକେଇଲେ କେଶବାକୁ ।

ଆଉ କିଛି ଭଦ୍ରଲୋକ ଧାଇଁ ଆସିଲେ ଘଟଣାସ୍ଥଳକୁ । "ଆରେ ମରିଯିବ ଲୋକଟା ଯେ, ଆଇନକୁ କାହିଁକି ହାତମୁଠାକୁ ନେଉଛ ! ଦୁର୍ଘଟଣା ତ ସବୁବେଳେ ଦୁର୍ଘଟଣା, ଏଇ ଯୋଉ ଦୁର୍ଘଟଣା ଘଟିଗଲା ତା ପାଇଁ କିଏ କାହିଁକି ଦାୟୀ ହେବ ? କିଏ କ'ଣ ଜାଣିଶୁଣି ଘଟାଏ କି ଆକ୍ସିଡ଼େଣ୍ଟ୍ ବରଂ ଆମ ଅସତର୍କତାକୁ ଦାୟୀ କରିବା । ଶାନ୍ତ ହେଇ ନିଜକୁ ଥରେ ପ୍ରଶ୍ନ କଲେ । ସତରେ କ'ଣ ଦୋକାନଟା ଦୋଷୀ ? ଦୋକାନର ମାଲିକ ଯେତେବେଳେ ସ୍ୱଦେହରେ ଉପସ୍ଥିତ ନ ଥିଲା, ସେ କେମିତି ଅପରାଧୀ ହେବ ? ତା'ଛଡ଼ା ଏଇ ଲୋକଟାକୁ ମାରିଦେଲେ, ମରିଯାଇଥିବା ମଣିଷଟା କ'ଣ ଫେରିଆସିବ ??"

ପୋଲିସ୍ ଗାଡ଼ି ଆସି ପହଞ୍ଚି ସାରିଥିଲା । ତଦନ୍ତ କରିବାକୁ ଆସିଥିବା ପୋଲିସ ଅଫିସର ଉତ୍ତ୍ୟକ୍ତ ଜନତାଙ୍କୁ ଘଉଡ଼େଇବାକୁ ଚେଷ୍ଟା କଲେ ଏବଂ ମୃତ ସୁଢ଼ଳକୁ ଡାକ୍ତରଖାନା ନେବାର ବ୍ୟବସ୍ଥା କଲେ । ମେଳି ଭାଙ୍ଗିଲା ଲୋକଙ୍କର । ଜଣେ ଦି'ଜଣ ପୋଲିସ ଦୁର୍ଘଟଣାଗ୍ରସ୍ତ ଗାଡ଼ିକୁ ଜଗିରହିଲେ, ଗାଁରୁ କିଛି ଜଣାଶୁଣା ଲୋକ ସୁଢଳର ପାର୍ଥିବ ଶରୀର ସହିତ ଗଲେ ପୋଷ୍ଟମର୍ଟମ ପାଇଁ ।

ଅସହାୟ କେଶବା ଏକୁଟିଆ ଯନ୍ତ୍ରଣାରେ ଛଟପଟ ହେଇ ତା' ଭଙ୍ଗା ଦୋକାନର ଧ୍ୱସ୍ତସ୍ତୂପ ପାଖରେ ପଡ଼ିରହି ନିଜ ଅପରାଧର କାରଣ ଖୋଜିଲା । କାହାର ନଜର ତା' ଆଡ଼ିକି ନ ଥିଲା, ସଂସାରଟା ହିଁ ଏମିତି । କେହି କାହାର ନୁହନ୍ତି । ସବୁ ଉପର ଠାଉରିଆ, ନିଜେ କ'ଣ କରୁଛନ୍ତି, କ'ଣ ଚାହୁଁଛନ୍ତି, ମୁହୂର୍ତ୍ତେକ ପାଇଁ ବି ଭାବନ୍ତି ନାହିଁ । ଏଇ ଯୋଉ ପ୍ରତିକ୍ରିୟାଜନିତ୍ କ୍ଷତି ଏବଂ ତଦ୍‌ଜନିତ ମାନସିକ ଯନ୍ତ୍ରଣାକୁ ନିର୍ଦ୍ଦୋଷ ମଣିଷଟି ସହିଲା । ଏଥିରେ କାହାର ବି ଲାଭ ନ ଥିଲା କିଛି, କେବଳ ଗୋଟାଏ ହିଂସ୍ରପଣ, ମଣିଷର ଅବଚେତନରେ ଲୁଚିରହିଥିବା ଆସୁରିକ ପ୍ରବୃତ୍ତି, ସୁଯୋଗ ଦେଖି ମାତିଉଠିଲା ଯାହା । କେତେଜଣ ଭୁବୁନି ସାହାଣୀ, ହରିଆପଟ, ଅନାଦି ଓଝାଙ୍କ ଅସହିଷ୍ଣୁପଣ ମନେମନେ ଆତ୍ମତୃପ୍ତି ଗୋଟେଇ ଘରକୁ ଫେରିଥିବେ ବିଜୟ ଉଲ୍ଲାସରେ. "ଦଇବ ସହିଲାନି ମଉସା ଦେଖିଲ ତ..." କହିଥିବେ ସାହାଣୀଏ ହୁଏତ । ଅପାରଗ ଅକ୍ଷମ ମଣିଷଟା କିନ୍ତୁ ଭୂଇଁ ସାଉଁଟି ପଡ଼ିଥିଲା ।

Digitized by PPRACHIN, SOA

କେଡ଼େ ବିଚିତ୍ର ଏଇ ମଣିଷ ମନ । ଜଣାଅଜଣା ସମସ୍ତେ ଘଣ୍ଟାକ ତଳେ ଏକାଠି ଏକଜୁଟ୍ ହୋଇ ତା' ଉପରେ ମରଣାନ୍ତକ ଆକ୍ରମଣ କରୁଥିଲେ । ଅଥଚ ଯନ୍ତ୍ରଣାକ୍ଳିଷ୍ଟ ମଣିଷଟାକୁ ଆହା ପଦେ କହିବାକୁ ଜଣେ ବି କେହି ନ ଥିଲା ସେଠି । କେଶବାକୁ ନିଜର ଯନ୍ତ୍ରଣା ଭିତରେ ହସିବାକୁ ମନ ହେଲା, ମଣିଷର ଏଇ ଦ୍ୱନ୍ଦ୍ୱ ମାନସିକତା ପାଇଁ ।

ହେଲା ଅବା, ଗାଁର ସେ କେହି ନୁହଁ, ପରଦେଶୀ । ଏଇ ଗାଁ ତାକୁ ଆଶ୍ରା ଦେଇଛି, ଢୋକ ଦେଇ ବଞ୍ଚେଇଛି ବୋଲି ଶକ୍ତିମତେ ସେ ସାହାଯ୍ୟ କରିଛି ସମସ୍ତଙ୍କୁ ଖୁସିରେ । କୃତଜ୍ଞତାର ବୋଝରେ ନଇଁପଡ଼ିଛି ତା ମୁଣ୍ଡ । ହେମ ମଧ ସମସ୍ତିଙ୍କ ଭଲମନ୍ଦରେ ଠିଆ ହୋଇଛି । ଏଇ ତ ହର ମଉସା, ତାଙ୍କ ଝିଅ ପୁଅାତିକୁ ଡାକି ନେଇଥିଲେ ହେମକୁ । ମା' ପିଲାଙ୍କ କଥା ବୁଝି ଏକୁଡ଼ି ସମ୍ଭାଳିବାକୁ । ପନ୍ଦରଟା ଦିନ ହେଇଥିବ, ଅଥଚ ଆଜି ସମସ୍ତଙ୍କ ସହିତ ମିଶି ହରମଉସା ଦୁଲଦାଲ କରି ଠେଙ୍ଗା ଲଦିଦେଲେ ପଶୁଙ୍କ ଭଳି । ଭାବିଲେନି ଥରେ ।

ଏଇ ମଣିଷଙ୍କ ଉପରେ ତା'ର କେତେ ବିଶ୍ୱାସ । ସେଇଥିପାଇଁ ବୋଧେ ସେ ବାରମ୍ବାର ଧୋକା ଖାଉଛି । ଧୋକା ଖାଉଛି, ସେ ଅକୃତଜ୍ଞ ହେଇପାରୁନି ବୋଲି । ମନେ ପଡ଼ିଗଲା ଛ'ସାତ ବର୍ଷ ତଳର ସେଇ ଭୟଙ୍କର ରାତିର ଘଟଣା । ସେଦିନ ବି ଏମିତି ପରାଭବକୁ ମଥାପୋତି ଗ୍ରହଣ କରିନେବା ଛଡ଼ା ତା'ପାଖରେ ଉପାୟ କିଛି ନ ଥିଲା । କାରଣ ଏଇମିତି କୃତଜ୍ଞତାର ବୋଝ ଥିଲା ସେଇ ଘରର ମଣିଷ ପାଖରେ । ଆଜି ତା'ର ପୁନରାବୃତ୍ତି ଘଟିଲା ଯାହା । ଚକିତ ହେବାର କିଛି ନ ଥିଲା ତା'ପାଇଁ । ସେ କେବଳ ଭୁଲି ଯାଇଥିଲା ସେଦିନର ଯନ୍ତ୍ରଣା, ଗୋଡ଼ ହରେଇବାର ଦୁଃଖକୁ ମା' ସା'ନ୍ତାଣୀଙ୍କ ଆଶା ଆଶ୍ୱାସନା ପାଇଁ; ହେଲେ ସେ ହତଭାଗ୍ୟ, ସୁଖ, ନିଶ୍ଚିନ୍ତପଣ ତା' କପାଳରେ ନାହିଁ । ଏବେବି ତ ଲକ୍ଷ୍ମୀର ବାଁ ଗାଲରେ ସେଇ କଳ୍ୟାଜାଇ ମନ୍ଦାକ ଆହୁରି ଗାଢ଼ ହେଇ ଝଟକୁଛି, କାହିଁ ଭାଗ୍ୟ ? ଭାଗ୍ୟର କରାମତି ଦେଖେଇବ ବୋଲି ଯିଏ ଦେଖୁଥିଲା ସେ କହୁଥିଲା, କାହିଁ ? ? ହୀନକପାଳୀଟା, ମୁଠେ ଭଲରେ ଖାଇବା ବି ତା' ଭାଗ୍ୟରେ ହୁଏତ ନାହିଁ । ସବୁ ମିଛ, ସବୁ ଭ୍ରାନ୍ତି ।

ମାଟି ଉପରୁ ମୁଣ୍ଡକୁ ଟେକିବା ପାଇଁ ପ୍ରୟାସ କରୁ କରୁ କେଶବା ନିଜକୁ ପ୍ରଶ୍ନ କଲା, ତା'ହେଲେ କ'ଣ ସତ ? କୋଉ ସତକୁ ଜାବୁଡ଼ି ଧରି ସଂସାର ଭିତରେ ସେ ଚଳିବ ? ସଂସାର ତାକୁ ଯେତେ ଅଗାଡ଼ି, ଅଦରକାରୀ ବୋଲି ଆଡ଼େଇ ଦେଲେ ବି, ସେ ତ ଛାଡ଼ି ପାରିବନି ନା ସଂସାରକୁ । ଏଇ ଦାମ୍ଭିକ ଅମଣିଷମାନଙ୍କ ଭିତରେ ହିଁ ତାକୁ ବଞ୍ଚିରହିବାକୁ ହେବ । କାରଣ ସେ ମରିପାରିବନି । ମରିପାରିବନି ହେମ ଆଉ ଲକ୍ଷ୍ମୀ ପାଇଁ ।

Digitized by PPRACHIN, SOA

କେଶବା ବେକକୁ ଉଠେଇ ପାରୁ ନ ଥିଲା ଯନ୍ତ୍ରଣାରେ । ଭାବନା ବି ପାଖ ଛାଡୁ ନ ଥିଲା । ଭାବିଲା, ମଣିଷ ବଡ଼ ଅହଙ୍କାରୀ । 'ତାର ସବୁ ଅଛି' ର ଅହଙ୍କାର । ଥିଲାପଣର ଅହଙ୍କାର । ଆଉ ଏଇ ଗର୍ବ ହିଁ ତାକୁ ପଶୁ କରି ଦେଇଛି । ଅନ୍ଧ ହେଇଯାଉଛି ସେ, ଭାବିପାରୁନି କୋଉଟା କରଣୀୟ କୋଉଟା ଅକରଣୀୟ । ଏଥିରୁ ଗୋଟିଏ ଊଣା ହେଇଯାନ୍ତା, ଟିକିଏ ଖଣ୍ଡିଆ ହେଇଯାନ୍ତା, ପେଟ ପାଇଁ ଅନ୍ୟ ଆଗରେ ହାତପାତିବାକୁ ପଡ଼ନ୍ତା, ତା'ହେଲେ ଠିକ୍ ହେଜିପାରନ୍ତା ସେ, କେଡ଼େ ଅସହାୟ ଏଇ ଗର୍ବ, ଦମ୍ଭ, ଅହଙ୍କାର । ଏସବୁର ମାନେ କିଛି ନାହିଁ ।

କେତେଦିନ ପାଇଁ, କାହାକୁ ନେଇ ଏ ଟାଣ କେଜାଣି । ନ ହେଲେ ସବୁ ମଣିଷ ତ ସମାନ । ସାନବଡ଼ର ପ୍ରଶ୍ନ ନାହିଁ । ସଂସାରରେ ବଞ୍ଚିବାର ଅଧିକାର ସମସ୍ତଙ୍କର ଅଛି । ବଞ୍ଚି ରହିବାର ଆବଶ୍ୟକତା ବି ସମସ୍ତଙ୍କ ପାଇଁ ସମାନ । ଏକଥା କାହିଁକି ଯେ ମଣିଷ ଭାବିପାରୁନି କେଜାଣି । ବିଶେଷକରି ଏଇ ଅହଙ୍କାରୀ ମଣିଷ ।

କେଶବା ଜଣେ ବିଚାରବନ୍ତ ମଣିଷ ଭଳି ଭାବିବାକୁ ଲାଗିଲା । ଭାବିଲା, ଯୋଉ ଠାକୁରେ ମଣିଷକୁ ସର୍ବଶକ୍ତିମାନ୍ କରି ଏଇ ସଂସାରକୁ ପଠେଇ ଧନ, ମାନ, ପ୍ରଭୁପଣ ଗୋଟି ଗୋଟି କରି ଖଞ୍ଜି ଦେଇଛନ୍ତି, ସେଇ ଚାହିଁଲେ ମୁହୂର୍ତ୍ତକରେ ସବୁ କାଢ଼ି ନେଇ ସର୍ବହରା କରି ଫୋପାଡ଼ି ଦେଇ ପାରନ୍ତି ମଧ । ଏକଥା କ'ଣ ମଣିଷ ଜାଣିନି ନା ଜାଣିପାରୁ ନ ଥିବ । ସମସ୍ତଙ୍କ ଭଳି ସେ ଏବଂ ସମସ୍ତେ ତା'ଭଳି ବୋଲି ଭାବିଲେ ଏତେ ପାତର ଅନ୍ତର ଭାବ ରହନ୍ତାନି । ଯାହା ସୁଖ ସଂପଦ ସେ ଭୋଗ କରୁଛି କି ଠୁଳ କରିଛି ସେସବୁ ଈଶ୍ୱରଙ୍କ ଦାନ ବୋଲି ଭାବିଲେ ତ 'ମୁଁ ବଡ଼' ସର୍ବେସର୍ବାର ଭାବନାଟା ରହନ୍ତାନି । ସେମାନେ ବଞ୍ଚନ୍ତୁ, ଉପର ପାହାଚରେ ଥାଇ ହେଲେ ତଳ ପାହାଚରେ ଥିବା ଲୋକେ ବି ବଞ୍ଚନ୍ତୁ- ସଂସାରରେ ତ ଶାନ୍ତି ବଜାୟ ରହନ୍ତା ଏମିତି ହେଲେ ।

ହଠାତ୍ କେଶବାକୁ ହାଲୁକା ଲାଗିଲା ଏକଥା ଭାବୁ ଭାବୁ । ମନର ଊଣାପଣ ପୋଛି ହେଇଯାଉଥିଲା ଆପଣାଛାଏଁ ସତେକି । ଗୋଟେ ଭିନ୍ନ ଅନୁଭବ, ଆଶ୍ୱସ୍ତ ଲାଗିଲା । ଯନ୍ତ୍ରଣା ଲାଘବ ହୋଇଗଲା ମଲମ ଲଗେଇଲା ଭଳି । ତା' ବିଚାରର ଆଖି ନେଇ ସେ ହୁଏତ ନିଜକୁ ସଂସାରର ସମସ୍ତଙ୍କ ଭିତରେ ନିଜକୁ ଖୋଜି ପାଉଥିଲା ।

କେଶବା ନିଜ ଦୁଃଖଯନ୍ତ୍ରଣା, ଅସହାୟତାକୁ ଲାଘବ କରିବାକୁ ଯାଇ ସିନା ନିଜ ମାପରେ ବିଚାରକୁ ସମତୁଲ କରି ସଂସାରର ଜଣେ ବୋଲି ନିଜକୁ ଭାବି ଉଶ୍ୱାସ କରିଦେଲା । ହେଲେ ଅଧା ଗୋଡ଼, ଖଞ୍ଜାପାଦ ଉପରେ ନଜର ପଡ଼ିଲା ମାତ୍ରେ ସେଇ ହାଲୁକା ପଣ ଉଭେଇଗଲା ନିମିଷକେ । ଅଣ୍ଟା ଆଉ ବେକର ଯନ୍ତ୍ରଣା, ତାକୁ ମୁହଁ ମାଡ଼ି ଚାପି ପକାଉଥିଲା ଭୂଇଁ ଉପରେ । କ୍ରମଶଃ ହତାଶ ଲାଗିଲା ତାକୁ । ଲାଗିଲା ସଂସାରର

Digitized by PPRACHIN, SOA

ଥିଲା ମଣିଷମାନେ ତାକୁ ଯିମିତି ଆଙ୍ଗୁଠି ଦେଖେଇ ପ୍ରଶ୍ନ କରୁଛନ୍ତି- "ତୋର ସାହସ ତ କିଛି କମ୍ ନୁହେଁ, ନିଜକୁ ତ ବେଶ୍ ଆମ ସହିତ ତୁଳନା କରିପକଉଛୁ । ତୋର କଣ ଅଛି ? ଅକ୍ଷମ ପଙ୍ଗୁଟାଏ । ଆମେ ଦୟା କଲେ ତୁ ବଞ୍ଚିବୁ...ଭୁଲିଯାଉଛୁ କାହିଁକି ଏକଥା ?"

ହଠାତ୍ ସାଙ୍କୁଡ଼ିଗଲା କେଶବାର ପୁରୁଷାର୍ଥ । ସତରେ ତା'ର କଣ ଅଛି ଯେ, ମାଟି ଉପରେ ସିଧା ଠିଆ ହେବାର ସାମର୍ଥ୍ୟ ଯେତେବେଳେ ନାହିଁ- ଆଉ କୋଉ ଥିଲାପଣର ଦମ୍ଭ ଦେଖେଇବ ? କିମିତି ସମାନ ହେବ ସମସ୍ତଙ୍କ ସହିତ । ବଞ୍ଚିବାର ଅଧିକାର ମାଗିବ ମୁଣ୍ଡ ଟେକି ! ଏମିତିକା ଉଭଟ ଚିନ୍ତା କିମିତି ପଶିଲା ତା' ମୁଣ୍ଡ ଭିତରେ ! ହଠାତ୍ ସଚେତନ ହେଇଗଲା ସେ । ଭାବନା ଅଟକିଗଲା ମଝି ବାଟରେ । କିଏ ଯିମିତି ତା' ହାତ ଧରି ଅଟକେଇ ଦେଲା । ତା'ହେଲେ ? କ'ଣ କରିବ, ଆତ୍ମହତ୍ୟା ! ମରିଯିବ ? ଏକଥା ଭାବିଲା ବେଳକୁ ବି ତାକୁ ଅପସନ୍ଦ ଲାଗିଲା । କାହିଁକି ମରିବ ? ଈଶ୍ୱର ଦେଇଥିବା ଜୀବନକୁ ନଷ୍ଟ କରିବାର ଅଧିକାର ବି ତ ତା'ର ନାହିଁ । ଜୀବନଦାତାଙ୍କ ପାଖରେ ସେ ଅକୃତଜ୍ଞ କାହିଁକି ହେବ । ଗୋଡ଼ ନାହିଁ ବୋଲି କ'ଣ, ସବୁ ଶେଷ ହେଇଗଲା ! ଅନେକଙ୍କର ତ ଆହୁରି ଅନେକ କିଛି ନାହିଁ । ଜୀବନ ଅଛି ତ ସବୁ ଅଛି- ହତାଶ କାହିଁକି ହେବ । ସେ ହାର ମାନିବନି । ବଞ୍ଚିବ, ଅଲବତ୍ ବଞ୍ଚିବ ।

ତା' ଭିତରଟା କିମିତି ଗୋଳମାଳିଆ ହେଇଯାଉଥିଲା, ଅଥୟ ଲାଗୁଥିଲା । ଯନ୍ତ୍ରଣା ବି କିଛି କମ୍ ନ ଥିଲା ! ନିଦରୁ ଉଠିଲା ଭଳି ସେ ହଠାତ୍ ଉଠିପଡ଼ି ଖୋଜି ହେଲା ତା' ହେମକୁ... ଲକ୍ଷ୍ମୀକୁ । ଓଃ, ଯନ୍ତ୍ରଣାରେ ଫାଟି ପଡୁଥିଲା ବେକମୁଣ୍ଡା । ଅମଣିଷ ପଶୁମାନେ ଦୟାମାୟା ନ ରଖି ମାରିପକେଇଛନ୍ତି । ସେ ଉଠିବାକୁ ଚେଷ୍ଟା କରି ଅଣ୍ଡାଳି ହେଲା, ଆଶାବାଡ଼ିଟା କୋଉଠି ବୋଲି... ସେ ବଞ୍ଚିବ... ବଞ୍ଚିବାକୁ ହେବ ତାକୁ... ଏ'ହେମ ହେମ... ଅନ୍ଧାର ଦିଶୁଥିଲା ସବୁ । ଠିଆ ହେବାକୁ ଚେଷ୍ଟାକରି ପଡ଼ି ଯାଉଯାଉ ପଛରୁ ଧାଇଁ ଆସି ଧରି ପକେଇଲା ହେମ ତାକୁ । ଏଇଠି ପରା ତମ ଆଶାବାଡ଼ି... ନିଅ ।

ଆଶାବାଡ଼ିକୁ ମୁଠେଇ ଧରି ସ୍ୱପ୍ନ ଦେଖିଲା ଭଳି କହିଲା, ତୁ ଏଠି କିମିତି ? ପାଣି ଟୋପେ ଦିଅନ୍ତୁନି...

ଉତ୍ତରରେ କେବଳ ମଳିଛା ହସଟିକେ ହସିଦେଲା ହେମ । ମୁଁ ତ ଏଇଠି ଅଛି ତମ ପାଖରେ । କ'ଣ ଏତେ ଭାବୁଥିଲ ଯେ ! ପୁଣି କେଶବା ଜ୍ଞାନଶୂନ୍ୟ ହେଇଗଲା ବୋଧେ । ଆଖିବୁଜି ଶୋଇପଡ଼ିଲା ପୁଣି । ପାଣି ଟୋପେ ଚାହୁଁଥିଲା ପିଇବା ପାଇଁ ।

Digitized by PPRACHIN, SOA

ହେମ ବ୍ୟସ୍ତ ହୋଇପଡ଼ିଲା, ଚାରିଆଡ଼େ ଚାହିଁଲା, ଭଙ୍ଗାଘର, ସବୁ ଧ୍ୱସ୍ତବିଧ୍ୱସ୍ତ । କିଛି ନାହିଁ, ସବୁ ମାଟିରେ ମିଶିଯାଇଛି । ତଥାପି ଆଶା ରଖି ଚାରିଆଡ଼େ ଅଣ୍ଡାଳି ପକେଇଲା । କାଳେ ପାଣି ଟୋପେ ଥିବ । ଗୋଟାଏ ପଟକୁ ଢଳିଲା ହୋଇ ଆଉଜି ପଡ଼ିଛି ବାଲ୍ଟିଟା । ଅଛି, ଆଞ୍ଜୁଳେ ହେବ ପାଣି । ଶୋଷ ନ ମେଣ୍ଟିଲେ ବି, ତଣ୍ଟି ଓଦା ହୋଇଯିବ, ମୁହୂର୍ତ୍ତେ ବଞ୍ଚି ହେବ ତ ସେତିକିରେ । ହେମ ଆଉ କିଛି ନ ଭାବି ବାଲ୍ଟିଟାକୁ ଘୋଷାରି ଆଣିଲା କେଶବା ପାଖକୁ, ଚଳୁଚଳୁ କରି ଦି'ତିନି ଚଳୁ ପାଣି ଟେକିଦେଲା କେଶବା ପାଟିକୁ । ତା' ପଣତଟା ଓଦା କରି ଆଣିଲା ବଳକା ଟୋପାକ ପାଣିରେ, ପୋଛି ଦେଲା ମୁହଁ । ଏଥର ଟିକିଏ ସାଷ୍ଟାମ ଲାଗିଲା ? ପଚାରିଲା ହେମ । କେଶବା ମୁଣ୍ଡ ଟୁଙ୍ଗାରିଲା । ଖୋଲିଲା ଆଖିରେ ଏପାଖ ସେପାଖ ଚାହିଁ ପଚାରିଲା ଲକ୍ଷ୍ମୀ... ? ତୁ କେତେବେଳେ ଆସିଲୁ "ଲକ୍ଷ୍ମୀ କୋଉଠି ?"

ପ୍ରକୃତରେ କେଶବାର ଘରକୁ ଫେରିବା ଡେରି ହେବାରୁ, ତା'ମନ ବୁଝିଲାନି । ଝିଅକୁ ବୁଝେଇବାଝେଇ ଘରେ ରଖି, ନିଜେ ଛକ ଉପରକୁ ଆସିଥିଲା । ଭଙ୍ଗା ଦୋକାନକୁ ଚାହିଁ ମୁହୂର୍ତ୍ତେ ଠିଆ ହୋଇପଡ଼ିଲା । ଆଗପଛ କେତେ କଥା ମନେପଡ଼ିଗଲା ମୁହୂର୍ତ୍ତକରେ । କେତେ ସ୍ୱପ୍ନ ଦେଖେଇ ନ ଥିଲା ଏଇ ଝାଟିମାଟିର ଚାଳିଆ ଖଣ୍ଡକ । ଆଗତ ଭବିଷ୍ୟତ କଥା ଭାବୁ ଭାବୁ କେତେ ବାଟ ସେ ଆଗେଇ ଯାଇ ନ ଥିଲା ନିଜ ଭିତରେ । ହେଲେ ସବୁ ସ୍ୱପ୍ନ ଭାଙ୍ଗିଗଲା । ଠାକୁରେ ହିଁ ନିର୍ଦ୍ଦୟ ପାଲଟି ଗଲେ । ଆଶା ଆଶାରେ ହିଁ ରହିଗଲା । ଦୀର୍ଘଶ୍ୱାସ ଛୁଟିଆସିଲା ପଞ୍ଜରା ଥରେଇ । ଆଖିଲୁହ ପୋଛୁ ପୋଛୁ ହଠାତ୍ କେଶବା ଭୂଇଁ ଉପରେ ମୁହଁମାଡ଼ି ପଡ଼ିଗଲା । ହେମ ଧାଇଁ ଆସି କାନ୍ଧରେ ଟେକି ଧଣି ବିକଳ ହୋଇ ପଚାରିଲା, 'କ'ଣ ହେଲା, କଥା ତ କହୁଥିଲ, ଡାକିଲ ମୋତେ ପୁଣି ପଡ଼ିଗଲ କାହିଁକି, ମୁଣ୍ଡ କ'ଣ ହେଉଛି ?? ଖରା କେତେ ହେଲାଣି, ପାଟିରେ ପାଣି ଟୋପେ ନ ଦେଇ ଆସିଛ... ମୁଁ ଜାଣେ, ଝୋଲା ମାରିଯାଉଥିବ ଦିହ । ବ୍ୟସ୍ତ ହୋଇ ହେମ ଆଶାବାଡ଼ିକୁ ବଢ଼େଇ କହିଲା, ଏଥର ଚାଲ, ଯିବା ଘରକୁ ?

ହେମକୁ ପାଖରେ ଦେଖି କେଶବାକୁ ଦମ୍ଭ ଲାଗିଲା । ତା'ର ଗଳା ଶୁଖିଯାଉଥିଲା ସତରେ । ଓଦା ପଣତରେ ମୁହଁ ପୋଛି ହୋଇ କହିଲା, "ହଉ ଚାଲେ... ।

ହେମ କେଶବାର ହାତ ଧରି ଉଠେଇଲା ଧୀରେ ଧୀରେ । ବାଡ଼ିକୁ ହାତରେ ଧରାଇ କହିଲା, ଏଥର ଆଗକୁ ପାଦ ପକାଅ । ତମେ ପାରିବ... । କଷ୍ଟ ହେବ ଟିକିଏ, ହେଲେ ତମେ ପାରିବ । କେଶବା ପଛକୁ ଚାହୁଁଥିଲା ହେମ କିନ୍ତୁ କହିଲା, ନା ଆଗକୁ ଚାହଁ ।

ବାଟସାରା କେହି କାହାକୁ କହି ନ ଥିଲେ କିଛି, ଦୀର୍ଘଶ୍ୱାସ ହିଁ ସବୁକଥା ବୁଝେଇ ଦେଉଥିଲା, ଦୁହେଁ ବୁଝିଯାଉଥିଲେ ପରସ୍ପରକୁ ।

Digitized by PPRACHIN, SOA

ଘଟଣା ସମ୍ପର୍କରେ ସା'ନ୍ତାଣୀ ମା' ସବୁ କଥା ଶୁଣିଲେ । ଗମ୍ଭୀର ହୋଇଗଲେ କିଛି ସମୟ । ଭାବୁଥିଲେ ମନେମନେ ମଣିଷ କେତେ ତଳକୁ ଖସିଗଲାଣି । କିଛି ନାହିଁ ବିବେକ ବୋଲି । ସବୁଠି ଖାଲି ସ୍ୱାର୍ଥ; ଫାଇଦା । ମଣିଷପଣିଆକୁ ପୋଡ଼ିଝାଳି ଖାଇସାରିଲେଣି । ଅନ୍ୟର ସୁଖସୁବିଧା ଦେଖିପାରନ୍ତିନି ଦି'ଆଖିରେ । ଆଶ୍ଚର୍ଯ୍ୟ । ଏଇ ଯୋଉ ଘଟଣାଟି ଘଟିଲା, ଏଥିରେ ଦୋକାନର କେତେ ସଂପୃକ୍ତି ଥିଲା ? କେବଳ ଦୋଷ ହେଲା ଦୋକାନଟି ବିଚରା କେଶବାର, ଯିଏ କି ଭାବପୁରର ବାସିନ୍ଦା ନୁହେଁ । ଗାଁଲୋକଙ୍କ ଆଖିକୁ ସହିଲାନି । ବାସ୍ । ଏଇ ମଉକା, ଦିଅ ଭାଙ୍ଗିଦିଅ । କି ଅମାନୁଷିକ, ଅବିଚାର ଏଇ ମଣିଷର ସତେ ! କେହି ଥରେ ଭାବିଲେନି, ଅକ୍ଷମ ମଣିଷଟାଏ କିମିତି ବଞ୍ଚିବ । ପରିସ୍ଥିତି ମଣିଷକୁ ଅନ୍ଧ କରିଦିଏ, ହିତାହିତ ଜ୍ଞାନ ରହେନି । ହେଲେ ଏଇ କ୍ଷେତ୍ରରେ ପରିସ୍ଥିତି ସେଭଳି ଦାୟୀ ନ ଥିଲା ମଧ୍ୟ । ମଣିଷର ସ୍ୱଭାବ, ଚରିତ୍ର, ପ୍ରକୃତି ସବୁ ବଦଳିଲାଣି । ସେ ପଶୁ ପାଲଟିଗଲାଣି । ଆହାପଣ ଆସିବ କୋଉଠୁ ? ଦୀର୍ଘଶ୍ୱାସ ଛୁଟିଆସିଲା ଛାତିତଳୁ । ଆହା ଭାବ ତାଙ୍କୁ ଛଟପଟ କରି ପକଉଥିଲା ।

ଭଜନମାଳାକୁ ହାତରେ ଧରି ଅନେକ ସମୟଯାଏ ସେ ନିରବରେ ବସି ଶୂନ୍ୟକୁ ଚାହିଁଥିଲେ କୌଣସି ପ୍ରତିକ୍ରିୟା ପ୍ରକାଶ ନ କରି । ଭାବନା ଆନ୍ଦୋଳିତ କରୁଥିଲା । ଏଇତ, ତାଙ୍କ ଆଖିଦେଖା କଥା । ନିଜେ ତିଆଡ଼ିସାନ୍ତେ ଥିଲାବେଳେ, ଏଇ ଆଖପାଖ ଇଲାକାର ମଣିଷ କ'ଣ, କାଉ କୋଇଲି ବି ସାହସ କରୁନଥିଲେ ହୁଁ ଚୁଁ କରିବା ପାଇଁ । ଏଭଳି ମାଡ଼ପିଟ ହୃଦୟଥରା ଘଟଣା ତ ଦୂରର କଥା । କେଇଟା ବର୍ଷ ବା ହେଉଛି ତିଆଡ଼ିଏ ପରଲୋକକୁ ଯାଇଛନ୍ତି । ଏଇ କେଇଟା ବର୍ଷରେ ସମୟର ଚେହେରା ଏତେ ବଦଳିଗଲା, ସେ କଳ୍ପନା କରିପାରୁ ନ ଥିଲେ ।

ସମସ୍ତେ ଜାଣନ୍ତି ତାଙ୍କରି ପ୍ରୋତ୍ସାହନରେ କେଶବା ଦୋକାନ ଦେବାକୁ ସାହସ କରିଥିଲା, ଅଥଚ ଆଜି... କେଶବା ତ ମାଡ଼ ଖାଇଲାନି, ମାଡ଼ଟା ତାଙ୍କରି ଉପରେ ପଡ଼ିଲା ପରୋକ୍ଷରେ । ଆଗକୁ ଆହୁରି କ'ଣ କେତେ ଦେଖିବାକୁ ଅଛି କେଜାଣି । ହେ ରାଧାରମଣ, ତମେ ହିଁ ଭରସା । ତମେ ହିଁ ସଦ୍‌ବୁଦ୍ଧି ଦିଅ ଏଇ ଅମଣିଷମାନଙ୍କୁ । ହାତ ଯୋଡ଼ିଲେ ମା' ସା'ନ୍ତାଣୀ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ।

କେତେ କଷ୍ଟରେ କେଶବାଟା ବଞ୍ଚିବାକୁ ପ୍ରୟାସ କରୁଥିଲା । ତାକୁ ସାହସ ଦେବା ତ ଦୂରର କଥା, ଚୁଲି ଉପରୁ ଭାତହାଣ୍ଡିକୁ ଉଠେଇଦେଲେ । ଈଶ୍ୱର କିମିତି କ୍ଷମା ଦେବେ ଏମାନଙ୍କୁ । ଏ ଅପମାନ ତ ତାଙ୍କରି ନା, ହେଲେ ସେ କାହାକୁ କହିବେ । ବିଚାର ହରେଇଥିବା ଅମଣିଷଙ୍କୁ ବୁଝେଇବାକୁ ଗଲେ ତ ଫଳ ଓଲଟା ହେବ । ଜିଦ୍ ବଢ଼ିବ । ମଣିଷ ସ୍ୱଭାବ ହିଁ ସେମିତି । ହାରମାନିବାକୁ ଚାହେଁନା । ଏମାନେ ତ

Digitized by PPRACHIN, SOA

ଦୁର୍ଦ୍ଦାନ୍ତ । କେଶବା ଅସହାୟ । ସେ ନିଜେ ଏକୁଟିଆ । ସୁବଳ ତା'ପୁଅକୁ ହରାଇବାର ଦୁଃଖରେ ଅନ୍ଧ । ସେ କାହାକୁ ବୁଝେଇବେ ଏବେ । ଘଟଣା ତ ଘଟି ସାରିଲାଣି । କେଶବା ପାଇଁ ନିଶ୍ଚୟ ଏଇଟା ଶକ୍ତ ଧକ୍କା । ତଥାପି ଚିନ୍ତା କଲେ, କିଛି ଗୋଟାଏ ପ୍ରତିକ୍ରିୟା ଜଣେଇବା ଅର୍ଥ ଅନର୍ଥକୁ ଡାକି ଆଣିବା ବରଂ ସମୟକୁ ଟିକିଏ ଛାଡ଼ିଦିଆଯିବା ଉଚିତ । ପରିସ୍ଥିତି ଶାନ୍ତ ପଡ଼ି ଆସିଲେ ହୁଏତ ସବୁ ସଜାଡ଼ି ହେଇଯିବ ।

ହେମଲତା ଓ କେଶବାକୁ ବୁଝେଇଲେ ସବୁକଥା । "ତୁ ବାପ ବ୍ୟସ୍ତ ହଅନା । ମୁଁ ଜାଣୁଛି, ବିପଦ ଆସିଛି । କଷ୍ଟ ଆସିଛି ଶରୀରକୁ । ସମୟ ଅନୁକୂଳ ନୁହେଁ । ଦିନ କେଇଟା ସମ୍ଭାଳିଯିବା । ଲୋକଙ୍କ ରାଗରୋଷ ନ କମିଲେ, କିଛି ବୁଝେଇ ହବନି । ନିଶାଗ୍ରସ୍ତ ମଣିଷର ମୁଣ୍ଡ କ'ଣ ଠିକ୍ ଥାଏ । ଇଏ ବି ଗୋଟାଏ ପ୍ରକାରର ନିଶା । ସବୁଦିନ ତ ସମାନ ଯାଏନି । ରାତି ହେଲେ ସକାଳ ଆସିବ ନିଶ୍ଚୟ । ବାଟ ଫିଟିବ । ଧୈର୍ଯ୍ୟ ଧର । ହେମ ତ ଅଛି । ରାଧାରମଣ କାହାକୁ ହତାଶ କରନ୍ତିନିରେ ।" ତୁଳସୀମାଳାକୁ ମୁଣ୍ଡରେ ଛୁଆଁଇ ଦୀର୍ଘଶ୍ୱାସ ନେଇ ପୁଣି କହିଲେ, ଜାଣ ପୁଅ, ଇଏ ତୋର ଅପମାନ ନୁହେଁ ମୋ' ଅପମାନ ମଧ୍ୟ । ହେମକୁ କହିଲେ ଯା' ନେଇଯା' କେଶବାକୁ ଗାଧୁଆ ପାଧୁଆ କରି ଟିକିଏ ସାଷ୍ଟାମ ହେଉ ।

ରମାକୁ ଡାକି କହିଲେ, "କେଶବାଟା କ୍ଷୀର ଖାଏନି, ତା'ପାଇଁ ତତଲା ରୁଟି ଚାରିପଟ ଆଉ ନାଲି ଚା'ଟିକେ କରି ନେଇଆ, ବାଧିଛି ମଣିଷଟାକୁ । ଲକ୍ଷ୍ମୀକୁ ଡାକି ଆଣିବୁ ଏଇଠିକୁ ଯେ, ମୋ ସହିତ ସେ ଜଳଖିଆ ଖାଇବ । ଔଷଧ ଡବା ଖୋଜି କ'ଣ ଦି'ଟା ବଟିକା ଦେଲେ, କହିଲେ ଜଳଖିଆ ସହିତ ଖାଇଦେବ ଯେ ଟିକେ ପରାସ କମିଯିବ । ପଛକୁ ପଛେ ଡାକ୍ତରଖାନା ଯିବ ।"

ତଥାପି ସଞ୍ଜବେଳକୁ ଆରତି ସାରି, ରମା ହାତରେ ଡକେଇ ପଠେଇଲେ ହରିଆ ପଟ, ଅନାଦି ଓଝାଙ୍କୁ ତାଙ୍କ ସହିତ ଦେଖା କରିବାକୁ । ନ କହିଲେ ବି ତାଙ୍କ ପକ୍ଷକୁ ଦୁର୍ବଳ ଭାବିନେବେ । ଟିକେ ଟାଣପଣ ତ ଦେଖେଇବାକୁ ହିଁ ପଡ଼ିବ । ଫଣା ଟେକିବାକୁ ହିଁ ପଡ଼ିବ ।

ସେଇ ରାତିରେ ଓଝାଏ ଖବର ପଠେଇଲେ ହରିଆ ପଟକୁ । "ବୁଝିଲ ମଉସା, ବୁଢ଼ୀସା'ନ୍ତାଣୀ ଡକେଇ ପଠେଇଛନ୍ତି ଦେଖାକରି ଯିବାକୁ, ଯିବାଟି ?" "ନ ଯାଇ ଆଉ ଚାରା ଅଛି । ତାଙ୍କ କଥାକୁ ତ ଆଉ ଟାଳି ହେବନି । ବୋଧେ ସକାଳର ଘଟଣା ନେଇ ପଚରା ଉଚୁରା କରିବେ ।" ଆପଟ କହିଲେ । ଯା'ହବ, ଆଖିରେ ଯାହା ଦେଖିଛେ ତାକୁ କହିବା । ତେଣିକି ଯାହା ବିଚାର ଦେବେ ସିଏ ।

Digitized by PPRACHIN, SOA

ପରଦିନ ସକାଳୁ ସକାଳୁ ଦୁହେଁ ଯାଇ ହାଜିର ହେଲେ ସାନ୍ତାଣୀଙ୍କ ପାଖରେ । ଜୁହାର ହୋଇ ବାରଣ୍ଡା ଉପରେ ବସିପଡ଼ି ଅପେକ୍ଷା କଲେ ମା' କ'ଣ କହୁଛନ୍ତି ଶୁଣିବାକୁ ।

ସା'ନ୍ତାଣୀ ଘଟଣା ସମ୍ପର୍କରେ ଟିକିନିଖି ବିବରଣୀ ଶୁଣିବାକୁ ଚାହିଁଲେ । ଘଟଣା ବର୍ଣ୍ଣନା କରି ଓଝାଏ କହିଲେ, ସୁବଳର ଦୁଃଖ ସହି ହେଲାନି ମା' ସା'ନ୍ତାଣୀ । ଲୋକେ ଉତ୍ତେଜିତ ହୋଇ ପଡ଼ିଲେ, ତାଙ୍କୁ ସବୁ ଅଟକେଇ ହେଲାନି । "ଠିକ୍ କଥା । ସୁବଳର ଦୁଃଖ ସହିହେଲାନି, ହେଲେ କେଶବାର ଦୋକାନଟା ସେଠି କଣ କଲା । ତାକୁ କୋଉ ସୁଖର ପ୍ରତିଶୋଧ ନେବାକୁ ଏଇ ଦଣ୍ଡ ଦେଲ ? ଅକ୍ଷମ, ପଙ୍ଗୁ ମଣିଷଟା ତମମାନଙ୍କ ଭରସାରେ ବଞ୍ଚିବାକୁ ଚେଷ୍ଟା କରୁଥିଲା । ସିଏ ତ କାହାର ଶତ୍ରୁ ନ ଥିଲା । କାହାର କ୍ଷତି କରୁନଥିଲା-ଭିକ ନ ମାଗି, ପରିଶ୍ରମ କରି ତା'ପରିବାରକୁ ପୋଷିବାର ବ୍ୟବସ୍ଥା କରୁଥିଲା । ତମେମାନେ ତାକୁ ସାହାଯ୍ୟ ନକଲ ନାହିଁ ତା ଖାଇବା ଥାଳିକୁ ଉଠେଇ ଦେଇ କି ମହତ କାମଟାଏ କଲ ଓଝାଏ ? ସା'ନ୍ତେ ଥିଲେ ଏକଥା କରିପାରିଥାନ୍ତ ? ସିଏ ପରା ତମମାନଙ୍କୁ ଦାୟିତ୍ୱ ଦେଇ ଯାଇଛନ୍ତି ଭାବପୁରର ମର୍ଯ୍ୟାଦାରେ ଆଞ୍ଚ ଆସିଲା ଭଳି କିଛି କାମ ଯେମିତି ନ କର । ଭୁଲିଗଲ ସେକଥା ? ଲୋକେ ଶୁଣିଲେ କ'ଣ ଭାବୁଥିବେ ? ପଦ୍ମଲୋଚନ ତିଆଡ଼ିଙ୍କ ଜୟଜୟକାର କରୁ ନ ଥିବେ କି ? ମୁଁ ପୁଣି ତମମାନଙ୍କ ଉପରେ ଅଖଣ୍ଡ ଭରସା କରିଛି ଯାହା, ଛିଃ ଛିଃ, କି ଅବିବେକୀ ବିଚାର । ତମେମାନେ ଏସବୁ କ'ଣ କଲ । ମୋ' ପିଲାଏ ଶୁଣିଲେ କି ଧାରଣା ହେବ ସେମାନଙ୍କର ? ନିଜର କ୍ଷୋଭଜନିତ ପ୍ରତିକ୍ରିୟାକୁ ପ୍ରକାଶ କରିସାରି ନିରବ ରହିଲେ ସା'ନ୍ତାଣୀ ମୁହୂର୍ତ୍ତେ ।

ଅନାଦି ଓଝା ଆଉ ହରିଆପଟ ପାଟି ନ ଫିଟେଇ ବସିଥାନ୍ତି ମୁଣ୍ଡପୋତି । ବୁଢ଼ୀ ସା'ନ୍ତାଣୀ ଅଭିମାନ କରିଛନ୍ତି । ସ୍ୱାଭାବିକ । ସା'ନ୍ତେ ଥିଲାବେଳେ କେବେ ଏଭଳି ଘଟଣା ଘଟି ନ ଥିଲା କି ଥିଲେ ମଧ ଏଭଳି ଘଟଣା ଘଟି ନ ଥା'ନ୍ତା କାରଣ କେଶବା ପାଇଁ ସେ କ'ଣ ଦୋକାନଟାଏ ଖଞ୍ଜି ଦେଇଥାନ୍ତେ । ମା' ସିନା କିଛି ନ ବୁଝି ନ ଶୁଝି ପର ଗାଁର ମଣିଷଟାକୁ ଏତେ ଅଧିକାର ଦେଇପକେଇଲେ... ଭାବୁଥାନ୍ତି ଅନାଦି ଓଝା ମନେମନେ, ଚାହୁଁଥାନ୍ତି ହରି ଆପଟଙ୍କୁ ମଝିରେ ମଝିରେ । ପଦୁଟାଏ କଥା କେହି ହେଲେ କହୁ ନ ଥାନ୍ତି ଉତ୍ତରରେ ।

ଶେଷରେ ନିଜେ ସା'ନ୍ତାଣୀ ହିଁ ନିରବତା ଭାଙ୍ଗିଲେ... କହିଲେ, "ଯାହା ହେବାର ତ ହେଇଗଲାଣି । ବିବେକଶୂନ୍ୟ ହେଲେ ମଣିଷ ଏମିତି ଅକାର୍ଯ୍ୟ ସବୁ କରେ । ଏବେ ଗୋଟାଏ କାମ କର ଓଝାଏ, ଗାଁ ଲୋକ ସବୁ ମିଶି କେଶବାକୁ ଟିକିଏ ସାହାଯ୍ୟ କର । ତା'ର ସେଇ ଦୋକାନଟାକୁ ପୁଣିଥରେ ସଜାଡ଼ି ଠିଆ କରିଦିଅ । ବଞ୍ଚି ଯାଉ ପରିବାରଟା । ଥାଇତି ଦିଅ ତାକୁ । ଗାଁର ଇଜ୍ଜତ ରହିଯାଉ । ବୁଢ଼ାସାନ୍ତେ ସରଗରେ ଥାଇ ସନ୍ତୋଷ ହୁଅନ୍ତୁ । ନା, କ'ଣ କହୁଛ ?

Digitized by PPRACHIN, SOA

କ'ଣ ଆଉ କହିବୁ ସା'ନ୍ତାଣୀ ଆପଣେ । ଆମ କଥା ପଚାରିଲେ, କହିବୁ ଆମର ଦୁହିଁଙ୍କର କିଛି ଆପତ୍ତି ନାହିଁ, କ'ଣ କହୁଛ ମଉସା ? ହଁ, ଆମର କିଛି ଆପତ୍ତି ନାହିଁ । ହେଲେ ଗାଁ ଲୋକେ ଚାହିଁଲେ ତ, ସେମାନେ ଚାହିଁଲେନି ବୋଲି ତ ଘଟଣାଟା ଘଟିଲା । ସିଏ ଏବେ ଆମର କୋଉ ଆପଣାର ଯେ, ତା' ପ୍ରତି କାହା ମନ ତଟିବ । କୋଉ ଗାଁର ଲୋକ, କାମ କରି ଯୋଉଠି ହେଲେ ପେଟ ପୋଷିବା କଥା । କାମ ଖୋଜି ଆସି, ତମେ ଆପଣଙ୍କର ସାହସ ପାଇ ଏଠି ବସିଗଲା ନା, ନହେଲେ ତାର କୋଉ ଦାବି ଅଛି ନା ସାହସ ଅଛି । କହିଦେଇ ଆପଟ ଟିକେ ସାଙ୍କୁଡ଼ି ଗଲେ ।

ସାନ୍ତାଣୀଙ୍କ ଆଗରେ କେବେ ଏମିତି ଖୋଲାଖୋଲି ଭାବେ ପାଟି ଖୋଲି ନ ଥଲେ ସେ ।

"କି କଥା କହୁଛ ହେ...କୋଉ ଦିନଠୁ ତମର 'ତମ ଗାଁ ଆମ ଗାଁ' ଭାବଟା ନିଜ ଭିତରେ ପୋଷିଲଣି ? ମଣିଷ ତ ମଣିଷ । ସଭିଙ୍କ ଦୁଃଖ, ସବୁରି ପେଟ, ସମସ୍ତିଙ୍କ ଭୋକ ସମାନ । ତମ ଗାଁ ଲୋକଙ୍କ ଭୋକ ଭୋକ, ଅନ୍ୟ ଗାଁ ଲୋକଙ୍କ ଭୋକ ଭୋକ ନୁହେଁ । କେଡ଼େ ଅବର୍ଜିଆ କଥା । ଭଲ ଶୁଭୁଛି ତମ କାନକୁ କଥାଟା- ମୁହଁରେ ବିରକ୍ତି ଭାବ ଫୁଟିଉଠିଲା ସାନ୍ତାଣୀଙ୍କର । ଛି, ଛି ଭଲ ହଉନି କିଛି..."

"ଦୋଷ ଧରିବେନି ଆପଣ ମା' ସା'ନ୍ତାଣୀ । ଆମେ କହୁନୁ ଏକଥା । ଗାଁ ବାଲାଙ୍କ କଥା ଇଏ । ତାଙ୍କ ପ୍ରାଣକୁ କ'ଣ ସବୁ ବାଧିଛି । ତା'ଛଡ଼ା କେଶବା ସରକାରୀ ଜାଗାରେ ଦୋକାନ କରିଥିଲା, ତେଣୁ ପୋଲିସବାବୁମାନେ ତାକୁ ଭାଙ୍ଗି ଦେଇଛନ୍ତି । ଆମ ଗାଁ ବାଲା ଭାଙ୍ଗି ନାହାନ୍ତି କହିଲେ ଅନାଦି ଓଝା । ସେଠି ଦୋକାନ ପାଇଁ ଗହଳି ହେଉଛି ଆଉ ସେଇ ଗହଳି ପାଇଁ ଦୁର୍ଘଟଣାଟା ଘଟି ସୁଢଳର ପ୍ରାଣ ଗଲା । ଆପଣ ତା'ପାଇଁ ଏତେ ବ୍ୟସ୍ତ କାହିଁକି ହେଉଛନ୍ତି ଯେ, ଆଉ ପାଁ'ଇଣ ମଜୁରିଆ ଯିମିତି କାମ ପାଇଟି ଖୋଜି ବଞ୍ଚୁଛନ୍ତି, କେଶବା ସିମିତି ବଞ୍ଚିବ । ଆପଣ ଯାହା କରିବା କଥା କଲେ, ତା'ଭାଗ୍ୟ ସହିଲାନି । ଆମେ ବି ତାକୁ ସାହାଯ୍ୟ କରିଛୁ ଆମ ପାରିଲା ମତେ... ଓଝାଏ କଥା ସାରିଲେ । ଅବଶ୍ୟ ସିଏ ସରକାରୀ ଜମିରେ ଦୋକାନ କରି ଭୁଲ୍ କରିଥିଲା- ହରି ଆପଟ କଥାର ମୁଣ୍ଡି ମାରିଲେ । ସେଇ ତାର ପ୍ରଥମ ଭୁଲ ।"

ସା'ନ୍ତାଣୀ ମନେମନେ ପରଖିନେଲେ ସେମାନଙ୍କ ମନକଥାକୁ । କେଶବାର ଶିରୀ କେହି ସହିପାରୁ ନାହାନ୍ତି । ଚାହୁଁ ନାହାନ୍ତି ମଧ ସେ ଏଇ ଗାଁରେ ରହୁ, ବୁଝାମଣାଟା ମୂଳୁ ବଙ୍କା । ଏଠି ମଣିଷପଣିଆ ଅପେକ୍ଷା ଜିଦିବାଦଟା ବେଶି । ଏ କ୍ଷେତ୍ରରେ କେଶବା ଭଳି ଅସହାୟ ମଣିଷଟିଏ ପରିସ୍ଥିତିକୁ ସାମ୍ନା କରିବାକୁ କେମିତି ସାହସ କରିବ ? ? ମୁଁ ବଞ୍ଚେ, ମୋ ସହିତ ଆଉ ଦଶ ଜଣ ବି ବଞ୍ଚନ୍ତୁର ଭାବନା ଆଉ ନାହିଁ ଏ ସଂସାରରେ ।

Digitized by PPRACHIN, SOA

ସେ ଆଉ କ'ଣ କରିପାରିବେ । ଯାହା କଲେ ବି ବିଦ୍ରୋହ ମୁଣ୍ଡ ଟେକି ସମସ୍ୟା ଦେଖାଦେବ । ସା'ନ୍ତାଣୀ ଅନେକ ଦିଗରୁ ବିଚାର କରି କୌଣସି ନିଷ୍ପତ୍ତି ନ ଦେଇ ନିରବ ରହିଲେ । କ'ଣ ବି କହିଥାନ୍ତେ । ଈଶ୍ୱର ହିଁ ଭରସା । ଦୀର୍ଘଶ୍ୱାସ ଛାଡ଼ି, ତୁଳସୀମାଳାକୁ ମୁଣ୍ଡରେ ଲଗେଇଲେ ।

ଏଇ ମଉକାରେ ଅନାଦି ଓଝା ପାଟି ଖୋଲିଲେ "ତଥାପି ଆମେ ଗାଁ ବାଳାଙ୍କ ଆଗରେ କଥାଟା ପକେଇବୁ, ଆପଣଙ୍କୁ ପଛନ୍ତେ ଜଣେଇବୁ" । ଜୁହାର ହେଇ ଦୁହେଁ ବିଦାୟ ମାଗିଲେ । ଆସିବା ବାଟରେ ଦୁହେଁ ବିଚାର କଲେ, "ଆମ ଗାଁରେ ଦୋକାନ ଦେବାକୁ ଯେମନ୍ତେ କେହି ମଣିଷ ନାହାନ୍ତି । ବୁଢ଼ୀଙ୍କର ବୟସ ହେଇ ଆସିଲାଣି ତ ବୁଦ୍ଧି ବାମ ଧରୁଛି, ଜାଣିଲ" ।

ଓଝାଏ କଥାକୁ ସମର୍ଥନ କରି କହିଲେ, ଯାହା କହିଲ, ଏଇ କେଶବାଟା ପାଇଁ ଏତେ ଦୟାମାୟା କାହିଁକି କେଜାଣି ବୁଢ଼ୀଙ୍କର, କି ମନ୍ତର କରିଛି ଲୋକଟା କେଜାଣି ।

ଏଇମିତି ମାଡ଼ିମକଚି ହେଇ ମାସ ଚାରିଟା ଯେମିତି ସେମିତି ଚଳିଗଲା କେଶବାର । ସଞ୍ଚିଥିବା ସଞ୍ଚୟ ସରି ଆସିଲା କ୍ରମଶଃ । ହେମ ଯାହା ଦି'ଚାରିଘର କାମ କରି ଚଳେଇ ନଉଥିଲା ସଂସାରକୁ । ଉଆସ ଭିତରେ ଥିଲା ବୋଲି ସିନା ବାଧୁ ନ ଥିଲା । ହେଲେ ଖର୍ଚ୍ଚ ତ ଅଛି । ଛୋଟ ପଣତ, କୁଆଡ଼କୁ ପାଇବ ।

ଦିନେ ଲକ୍ଷ୍ମୀ ଥରି ଥରି ସ୍କୁଲରୁ ଆସି ବିଛଣା ଧରିଲା । ହେମ ଚମକି ପଡ଼ି ଦେଖେ, ଦିହରେ ତାତି ଫୁଟୁଛି । ବ୍ୟସ୍ତ ହେଇ ଧାଇଁଗଲା ସା'ନ୍ତାଣୀଙ୍କ ପାଖକୁ । କେଶବା ଝିଅ ମୁହଁକୁ ଚାହିଁ ମୁଣ୍ଡରେ ହାତ ଦେଇ ବସିଲା । କ'ଣ କରିବ ସିଏ । ଦି'ଦିନ ଗଲା, ଚାରିଦିନ ହେଲା ଜ୍ୱର ଓହ୍ଲେଇବାକୁ ନାହିଁ । ଅଜଣା ଆଶଙ୍କାରେ ଛାତି ଥରି ଉଠିଲା । ମା ସା'ନ୍ତାଣୀଙ୍କ ପାଖରେ ଥିବା ଔଷଧ ବିଶେଷ କାମ କଲାନି । ଲକ୍ଷ୍ମୀ ଜ୍ୱରର ପ୍ରକୋପରେ ବାଉଳିଚାଉଳି ହେଲା । ହାତ ମୁଠାମୁଠା କରି ଥରିବାକୁ ଲାଗିଲା । ଆଖି ଖୋଲି ଚାହିଁଲାନି ବି । "ଆଉ କ'ଣ ବଞ୍ଚିବନି ମୋ' ଲକ୍ଷ୍ମୀ ସାନ୍ତାଣୀ, କ'ଣ କରିବି ମୁଁ ?" ହେମ ବିକଳ ହୋଇ ମା" ସା'ନ୍ତାଣୀଙ୍କୁ ଚାହିଁଲା ।

ସା'ନ୍ତାଣୀ ଅଭୟ ଦେଲେ, ବ୍ୟସ୍ତ କାହିଁକି ହଉଛୁ । ଜ୍ୱର ବଢ଼ିଛି ବୋଲି ବାଉଳି ହେଉଛି, ହାଲିଆ ହେଇ ଆଖି ଖୋଲୁନି । ଧୋଇ ଦେ ମୁଣ୍ଡଟା, ଦେହ ହାତ ପୋଛି ପକା ଥଣ୍ଡା ପାଣିରେ । ଟିକିଏ ଜ୍ୱର କମିଲେ, ନେଇଯା ଆମ ଶାଳିଗାଁ ଡାକ୍ତରଖାନାକୁ । ଡାକ୍ତର ଦେଖି ଯାହା ଅନୁମାନ କରିବେ । ଥୟ ଧର । ତୁ ତ କେଡ଼େକେଡ଼େ ବିପଦକୁ ସମ୍ଭାଳିଛୁ । ଆହା, ଝିଅଟା ଜ୍ୱରର ପରାସରେ କଳାକାଠ ପଡ଼ିଗଲାଣି । ସାନ୍ତାଣୀ ଲକ୍ଷ୍ମୀର ଦେହମୁଣ୍ଡ ଆଉଁଶି ଦେଲେ- କହିଲେ, ଡେରି ନକରି ଆଜି ହିଁ ନେଇଯା' ।

Digitized by PPRACHIN, SOA

ଅଚେତ ଲକ୍ଷ୍ମୀକୁ ନେଇ ହେମ ଡାକ୍ତରଖାନାକୁ ଗଲା । ସପ୍ତାହେ ରହିବାକୁ ଡାକ୍ତର ପରାମର୍ଶ ଦେଲେ । ଚିକିତ୍ସା ଆରମ୍ଭ ହେଲା । ହେମର ଚିନ୍ତା ବଢ଼ିଲା ଆହୁରି । ଔଷଧ୍, ଇଞ୍ଜେକସନ୍ ପାଇଁ ଟଙ୍କାର ଆବଶ୍ୟକତା ହେଲା- ସା'ନ୍ତାଣୀ ହିଁ ଭରସା । ସେ ଦେଇ ଆସିଛନ୍ତି, ଦେବେ ମଧ୍ୟ । ହେଲେ ତାକୁ ମାଡ଼ିପଡୁଥିଲା । କେତେ ହାତ ପାତିବ । ଦୋକାନ ପାଇଁ ଆଣିଥିବା ଟଙ୍କା ଏଯାଏ ଶୁଝିପାରିନି । ଦୋକାନ ବି ଗଲା । ଭରସା ତୁଟିଲା । ଏଣେ ସଂସାରର ଅଚଳ ଅବସ୍ଥା ।

କେଶବା ପୁଣି ଥରେ ସାନ୍ତାଣୀଙ୍କ ପାଖରେ ଠିଆହେଲା ହାତପାତି । ସାନ୍ତାଣୀ କହିଲେ- ଦୁଃଖ ଏମିତି ଆସେ । ଝାଙ୍କି ଦେଇଯାଏ ମଣିଷକୁ । ବିପଦ ଆପଦରେ ତ ମଣିଷ ସାହାଯ୍ୟର ହାତ ବଢ଼ାଏ, ସାହାଯ୍ୟ ମାଗେ । ତୁ ଏମିତି ଭାଙ୍ଗିପଡୁଛୁ କାହିଁକି । ସବୁଦିନ ସମାନ ନ ଥାଏ । ନେ'ଟଙ୍କା, ଔଷଧ, ପଥ୍ୟ ସବୁ କିଣି ଆଣିବୁ । ଝିଅଟା ଆଗ ସୁସ୍ଥ ହେଉ ।

ଦିନସାରା କେଶବା ଝିଅ ପାଖରେ ରୁହେ । ହେମ ଗାଁରେ ଚାରିଘର କାମ ସାରି ଡାକ୍ତରଖାନା ଯାଏ । ଏହିଭଳି ବାପମା' ଦୁହେଁ ପାଳିକରି ଝିଅର ଶୁଶ୍ରୂଷା କଲେ । ସପ୍ତାହେ ଜାଗାରେ ଦି'ସପ୍ତାହ ରହିଲା ଲକ୍ଷ୍ମୀ ଡାକ୍ତରଖାନାରେ । ସେତକ ଦିନ ସା'ନ୍ତାଣୀ ହିଁ ସବୁ ସମ୍ଭାଳିଛନ୍ତି କହିଲେ ଚଳେ । ମା' ସାନ୍ତାଣୀ ନ ଥିଲେ ତାର ଅବସ୍ଥା ଯେ କ'ଣ ହେଇଥାନ୍ତା ଭାବିଲା ବେଳକୁ କୃତଜ୍ଞତାର ବୋଝରେ କାନ୍ଧ ନଇଁଆସେ ତାର । ସାତଜନ୍ମରେ ବି ସେ ଏଇ ଋଣ ଶୁଝିପାରିବନି ।

ଲକ୍ଷ୍ମୀ ସୁସ୍ଥ ହୋଇ ଘରକୁ ଫେରିଲା ସତ, ହେଲେ ରୋଗିଣା ପିଲାଟିକୁ ଉଷୁମ ଭାତଗଣ୍ଡେ ଖାଇବାକୁ ଦେବା ବି ହେମ ପାଖରେ ଅସମ୍ଭବ ହୋଇପଡ଼ିଲା । ସା'ନ୍ତାଣୀ ସିନା ତାଙ୍କ ବଡ଼ପଣର ପଣତକୁ ବଢ଼େଇ ଦେଉଛନ୍ତି ହେଲେ ଆମର ତ ବିଚାର ଅଛି ? ଦିନେ କେଶବା ଆଗରେ ଏକଥା କହିଲା ହେମ । ପ୍ରସ୍ତାବଟିଏ ବି ଦେଲା । କେତେଦିନ ଏମିତି ଗୋଡ଼ଭାଙ୍ଗି ପର ପାଖରେ ଠିଆ ହେବା । ଦିନେ ଅଧେର ତ କଥା ନୁହେଁ ଜୀବନଟା ପଡ଼ିଛି । ଗାଁ ଲୋକଙ୍କ ବାରକଥା ଶୁଣିବାକୁ ପଡୁଛି । ସେଦିନ ନିଧିନନାଙ୍କ ବୋଉ ବି କହିଲେ, "ଏଇ ଚାଖଣ୍ଡେନାକୁ ଗାଁରେ କେତେ ରୋଜଗାର କରିବ ତିନିଟା ପେଟକୁ ପୂରା ଦାନା ବି ଜୁଟୁନଥିବ । ବରଂ ସହରକୁ ଗଲେ ଆଉ କିଛି ଉପାୟ ଦିଶିବ କେଶବା ପାଇଁ, କେତେ ରକମର କାମ ଥାଏ ସହରରେ- କହିସାରି ହେମ କେଶବା ମୁହଁକୁ ଚାହିଁଲା ତା'ର ପ୍ରତିକ୍ରିୟା ଜାଣିବାକୁ । ଯିବା କି ସହରକୁ ?"

ହଠାତ୍ କେଶବାର ମୁଣ୍ଡ ଭିତରଟା କେମିତି ଗୋଳମାଳିଆ ହୋଇଗଲା-ହେମ କ'ଣ କହୁଛି ଏମିତି, କୋଉ ସହରକୁ ସେ ଯିବ, ଅକ୍ଷମ ଅପାରଗଟା ସେ, ସହର କଥା

Digitized by PPRACHIN, SOA

ଭାବିଲା ବେଳକୁ ଥଳକୂଳ ପାଉ ନ ଥିଲା, ସହର ବିଷୟରେ ସେ କ'ଣ ବା ଜାଣିଛି ? ସଂଶୟାକୁଳ ହୋଇପଡ଼ିଲା କେଶବା ନିଜ ଭିତରେ, କିଛି ଉତ୍ତର ନ ଦେଇ କେବଳ ଚାହିଁଲା ହେମ ମୁହଁକୁ । ହେମ ପୁଣି ଦୋହରାଇଲା "କ'ଣ କିଛି କହୁନ... ଏଇ ପରିସ୍ଥିତି ଭିତରେ ଆଉ କେତେ ଦିନ ଚଳିବା ? କିଛି ତ କରିବା ବଞ୍ଚିବା ପାଇଁ ।"

ଦୀର୍ଘଶ୍ୱାସ ଛାଡ଼ୁଛାଡ଼ୁ କେଶବା କହିଲା, ତୁ କ'ଣ ଜାଣୁନୁ, ମୋତେ ତ ଦେଖୁଛୁ, ସହର ଆମ ପାଇଁ ସ୍ୱର୍ଗେ ବାଟ । ଯାହା ଶୁଣିଛି, ସେଠି କେତେ କ'ଣ ଘଟଣ ଅଘଟଣ ଘଟେ । ତା'ଛଡ଼ା ଆମର ଆଶ୍ରୟ କାହିଁ ? ସମ୍ବଳ ତ ନାହିଁ କିଛି ।

ହେମ ବୁଝିପାରିଲା, ବିପନ୍ନବୋଧ କରୁଥିବା ସ୍ୱାମୀକୁ ସାହସ ଅଣ୍ଡେଇବାକୁ ଯାଇ କହିଲା, ଆମ ଭଳି ଅରକ୍ଷିତଙ୍କ ପାଇଁ ଆଶ୍ରୟ କ'ଣ ଅପେକ୍ଷା କରିଥିବ ନା, ସମସ୍ତେ ସବୁକଥା ଜାଣିଥାନ୍ତି । ପାଦ ବଢ଼େଇଲେ ବାଟ ମିଳିବ । ଏଯାଏ ତ ଠାକୁରେ ପୁଣି ନେଇ ଆସିଲେ, ସେମିତି କିଛି ବାଟ ତ ଦିଶିବ । ତମେ ଖାଲି ସାହସ ବାନ୍ଧ ମନରେ । ମୁଁ ଜାଣେ ତମେ ପାରିବ । ଟିକିଏ ରହି ହେମ ଚିନ୍ତାକଲା ଭଳି କହିଲା, "ମୋ ମନକୁ ଗୋଟାଏ କଥା ଆସୁଛି, ଆମ ନିଧିନନାଙ୍କ ପୁଅ ଏଇ ପାଖ ସହରରେ ରହୁଛନ୍ତି, ତାଙ୍କୁ ଥରେ କୁହନ୍ତେ କିଛି ଯଦି ସାହାଯ୍ୟ କରିପାରିବେ ।"

କେଶବା କିଛି ଉତ୍ତର ନ ଦେଇ ଲମ୍ବା ନିଃଶ୍ୱାସ ଛାଡ଼ି ଶୂନ୍ୟକୁ ଚାହିଁଲା । ହୁଏତ ଭାବୁଥିଲା, ସମସ୍ତେ ତ ସାନ୍ତାଣୀ ନୁହନ୍ତି । କିଏ ଏମିତି ସାହାଯ୍ୟର ହାତ ବଢ଼େଇବ । ଆଜିକାଲି ମନର ବଳ ବି ଭାଙ୍ଗିଯାଉଛି । ହେମ କଥାଟାକୁ ପୁଣି ଦୋହରାଇଲା "କିଛି କହୁନ ଯେ..., ପଚାରିବି ନିଧିନନାଙ୍କୁ ?" ସାହସ ହେଉନି ଲୋ ହେମ, ମହରଗରୁ ଯାଇ କାନ୍ତାରରେ ପଡ଼ିବନି ତ ?" ନହେଲେ ଚାଲ ଗାଁକୁ ଫେରିବା, ମାନ ଅଭିମାନକୁ ପଛରେ ପକାଇ ଯିବା । ବଞ୍ଚିବାଟା ଯେତେବେଳେ ମୂଳ ଉଦ୍ଦେଶ୍ୟ ଆଉ କିଛି ଭାବିବାନି । କେଶବା, ଚମକି ଉଠିଲା ନିଜ ଭିତରେ ହେମର ପ୍ରସ୍ତାବ ଶୁଣି ଗାଁ ସେ ଛାଡ଼ିଛି ଆଉ ଯିବନି । ଗାଁ କଥା ଶୁଣି ପୁରୁଣା କଣ୍ଟାରେ ଫୋଡ଼ି ହୋଇଗଲା ତା' ଦେହମନ । ସ୍ୱାଭିମାନ ମୁଣ୍ଡ ଟେକିଲା । ନା, ଗାଁ ନୁହେଁ ବରଂ ସହରକୁ ଯିବା ଭଲ । ଭାଗ୍ୟରେ ଯାହା ଲେଖାଥିବ । ଜୀବନ ମାନେ ତ ସଂଘର୍ଷ । କୋଉ ଫୁଲଫୁଟା ରାସ୍ତା ଅପେକ୍ଷା କରିଥିବ ତା' ଭଳି ଅପାରଗ ପାଇଁ ।

ଦୁହେଁ ବିଚାରି, ନିଜ ମନ କଥା ଆଉ ନିଷ୍ପତ୍ତିକୁ ମା' ସା'ନ୍ତାଣୀଙ୍କ ଆଗରେ ଦିନେ ସୁଯୋଗ ଦେଖି କହିଲେ ମଧ୍ୟ । ପ୍ରଥମେ ସା'ନ୍ତାଣୀ ଟିକିଏ ଚିନ୍ତିତ ହେଇପଡ଼ିଲେ । ଦୁଃଖ ବି କଲେ । "ଏଠି କ'ଣ ତୋର କିଛି ଅସୁବିଧା ହେଉଛି କି ? ବୋଲି ପଚାରିଦେଲେ ।"

Digitized by PPRACHIN, SOA

"ନାହିଁ ସା'ନ୍ତାଣୀ ମା', ଆମେ ଏଠି ବହୁତ ଭଲରେ ଅଛୁ । ଆଉ ମୋ ପାଇଁ ଏଠି ରାଜଭୋଗ । ସେଥିପାଇଁ ମୁଁ ସମସ୍ତିଙ୍କ ଚକ୍ଷୁଶୂଳ । ମୋର ଅନେକ ତପସ୍ୟା ଥିଲା ବୋଲି ଏତେଦିନ ସୁଖରେ କଟିଲା । ଏବେ ଯେତେବେଳେ ସମସ୍ୟା ଦେଖାଦେଲାଣି..." କେଶବା କିଛି ନକହି ତଳକୁ ମୁଣ୍ଡ ପୋତିଲା । ସା'ନ୍ତାଣୀ ଭାବିଲେ ମନେ ମନେ, ସତକଥା, ଆଜି ସିନା ସେ ବଞ୍ଚିଛନ୍ତି । ବୟସ ହେଲାଣି, କାଲିକୁ ଯଦି ସେ ଆଖି ବୁଜିବେ, କେଶବାର ସ୍ଥିତି ଟଳମଳ ହେବ । କାହା ମନ ତଟିବ ନ ତଟିବ । ସେ ତ ଚିହ୍ନିଛି ମଣିଷମନକୁ । ବରଂ ତା' ଭାଗ୍ୟ ଯଦି ବାଟ କଢ଼ାଉଛି, ମନରେ ସାହସ ବାନ୍ଧିଛି- ତାହାଲେ ସେ ଆଉ ଅଟକେଇବେନି । ବରଂ ତା'ର କିଛି ଥଇଥାନ ହେଇଯାଉ ସେ ବଞ୍ଚିଥାଉ । ସେଇ ଠିକ୍ ହେବ ସୁବିଧା ଅସୁବିଧାକୁ ତ ସେ ଏବକୁ ଅଛନ୍ତି ।

ଆପାତତଃ ସହର ଯିବା ପାଇଁ ସ୍ଥିର ହେଲା । ଯଦିଓ କେଶବା ମନରେ ଖୁସି ନଥିଲା ଅନ୍ଧାର ଭିତରେ ଲୁଚି ରହିଥିବା ଆଗତ ଭବିତ୍ୟତଟାକୁ ସେ ଦେଖିପାରୁନଥିଲା ତ । ପୁଣି ଜୀବନରେ ଘଟି ଯାଇଥିବା ଘଟଣାରୁ ଗୋଟେଇଥିବା ଅଭିଜ୍ଞତା ଏତେ ତିକ୍ତ ଆଉ ଭୟଙ୍କର ଥିଲା ଯେ, ଏଇ ମୁହୂର୍ତ୍ତରେ ସେ ସ୍ଥିର କୌଣସି ଏକ ବିନ୍ଦୁରେ ପହଞ୍ଚିପାରୁ ନ ଥିଲା । ତେଣୁ ଆଗାମୀ ସମୟକୁ ବିଶ୍ୱାସ ବି କରିପାରୁ ନ ଥିଲା । ଜଣେ ସ୍ୱାମୀ, ଜଣେ ବାପ ବା ଘରର ମୁରବି ହିସାବରେ ନିଜ ଦାୟିତ୍ୱ ଓ କର୍ତ୍ତବ୍ୟଠାରୁ ନିଜକୁ ଦୂରେଇ ରଖିପାରୁ ନ ଥିଲା ମଧ୍ୟ । ଅଥଚ ତା'ର ଅକ୍ଷମତା, ରାତି ପାହିଲେ ତିନିଟା ପେଟର ଭୋକ, ଆଉ ହତଭାଗ୍ୟ ପରିବାରରେ ଜନ୍ମ ନେଇଥିବା ଲକ୍ଷ୍ମୀ ଭଳି ଅବୋଧ ଶିଶୁକନ୍ୟାର ଭବିଷ୍ୟତ ତାକୁ ଅଥୟ କରି ପକାଉଥିଲା ଅହରହ ।

ଏତିକି ବେଳକୁ 'ହେମ'ର 'ତମେ ପାରିବ'- କଥା ପଦକ ସହିତ ମା' ସାନ୍ତାଣୀଙ୍କ ତା'ଉପରେ ଥିବା ଅଖଣ୍ଡ ବିଶ୍ୱାସ "ତୋ ଭିତରେ ଯୋଉ ମଣିଷଟା ଅଛି, ସେ କେବେ ପର ଦୟାରେ ବଞ୍ଚିପାରିବନି ରେ କେଶବା-" ତା' କାନରେ ବାରମ୍ବାର ମନ୍ତ୍ର ଭଳି ବାଜିଯାଉଥିଲା । କିଏ ଯେମିତି ତା'ଭିତରୁ କହିଲା 'ତୁ ପାରିବୁ ନିଶ୍ଚେ, ଆଗକୁ ଚାଲ' । ଶୋଇଲା ସିଂହର ପାଟିକୁ ଆପେ ଆପେ ଆହାର ଆସି ପହଞ୍ଚେ କି ? ଉଠ... । କେଶବା ଆଉ କିଛି ଭାବିଲାନି... ।

କେଶବାକୁ ନେଇ ହେମ, ପରଦିନ ସକାଳୁ ନିଧି ମହାନ୍ତିଙ୍କ ପାଖକୁ ଗଲା । ଦଣ୍ଡବତ ହେଲେ ଦିହେଁ । ନିଧି ମହାନ୍ତି ବାହାର ବାରଣ୍ଡାରେ ଆରାମ ଚଉକିରେ ବସି ଖବରକାଗଜ ପଢୁଥିଲେ । ଦୁହିଁଙ୍କୁ ବସିବାକୁ କହି ପଚାରିଲେ କ'ଣ ଠିକ୍ କଲ ?

"ଦୁହେଁ ଚିନ୍ତା କରି ଦେଖିଲୁ, ଆପଣ ଦେଖେଇଥିବା ବାଟ ଆମ ପାଇଁ ଠିକ୍ ହେବ । କେବେ ତ ସହର ଦେଖିନୁ, ସହର କଥା ଜାଣିନୁ । କୌଣସି ଧାରଣା ନାହିଁ

Digitized by PPRACHIN, SOA

ବି, ତା'ଛଡ଼ା ମୁଁ ମୂର୍ଖ, ଅଜ୍ଞାନ ମଣିଷ, ପୁଣି ସମର୍ଥ ବି ନୁହଁ; କେଶବା ହାତ ଯୋଡ଼ିଲା । ପଚାରି ବସିଲା କାହା ଭରସାରେ, ପିଲାଙ୍କୁ ନେଇ ଅଜଣା ଥାନକୁ ଯିବି ଆଜ୍ଞା, ସେଇ କଥା ଆପଣଙ୍କୁ ପଚାରି ବୁଝିବି ବୋଲି ସାହସ ବାନ୍ଧି ଆସିଛି । ଆପଣ ଯଦି ଏ' ହତଭାଗାକୁ ଟିକିଏ ସାହାଯ୍ୟ କରନ୍ତେ..."

ନିଧି ମହାନ୍ତି ଧ୍ୟାନ ଦେଇ ଶୁଣୁଥିଲେ କେଶବାର ଗୁହାରି । ମନେମନେ ଖୁସିଟାଏ ବି ହେଇଗଲେ । ଯା'ହେଉ ମାଛ ନିଜେ ଆସି ଜାଲରେ ପଡ଼ିଛି । ନ ପଡ଼ି ଯିବ କୁଆଡ଼େ । ପରିସ୍ଥିତି ଯେମିତି ତାକୁ କାବୁ କରି ବସିଛି । ତେବେ ସେସବୁ କଥା ନ ଉଠେଇଲେ ଭଲ ।

ପୁଅ ଶିବ ଅନେକ ଦିନରୁ ଘରକାମ ପାଇଁ ଚାକରାଣୀଟିଏ ଖୋଜୁଥିଲା ବ୍ୟସ୍ତ ହେଇ । ସହର ଜାଗାରେ ବିଶ୍ୱସ୍ତ ମାଇପିଟିଏ ମିଳିବ କୋଉଠୁ । ସେ ନିଜେ ଅନେକ ଦିନରୁ ଆଖି ପକେଇଲେଣି, ପାଉ ନ ଥିଲେ । ହେମ ଏବକୁ ମଝିରେ ମଝିରେ ଡାକିଦେଲେ ଆସୁଥିଲା ଅବଶ୍ୟ, ଭାରି ଭଲ ସ୍ୱଭାବର ମାଈପିଟା । ଘରକାମ ସମ୍ଭାଳିବାକୁ ଧୁରନ୍ଧର । ପିଲାଙ୍କୁ ବି ଭଲ ଦେଖିବ । ଆଖିରେ ତା'ର ପାତର ଅନ୍ତର ନାହିଁ । ତା'ଘର ସମ୍ଭାଳିବା ପାଇଁ କେବେ କେବେ ଶିବ ବୋଉ ହିଁ ଯାଉଥିଲା । ସହରୀ କାମବାଲୀଏ କୁଆଡ଼ର ନୁହନ୍ତି । ବଡ଼ ବଡ଼ କଥା । ସର୍ତ୍ତ ଅନେକ । ହିନସ୍ତା ହେଇଯାଉଥିଲା ବୋହୂଟା । ଘର କାମ ଆଉ ଚାକିରି ସମ୍ଭାଳିବା ଅସମ୍ଭବ ହୋଇପଡୁଥିଲା ତାକୁ । ହେମଲତା ସବୁ ସମ୍ଭାଳିବ । ତେବେ, ତା' ସହିତ ଆହୁରି ଦି'ଟା ପେଟ ଅଧିକା । ଏଇ ଗୋଟାକ ଯାହା ସମସ୍ୟା । ଏ ସମ୍ପର୍କରେ ଶିବ ସହିତ ଆଲୋଚନା କରିବାକୁ ପଡ଼ିବ । କ'ଣ ବ୍ୟବସ୍ଥା କରାଯାଇପାରିବ । ନହେଲେ ହେମଲତା ଭଳି ମାଇପିଟିଏ ମିଳିବା କଷ୍ଟକର ।

ନିଧି ମହାନ୍ତିଏ ଏମିତିରେ କିଛି ସହଜ କି ସରଳ ନୁହନ୍ତି । ନୁହନ୍ତି ମଧ ଦୟାଳୁ କି ମହତ୍‌ଜନ । ସରକାରୀ ଚାକିରିଆ- ଅବକାରୀ ବିଭାଗରେ କାମ କରି ଆସିଛନ୍ତି । ଲୋକବାକ, ଅର୍ଦ୍ଦଳି ସହଜରେ ଘରକାମ କରିଦେଇ ଯାଉଥିଲେ । ବେଶ୍ ଦି'ପଇସା ରୋଜଗାର କରିଛନ୍ତି । ମାଛ ତେଲରେ ମାଛ ଭାଜିବାରେ ମାହିର । ସ୍ୱାର୍ଥ ନ ଥିଲେ ମୁଣ୍ଡ ପୂରାନ୍ତିନି ସେ । ଏବେ ଅବସର ନେଇ ଗାଁରେ ରହୁଛନ୍ତି, ତେବେ ମିଜାଜ୍‌ଟା ସେମିତି ସରକାରୀ ସରକାରୀ ରହିଯାଇଛି । ଅବସର ନେଇପାରିନି ।

ମନର ଭାବନାକୁ ଗୋପନ ରଖି ନିଧି ମହାନ୍ତି କହିଲେ- "ଠିକ୍ ଅଛି, ଯିବା ପାଇଁ ଯଦି ମନସ୍ଥ କରିଛୁ ଯାଅ । ପୁଅ ତ ଅଛି ରାଜଧାନୀରେ । ଜାଣିଥିବୁ ବୋହୂ ନିରୁପମା ଚାକିରି କରେ ଏନ୍‌ଜିଓରେ । ଟିକିଏ ନିରବ ରହି ପୁଣି କହିଲେ, ମୁଁ କ'ଣ

Digitized by PPRACHIN, SOA

କହୁଥିଲି କି, ଆଗ ହେମଲତା ଯାଉ ଆମ ଶିବରାଜ ଘରକୁ, ପିଲାଙ୍କ ଦେଖାଚାହାଁ କରି ମୁଠେ ରାନ୍ଧି ଦେବ । କିଛି ଗୋଟାଏ ବ୍ୟବସ୍ଥା ହେଲେ, ତମେମାନେ ପଛରେ ଯିବ । କ'ଣ କିଛି ଅସୁବିଧା ହେବ ?

ନିଧିନନାଙ୍କ ପ୍ରସ୍ତାବରେ ସାହସ ବାନ୍ଧିଥିବା ମନଟା ହଠାତ୍ ଝାଉଁଳି ଗଲା । ଇଏ କି କଥା । କେଶବା, କିଛି କହିବା ଆଗରୁ ହେମ ଉତ୍ତର ଦେଲା, ଅସମର୍ଥ ସ୍ୱାମୀ ଓ ଅବୋଧ ଝିଅଟାକୁ ଛାଡ଼ି ମୁଁ କେମିତି ଯିବି ନନା, କିଏ ସମ୍ଭାଳିବ ଏଠି ? ଜାଣିଛନ୍ତି ତ ଗୋଡ଼ ଦି'ଟାରେ ଦମ୍ଭ ଥିଲେ, ମୁଁ ବା କାହିଁକି ଗୋଡ଼ କାଢ଼ନ୍ତି ଘରୁ ?

ଟିକିଏ ଚିନ୍ତାକଲା ଭଳି ମୁହୂର୍ତ୍ତେ ଥିର ହେଇ ମହାନ୍ତିଏ କହିଲେ-ତା'ବି ଠିକ୍ କଥା- ମୁଁ ବୁଝିପାରୁଛି । ତା'ହେଲେ ଶିବ ସାଙ୍ଗରେ କଥାବାର୍ତ୍ତା କରେ- କ'ଣ ସେ କହୁଛି । ମୁଁ ତୋତେ ସଞ୍ଜବେଳକୁ ଜଣେଇବି ।

ଦୁହେଁ ଫେରିଆସିଲେ ବସାକୁ । ଆସିବା ବାଟରେ କେଶବା କହିଲା, ଇଏ ହେବନି ଲୋ ହେମ । ଆମ ଭାଗ୍ୟ କ'ଣ ଏଡ଼େ ସଲଖ । ମୁଁ ଅନୁମାନ କରୁଥିଲି- ଯେତେସବୁ ଅସୁବିଧା ମୋରି ଯୋଗୁଁ । କୁଆଡ଼ର ମୁଁ ହେଲିନି । ଦୀର୍ଘଶ୍ୱାସ ପକେଇଲା କେଶବା ।

"ଆଗୁଆ କାହିଁକି ଏମିତି ହତାଶିଆ ହେଇପଡୁଛ । ଠାକୁରେ ବାଟ ଦେଖେଇବେ ନିଶ୍ଚେ ।" ଶୁଖିଲା ମୁହଁକୁ ଚାହିଁ ସା'ନ୍ତାଣୀ ପଚାରିଲେ- କ'ଣ କହିଲା ନିଧି ? ରାଜି ହେଲା ?

"ସଞ୍ଜ ବେଳକୁ ହଁ ନାହିଁ ଜଣେଇବେ ।" ପୁଅ ସହିତ ପରାମର୍ଶ କରିବେ କହିଛନ୍ତି ।

ସତକୁ ସତ ସଞ୍ଜ ଗୋରୁ ଲେଉଟାଣି ବେଳକୁ ନିଧି ମହାନ୍ତିଏ ଖବର ପଠେଇଲେ । ହେମ ଗଲା ବୁଝି ଆସିବାକୁ । ମହାନ୍ତିଏ କହିଲେ- ପୁଅ ରାଜି ଅଛି । ତୋ ଅସୁବିଧା କଥାଶୁଣି କହିଲା, ସତକଥା ବାପା, ଛୁଆ ଝିଅକୁ ନେଇ ଏକୁଟିଆ କେମିତି ଚଳିବ ଅପାରଗଟା । ଆସନ୍ତୁ ସମସ୍ତେ, ଏଇଠି ରହିବେ, ମୁଁ ଅନ୍ୟ ବ୍ୟବସ୍ଥା କଲାଯାଏ । ଘରକାମ ରୋଷେଇ ସମ୍ଭାଳିବ ହେମ । କହିଲା ତ ଏମିତି । ତୁ କଣ କହୁଛୁ, ପାରିବୁ ତ ?"

ଆଜ୍ଞା ! କିଛି ଅସୁବିଧା ହେବନି । ମୁଁ ପିଲାଙ୍କ କଥା ବୁଝିବି, ଭରସା ଦେଉଛି ଆପଣଙ୍କୁ କୃତ୍ୟକୃତ୍ୟ ହୋଇ କହିଲା ହେମ । ନିଧିନନା କାଗଜରେ ଠିକଣା ଲେଖି ଠିକେଠିକେ ସବୁ ବୁଝେଇଦେଲେ । ହେମଲତା ଖୁସି ମନରେ ଫେରି, ସା'ନ୍ତାଣୀଙ୍କୁ ଜଣେଇଲା ।

Digitized by PPRACHIN, SOA

ହେମ ପ୍ରସ୍ତୁତ ହେଲା ସହର ଯିବା ପାଇଁ । କିବା ସଂସାର ତା'ର, କିବା ଘରକରଣା ଯେ, ସାଇତି ସଜାଡ଼ିବାକୁ ଦିନ ଦିନ ଲାଗିବ । ଦି'ଖଣ୍ଡ ଲୁଗାପଟା, ଚଳିବାକୁ ବାସନକୁସନ ଯାହା, ସଜାଡ଼ି ଦେଲା ରାତିକରେ । ସା'ନ୍ତାଣୀଙ୍କ ମନଟା ଓଜନିଆ ହୋଇଯାଇଥିଲା ସେମାନଙ୍କର ଘର ଛାଡ଼ିବା ନେଇ । ହେମ ଉଆସର ସବୁ ଖବର, ସବୁ କାମ ଟିକିନିଖି ବୁଝି, ତାଙ୍କୁ ଉଶ୍ୱାସ କରିଦେଇଥିଲା ଏଇ ବର୍ଷ କେଇଟାରେ । ବୟସର ଚାପ ବାଧୁ ନ ଥିଲା ତାଙ୍କୁ । ପୁଣି ଏକୁଟିଆ ସଂସାର ।

ନିଜ ଭାବାବେଗକୁ ଚାପି ରଖି ସା'ନ୍ତାଣୀ କହିଲେ, "ନୂଆ ଜାଗା, ନୂଆ ମଣିଷ, ସବୁ ନୂଆ, ଅପାରଗ ମଣିଷଟା ଘର ଚିହ୍ନି ପାରିବ ନ ପାରିବ । ମଧୁ ସୋଇଁ ଯାଉ ସାଙ୍ଗରେ, ଠିକଣା ଜାଗାରେ ପହଞ୍ଚେଇ ଦେଇ ଫେରିଆସିବ । ମୁଁ ବି ନିଶ୍ଚିନ୍ତ ହେବି ।"

ପରଦିନ ସକାଳୁ ସା'ନ୍ତାଣୀଙ୍କୁ ମୁଣ୍ଡିଆ ମାରି କେଶବା ଓ ହେମଲତା, ଲକ୍ଷ୍ମୀକୁ ଧରି ପାଦ ବଢ଼େଇଲେ, ଜୀବନ ବଞ୍ଚିବାର ଆଉ ଏକ ପର୍ଯ୍ୟାୟକୁ । ସାଙ୍ଗରେ ଗଲା ମଧୁ କୋଠିଆ । ହେମଲତା ହାତକୁ କିଛି ପଇସା ବଢ଼େଇଦେଇ ସାନ୍ତାଣୀ ଦେଇ କହିଲେ, ପାଖରେ ରଖିଥା, ଭଲମନ୍ଦ ରୋଗବିରାଗକୁ କାମ ଦେବ, ନୂଆ ଜାଗା କାହାକୁ ମାଗିବୁ ଦୁର୍ଦ୍ଦିନରେ । ଏତକ କହିଲା ବେଳକୁ ବୃଦ୍ଧାଙ୍କର କଣ୍ଠରୁଦ୍ଧ ହୋଇ ଆସିଥିଲା । ମାୟା ଲାଗିଯାଇଥିଲା ଗୋଟାଏ ପ୍ରକାରର । ତାଙ୍କର ଏକୁଟିଆ ଜୀବନକୁ ଚଳଚଞ୍ଚଳ କରିଦେଇଥିଲେ ତିନିଟା ମଣିଷ ସେମାନଙ୍କ ଅନାବିଳ ବ୍ୟବହାରରେ । ରାଧାରମଣଙ୍କ ଯାହା ଯେତେବେଳେ ବରାଦ ତାହା ଅବଶ୍ୟ ଘଟିବ । ମଣିଷ ତ ଖେଳନା ମାତ୍ର ।

କେଶବା ହେମଲତାର ଶଗଡ଼ ମୋଡ଼ ବୁଲିବା ଯାଏ ଚାହିଁଥିଲେ ସା'ନ୍ତାଣୀଏ ।

ତା'ପରେ ଘର ଭିତରକୁ ଆସି, ସିଧା ପଶିଗଲେ ଠାକୁର ଘରେ ।

ଘର, ଖଞ୍ଜା, ଅଗଣା, ବାଡ଼ି ସବୁ ଯିମିତି ଖାଁ ଖାଁ ଗୋଡ଼େଇଲା । ଯୋଉ ନିଛାଟିଆକୁ ସେଇ ନିଛାଟିଆ ଜୀବନ । ଦି'ପୁଅ ଦି'ବୋହୂ ପୁଞ୍ଜେ ନାତିନାତୁଣୀର ଘର ଇଏ । ଅଥଚ ସଭିଏଁ ବାହାରେ । ନିଜ ନିଜ ଜୀବନ ଜିଉଁଛନ୍ତି । ନୂଆ ବିଚାର, ନୂଆ ଦୃଷ୍ଟି ସେମାନଙ୍କର । ବେଳ ନାହିଁ କାହାକୁ ଭିଟାମାଟି, ମା', ଠାକୁରଙ୍କ କଥା ବୁଝିବାକୁ । ଡାକୁଛନ୍ତି ପାଖକୁ, ହେଲେ ସିଏ ଚାହୁଁନାହାନ୍ତି ଯିବାକୁ । ସେଠା ଜୀବନ ଅଲଗା । ଏଠି ସେ ଆରେଇ ଗଲେଣି । ଆଉ କେତେଦିନର ଜୀବନ ତାଙ୍କର । ଜମିବାଡ଼ି, ତୋଟାପାଟ, ରାଧାରମଣ, ହଳିଆ କୋଠିଆଙ୍କ ଜଞ୍ଜାଳ ଭିତରେ ଦିନ କଟି ଯାଉଥିଲେବି, ଦି'ପହର ହେଲେ, ସଞ୍ଜ ଆରତି ସରିଲେ ଭାରି ଉଦାସ ଲାଗେ । ସମସ୍ତେ ମନେପଡ଼ନ୍ତି । ତିଆଡ଼ିଏ ଥିଲେ, କଚେରି ଚାଲୁଥିଲା, ଗହଳଚହଳର ଆରବା ଭିତରେ ସମୟ ଜଣାପଡୁ ନ ଥିଲା । ସେ ଗଲାପରେ ସବୁ ଶୂନ୍‌ଶାନ୍ ।

Digitized by PPRACHIN, SOA

ଏଇ କେଇଟା ବର୍ଷ ଭିତରେ ପ୍ରାଣୀ ତିନିଟା ତାଙ୍କ ଜୀବନକୁ ସଚଳ ଓ ସରସ କରିଦେଇଥିଲେ ଯେମିତି । ବିଶେଷକରି ହେମ । ଜନ୍ମକଲା ଝିଅ ବି ତା'ସରି ହେଇପାରିବନି । ଦୀର୍ଘଶ୍ୱାସ ପକେଇଲେ ସା'ନ୍ତାଣୀ । ଠାକୁରେ ନିଷ୍ଠୁର । ଏଇ ନିଶ୍ଚିନ୍ତ ଜୀବନକୁ ସହିପାରିଲେନି ।

ଛାଡ଼ । ନିଜକୁ ବୁଝେଇଲେ ସା'ନ୍ତାଣୀ । ଆଶ୍ୱାସନା ଦେଲେ, ଯିଏ ତାଙ୍କର ନୁହେଁ, ଯାହା ତାଙ୍କ ପାଇଁ ନୁହେଁ, ଅଥଚ ସେଇ 'ମିଛ ସୁଖ' ପାଇଁ ଏତେ ଭାବନା କାହିଁକି, ଦୁଃଖ କାହିଁକି ? ଦଶଜଣ ହୋଇ ସମସ୍ତେ ଯାଇଛନ୍ତି, ସେ ବି ଯିବେ, ସଂସାରଟା ଏମିତି ଚାଲେ, ଏଥର ଭାବନା ଭିତରୁ ନିଜକୁ ମୁକୁଳେଇ ଠାକୁର ସେବାରେ ମନଦେଲେ ।

କେଶବା ଆଉ ହେମଲତା ସହିତ କୁନିଝିଅ ଲକ୍ଷ୍ମୀ ବସ୍‌ରେ ବସି ଭାବୁଥିଲେ ନିଜ ନିଜ ବାଟରେ । ଭାବନା ବାଟସାରା ସାଥି ଛାଡ଼ି ନ ଥିଲା । ଅନିଶ୍ଚିତତା ଆଉ ସଂଶୟର ବଳୟ ଭିତରେ ଥାଇ ମଧ୍ୟ ଆଶା ଆଉ ସ୍ୱପ୍ନମାନେ ମୁହଁ ଲୁଚାଇ ଦେଇନଥିଲେ । ବସ୍‌ର ଦୋହଲା ସହିତ ତାଳଦେଇ ଭାବନା ସ୍ଥିର ନ ହେଇ ଦୋହଲି ଯାଉଥିଲା । ସ୍ୱପ୍ନମାନେ ଖସିଯାଉଥିଲେ ମଝିରେ ମଝିରେ । ତାକୁ ଧରି ରଖିବା ପାଇଁ ହାତ ବଢ଼ଉଥିଲେବି ମଣିଷ କ'ଣ କେବେ ବି ପରିସ୍ଥିତି ଆଗରେ ହାର ମାନିପାରେ ? ? ତାର ସୀମା ତ ଆକାଶ । ଛୁଇଁପାରୁ କି ନ ପାରୁ ।

ରାଜଧାନୀରେ କେଶବା ଆଉ ହେମଲତାର ଜୀବନସଂଘର୍ଷ ଆଉ ପ୍ରକାରେ ଗଢ଼ିଚାଲିଲା । କିଛିଟା ସହଜ ମନରେ ହିଁ ଶିବବ୍ରତ ଆଉ ନିରୁପମା କେଶବା ପରିବାରକୁ ତାଙ୍କ ସରକାରୀ କ୍ୱାର୍ଟରରେ ଆଶ୍ରା ଦେଇଥିଲେ । ବାହାରେ ଥିବା ଗ୍ୟାରେଜ ଘରଟି ଥିଲା କେଶବା ହେମଲତାର ଆଶ୍ରୟସ୍ଥଳି । ଚଳିବାକୁ ବିଶେଷ ସୁବିଧା ନ ଥିବା ସତ୍ତ୍ୱେ ଚଳେଇନେବାକୁ ପଡୁଥିଲା । ବଞ୍ଚିବାର ରାହା ଖୋଜୁଥିବା ମଣିଷ ପାଇଁ ଭଲମନ୍ଦର ବାଛବିଚାର ଆଉ କ'ଣ ? ଯେକୌଣସି ପ୍ରକାରେ ସମୟକୁ ପାରି କରିନେବା କଥା, ମୁଣ୍ଡ ଉପରେ ଚାଖଣ୍ଡେ ଛାତ ଖରାବର୍ଷା କାକରକୁ । ଗୋଟାଏ ଅନିଶ୍ଚିତ ଅଦେଖା 'ସୁଦିନ'ର ଅପେକ୍ଷାରେ ବୋଲି ବି ଭାବିବା ପାଇଁ ସାହସ ହୁଏନା । ତଥାପି ତାକୁ 'ଆଶ୍ରୟ' କହିବାକୁ ହୁଏ । ସଂସାରରେ ଆହୁରି ଏମିତି ମଣିଷ ଅଛନ୍ତି ଯୋଉମାନେ ରାସ୍ତାକଡ଼ରେ ହିଁ ଜୀବନ କଟାନ୍ତି । କାହା ବାରଣ୍ଡା କି ଓଳିତଳେ, ଖୋଲା ଛାତ କି ଶିଡ଼ିପାହାଚ ତଳେ କାଠ କେବିନ, ନ ହେଲେ ଭଙ୍ଗା ରେଳଡବା, କି ପରିତ୍ୟକ୍ତ ଘର ଭିତରେ ସଂସାର ପାତି, ରାତିରେ ନିଦ ନାଁରେ ମୁହୂର୍ତ୍ତେ କ୍ଳାନ୍ତି କଟେଇ ପୁଣି ନୂଆ ସକାଳର ଆଲୁଅରେ ପେଟପାଇଁ ଦାନା ଗୋଟେଇବାକୁ ପ୍ରସ୍ତୁତ କରନ୍ତି ନିଜକୁ ।

Digitized by PPRACHIN, SOA

ସହରକୁ ଆସି କେଶବା ଲକ୍ଷ୍ୟ କରିଛି ଏଭଳି ଅସହାୟ ମଣିଷଙ୍କୁ । ଯୋଉମାନଙ୍କର କୌଣସି ଠିକଣା ନାହିଁ କି ପରିଚୟ ନାହିଁ । ତଥାପି ଜୀବନ ବଞ୍ଚିଛି ଓ ବଞ୍ଚିବାର ବାଟ ଖୋଜାଚାଲିଛି । ସେ ନିଜେ ନିଜକୁ ସେଇମାନଙ୍କ ଭିତରୁ ଜଣେ ବୋଲି ଧରିନେଇଛି । ସେମାନଙ୍କ ସହିତ ତୁଳନା କଲାବେଳେ, ତାକୁ ମନେ ହେଇଛି ସେ ଖୁବ୍ ଭଲରେ ହିଁ ଅଛି ।

ପ୍ରଥମ ଦି'ମାସ କହିବାକୁ ଗଲେ ଭଲରେ ହିଁ କଟିଲା । ଲକ୍ଷ୍ମୀ ତା'ର ପୁରୁଣା ସ୍ୱାସ୍ଥ୍ୟ ଧୀରେ ଧୀରେ ଫେରି ପାଇଲା । ଶିବବାବୁଙ୍କ ଦୁଇ ପୁଅଝିଅ । ସାନୁ ଆଉ ରାନୁ । ସ୍କୁଲ ଯିବା ବୟସ । ବୟସରେ ଲକ୍ଷ୍ମୀ ଛୋଟ ହେଲେ ବି ସାନୁ ରାନୁଙ୍କର ଖେଳସାଥୀ । ଖେଳିଲା ବେଳେ ଭୁଲିଯାନ୍ତି ତିନିହେଁ ନିଜ ନିଜର ପରିଚୟ । ହେମଲତା ହାତରେ ଘର ଓ ପିଲାଙ୍କର ଦାୟିତ୍ୱ ଦେଇ ନିରୁପମା କିଛିଟା ଆଶ୍ୱସ୍ତ ହେଇଥିଲେ ନିଶ୍ଚୟ । ନିରୁପମା ତୁଳନାରେ ଶିବବାବୁ ଟିକିଏ ଉଦାରମନର ମଣିଷ । ନିଧି ମହାନ୍ତିଙ୍କଠାରୁ ଅନେକ ଗୁଣରେ ଭଲ । ଏତେ ସ୍ୱାର୍ଥୀ ନୁହନ୍ତି । ହେଲେ କେଶବା ମନରେ ତ ଆଶ୍ୱସ୍ତି ନ ଥିଲା । ତାକୁ ତା'ର ଅକ୍ଷମପଣ ଗୋଡ଼େଇ ଚାଲିଥିଲା । ମୂଳରୁ, ରହାସପୁର ଛାଡ଼ିବା ପରଠୁ, ତା'ମନରେ କେବେ ନିଶ୍ଚିନ୍ତ ସୁଖ ନାହିଁ । ନିଜକୁ ଅନ୍ୟର ବୋଝ ବୋଲି ଭାବିଲା ବେଳକୁ ମାଡ଼ିମାଡ଼ି ପଡ଼ିଛି । ତା'ର ସ୍ୱାଭିମାନୀ ପୁରୁଷମନ ଗ୍ରହଣ କରିପାରିନି ଅନ୍ୟର ଦୟାକୁ । ଯଦିଓ ସେ ସବୁବେଳେ ଚେଷ୍ଟା କରିଛି ସାଧ ମତେ ଘର ଭିତରର କାମରେ ସାହାଯ୍ୟ କରିବାକୁ ।

ହେମ ଠିକ୍ ବୁଝିପାରୁଥିଲା କେଶବାର ମନ କଥା । ଦିନ ତ କଟିଯାଉଥିଲା ଯେମିତି ସେମିତି ଚିନ୍ତା ନ ଥିଲା । ଭଲ ନ ହେଲେ ବି ଜୀବନ ବଞ୍ଚିବାକୁ ଭାତ, ଲୁଗା ମିଳିଯାଉଥିଲା, ହେଲେ କାଲିର କଥା ଭାବିଲେ ଛାତିରେ ହସ କୁଳାଉ ନ ଥିଲା । ଲକ୍ଷ୍ମୀ ପାଇଁ ଦେଖିଥିବା ସ୍ୱପ୍ନ କୁଆଡ଼େ ହଜିଯାଇଥିଲା । କଳ୍ପନା ବି କରିପାରୁ ନ ଥିଲା ଲକ୍ଷ୍ମୀ ପାଠ ପଢ଼ିପାରିବ, ସ୍ୱପ୍ନ ସତ ହେବ । ମନରେ ଶୂନ୍ୟତା ଭରି ଆସିଲେ ମା' ସା'ନ୍ତାଣୀ ମନେପଡ଼ନ୍ତି ହେମର ।

ଶିବବାବୁଙ୍କ ସଂସାର ଭିତରେ ହେମ ନିଜକୁ ଆରେଇ ନେଇଥିଲା । ଯଦିଓ ନିରୁପମା ଆଉ ଚାରିଜଣ ସାଧାରଣ ଗୃହିଣୀ ଭଳି ନିଗୁଡା ଘରଣୀଟିଏ ହିଁ ଥିଲେ । ସବୁଥିରେ ହିସାବ ଓ ମାପ । ତାଙ୍କ ପିଲାଏ ଭଲ ଖାଇବେ, ଭଲ ପିନ୍ଧିବେ, ପଢ଼ିବେ, ଶୋଇବେ । କାରଣ ସେମାନେ ବଡ଼ ଘର, ଥିଲାବାଲା । ସବୁଥିକି ସତର୍କ ଦୃଷ୍ଟି । ସନ୍ଦେହୀ ଆଖି । ହେମର ମଧ୍ୟ ଏସବୁ ପ୍ରତି ଦୃଷ୍ଟି ଥାଏ । ଯିମିତି ତାକୁ ଏଥିପାଇଁ ପଦେ ଶୁଣିବାକୁ ନ ପଡ଼େ । ନିରୁପମା ବି ଅଫିସ୍ ଯିବା ପୂର୍ବରୁ ସବୁ କହିପୋଛି, ବରାଦ ଦେଇ, ତାଗିଦା କରି ଯାଇଥିବେ ।

Digitized by PPRACHIN, SOA

ପିଲାଙ୍କୁ ଅଣହେଲା କଲେ ସେ ସହିପାରିବେନି ।

ପିଲାଙ୍କର କିନ୍ତୁ କୌଣସି କଥାରେ ଅଭିଯୋଗ କି ଆପତ୍ତି ନ ଥାଏ । ହେମ ମାଉସୀ ସମସ୍ତଙ୍କର ପ୍ରିୟ । ବୋଉ ଭଳିଆ ସେ କେବେ ବି ଚିଡ଼୍‌ଚିଡ଼୍ ହୁଏନି କି ଶାସନ କରେନି । ଭଲ ଜିନିଷ ତିଆରି କରି ଖାଇବାକୁ ଦିଏ । ହେମ ଆଖିରେ ପିଲାଏ ତ ଈଶ୍ୱରଙ୍କ ଦାନ । ପର ଆପଣା ଭାବ ନାହିଁ ।

ଛୁଟି ଦିନମାନଙ୍କରେ ନିରୁପମାଙ୍କ ମିଜାଜଟା ମାଲିକାଣୀ ମାଲିକାଣୀ ମନେହୁଏ । ସେଦିନମାନଙ୍କରେ ଅନେକ କାମ ଅନେକ ବରାଦ ଜମାହୋଇ ରହିଥାଏ ହେମ ପାଇଁ । ହେମର ସେଥିପାଇଁ ଶୋଚନା କି ଅଭିଯୋଗ ନାହିଁ । ନିରଳସ, ନିରଭିମାନ ଭାବେ ଗୃହକର୍ତ୍ତ୍ରୀଙ୍କ ଆଦେଶ ପାଳନ କରେ ।

ସେଦିନ ରବିବାର ଥାଏ । ଲୁଗାପଟା ଧୋଇ, ପରିବା କାଟିବାକୁ ବସିଥିଲା ହେମ । ନିରୁପମା ସାପ୍ତାହିକ ସଉଦା ତଦାରଖ କରୁ କରୁ ହେମକୁ ଲକ୍ଷ୍ୟକରି କହିଲେ- ଗୋଟିଏ କଥା କୁହନ୍ତି ହେମ, କିଛି ମନେ କରିବୁନି, ଅନେକଦିନ ହେଲା ଭାବୁଛି ।

ପରିବା କାଟୁକାଟୁ ହାତ ଅଟକିଗଲା ପନିକିରେ । କି କଥାରେ ବାବା । କ'ଣ କହିବାକୁ ଚାହୁଁଛନ୍ତି ନୂଆବୋଉ । କିଛି ଭୁଲ ହେଇଗଲା କି ତା'ର । ଅନେକ କିଛି କଳ୍ପନା ମନକୁ ମାଡ଼ିବସିଲା ମୁହୂର୍ତ୍ତକରେ । ଛାତି ଧଡ଼୍‌ପଡ଼୍ ହେଲା, ଝାଳେଇ ଗଲାବି । ସବୁବେଳେ ତ ଗୋଟାଏ ଭୟ, ଦାନାପାଣି ଉଠିଯିବ କି ଆଉ ! ଶୂନ୍ୟ ଦୃଷ୍ଟିରେ ଆଶ୍ରୟଦାତ୍ରୀଙ୍କ ମୁହଁକୁ ବିକଳ ହେଇ ଚାହିଁଲା, ହେ ପ୍ରଭୁ ! ପରାଧୀନ ମଣିଷର ଏମିତି ଛଟପଟର ଜୀବନ ।

ମୁଁ କହୁଥିଲି, କେଶବା କଥା, ଚାରିମାସ ହେଇଗଲାଣି ତମେମାନେ ଆସିବା । ଖାଲି ବେକାରଟାରେ ବସିଛି କେଶବା, ପୁରୁଷ ପିଲା, ଭଲ ଲାଗୁ ନ ଥିବ । କିଛି ଗୋଟେ ତ କରିପାରନ୍ତା । ହାତକୁ ଦି'ପଇସା ଆସନ୍ତା । ସମୟ କଟନ୍ତା ଭଲରେ । କେବେ ଭାବିଛି କି ସେ ଏ ବିଷୟରେ ?

ଶୁଣୁଶୁଣୁ ହେମକୁ ଉଶ୍ୱାସ ଲାଗିଗଲା । ଓହୋ, ମନେମନେ ଠାକୁରଙ୍କୁ ହାତଯୋଡ଼ି କହିଲା ତମେ ସଭିଙ୍କୁ ବାଟ ଦେଖାଅ ଠାକୁରେ, ଇଏ ବି ଗୋଟାଏ ବାଟ । ନୂଆବୋଉଙ୍କ କଥାକୁ ମନରେ ଅନ୍ୟଥା ନ ଭାବି କହିଲା- "ମଣିଷଟା ସବୁବେଳେ ସେଇକଥା ଘାରି ହେଉଛନ୍ତି । ନୂଆବୋଉ କ'ଣ କରିପାରିବେ ଅସମର୍ଥ ଲୋକ । ସବୁ କାମକୁ ତ ପାରିବେନି । ଠିକଣା କାମଟିଏ ଜୁଟିଲେ ନିଶ୍ଚୟ କରିପାରନ୍ତେ । ପୁଞ୍ଜି ବି ତ ନାହିଁ ହାତରେ ।"

"ତା' ଠିକ୍ ଯେ, ମନକଲେ ନିଶ୍ଚୟ ଉପାୟ ଦିଶନ୍ତା । ବସି ରହିଲେ ହାତପାଖକୁ କାମ ଆସିବନି ।"

Digitized by PPRACHIN, SOA

ହେମ ବୁଝିଲା କଥାର ମର୍ମ । ବୋଝ ଲାଗିଲାଣି । ଲାଗିବା କଥା ବି । ଖାଉନ୍ଦାଣୀଙ୍କ କଥାକୁ ଅଭିମାନ କଲାନି ହେମ । ଭାବିଲା, କେଶବାକୁ କହିବ ଏକଥା । ଏମିତିରେ ତ ମଣିଷଟା ନିଜକୁ ଅସମର୍ଥ ମଣି କୋତରା ହେଲେଣି । ମନର ଉଣାପଣ ନେଇ ମନଖୁସିରେ ଦି' ପଦ କଥା କହିପାରୁଛନ୍ତି ତା'ସାଥିରେ । ଏଣେ ଲକ୍ଷ୍ମୀଟା ଝାଉଁଳି ଗଲାଣି । ଛନଛନିଆ ହେଇ ଉଠୁରି ଆସୁଥିଲା ନୂଆ ଅଙ୍କୁର । ଏବେ ହଳଦିଆ ପଡ଼ି ଆସିଲାଣି ।

ସାନବାବୁ, ରାନୁମା ସ୍କୁଲ ଜାମା ପିନ୍ଧି ପିଠିରେ ବ୍ୟାଗ୍ ଓହଳେଇ ସ୍କୁଲ ବସ୍‌ରେ ଗଲାବେଳେ, ବିକଳ ହେଇ ଚାହୁଁଛି । କେବେ କେବେ ତା'ସହିତ ଛକ ଉପରକୁ ଯାଉଛି ବସ୍‌ରେ ବସେଇଦେବାକୁ, କିଛି ସିନା କହିପାରୁନି । ହେଲେ ତା' ମା' ମନ ଠିକ୍ ଠଉରେଇ ପାରୁଛି । ସେମାନେ ଭଲ ଖାଉଛନ୍ତି, ଭଲ ପିନ୍ଧି ବୁଲିବାକୁ ଯାଉଛନ୍ତି ବାପାଙ୍କ ସଙ୍ଗେ । ପିଲାମନ, ଭାବିବା ତ ସ୍ୱାଭାବିକ । ତାର କାହିଁକି ନାହିଁ ଏସବୁ ସୁବିଧା । ସେ ବି ତ ସେମାନଙ୍କ ଭଳି ପଢ଼ନ୍ତା, ସ୍କୁଲ ଯା'ନ୍ତା ।

ଦିନେ ଦିନେ ପଚାରେ ବି "ମୁଁ ଆଉ ସ୍କୁଲ ଯାଇ ପାଠ ପଢ଼ିବିନି ବୋଉ ?" କ'ଣ ଉତ୍ତର ଦେବ ସେ ଝିଅକୁ । ମନ ବୁଝେଇବାକୁ ସିନା କହିଦେଲା, "କାହିଁକି ପଢ଼ିପାରିବୁନି, ତୋର ଯୋଉସବୁ ବହି ଅଛି ତାକୁ ପଢୁନୁ ।"

ସେ ସବୁ ମୁଁ ପଢ଼ିସାରିଛି । ରାନୁଅପା ଭଳି ନୂଆ ପାଠ ବହି ହେଲେ ସିନା ପଢ଼ନ୍ତି । କି ସୁନ୍ଦର ମଲାଟ ଲଗା ହେଇଛି ସେ ବହିରେ... ଲୋଭିଲା ଆଖିରେ ବୋଉକୁ ଚାହେଁ ଲକ୍ଷ୍ମୀ । ବୁଝା ଅବୁଝା ବୟସ ଝିଅଟାର । ହେମ ଭାବିପାରେନା, କିମିତି ବୁଝେଇବ ନିଜ ପରିସ୍ଥିତି କଥା । ମିଛ ଆଶ୍ୱାସନା ତାକୁ କ'ଣ ଆଶ୍ୱସ୍ତ କରିବ । ମନ ତା'ର ପକ୍ଷୀ ଭଳି ଡେଣା ମେଲୁଛି ଆକାଶ ଆଡ଼କୁ । ରାନୁମା ପଢ଼ି ବସିଲା ବେଳେ ବାଆଁରେଇ ହେଇ ତାଙ୍କ ପାଖରେ ଯାଇ ବସେ, ଥୁଆ ହେଇଥିବା ବହିମାନଙ୍କୁ ଛୁଏଁ, ଆଉଁଶେ, ଗାଲରେ ଲଗାଏ । ମଝିରେ ମଝିରେ କ'ଣ ସବୁ ପଚାରେ ରାନୁମା'କୁ । ହେଲେ ନୂଆବୋଉଙ୍କ ଆଖିରେ ପଡ଼ିଲେ, ସେ ବରଦାସ୍ତ କରିପାରନ୍ତିନି । କ'ଣ କ'ଣ କାମ ଦେଖେଇ ତାକୁ ସେଠୁ ଉଠେଇ ଦିଅନ୍ତି, ଛୋଟ ଛୋଟ କାମର ବାହାନା ଦେଖେଇ ବାହାରକୁ ପଠେଇ ଦିଅନ୍ତି । ମନ କଷ୍ଟରେ ହିଁ ଉଠେ ଝିଅଟା । ହେମ କାମ କରୁ କରୁ ଦେଖେ । ବୁଝିପାରେ ଲକ୍ଷ୍ମୀର ମନର ଭାବନା । କେବେ କେବେ ଲକ୍ଷ୍ମୀ କାନ୍ଦେ ଲୁଚେଇ ଲୁଚେଇ । ସବୁ ବୁଝେ ସେ କଣ' ବା କରିପାରିବ । ସେ ଯେ ଅସହାୟ ମା'ଟିଏ । ଲକ୍ଷ୍ମୀ ମଧ୍ୟ ହତଭାଗିନୀ, ତା' ପେଟରୁ ଜନ୍ମ ହୋଇଛି । କିଛି ସୁଖସୁବିଧା ସେ କରିପାରୁନି ଝିଅଟା ପାଇଁ । ଅଥଚ ବଞ୍ଚିଛି କେବଳ ତାରି ପାଇଁ ।

Digitized by PPRACHIN, SOA

ମନେପଡ଼ିଲା ଲକ୍ଷ୍ମୀ ଜନ୍ମବେଳର କଥା । "ଭାରି ସୁନ୍ଦରଟିଏ ହୋଇଥିଲା । ଯିଏ ତାକୁ ଦେଖୁଥିଲା, ଖୁସିରେ ଫାଟି ପଡୁଥିଲା । କହୁଥିଲା, ଗରିବ ଘରେ ଏଭଳି ଝିଅ ଜନ୍ମ ହେଲା କାହିଁକି କେଜାଣି । ମହାଲକ୍ଷ୍ମୀ ଆସିଛନ୍ତି । ଦେଖୁନ ତା'ଗାଲରେ କିମିତି କଳାଜାଇ ଗାଢ଼ ହୋଇ ଫୁଟକୁଛି । ପୁଣି ବାଁ ଗାଲରେ । ବୁଝିଲୁ ହେମ, ଏଇ ଆଣିଦେବ ତୋ' ପାଇଁ ଲକ୍ଷ୍ମୀଙ୍କୁ । ଅବଶ୍ୟ ପୁଅଟିଏ ହୋଇଥିଲେ ବାପ କାନ୍ଧକୁ କାନ୍ଧ ମିଶେଇଥାନ୍ତା । ତଥାପି... ସାକ୍ଷାତ୍ ଲକ୍ଷ୍ମୀ ।" କାହିଁ ? ଏବେତ ଆହୁରି ସ୍ପଷ୍ଟ ହୋଇ କଳାଜାଇଟା ଫୁଟକୁଛି ଗୋରାଗାଲରେ । ସମସ୍ତେ ଲକ୍ଷ୍ମୀ ବୋଲି ଡାକୁ ଡାକୁ ସେଇ ନାଁଟି ହିଁ ରହିଗଲା । ହେମର ଭାବନା ଭାସିଯାଏ, ମନେ ପଡ଼ିଯାଏ ଲକ୍ଷ୍ମୀ ଜନ୍ମବେଳର ଦୁର୍ଘଟଣା, ଅଘଟଣ ସବୁ । କେଶବା ଜୀବନର ଗୋଟାଏ ମୋଡ଼ । ଜୀବନର ଗତିପଥ ହିଁ ବଦଳିଗଲା । ମହାଲକ୍ଷ୍ମୀ ଯିମିତି ରୁଷ୍ଟ ହୋଇ ମୁହଁ ଆଡ଼େଇନେଲେ । ବାରଦୁଆର ଶୁଣ୍ଢିପିଣ୍ଡା ହେବାକୁ ଯୋଗ ଥିଲା । ମୁଠେ ଭାତ ପାଇଁ କି କି କଷ୍ଟ ସହ୍ୟ ନ କରିଛି ମଣିଷ । ଯାରି ନାଁ ବୋଧେ ଜୀବନ । ମେହେନତ ମଣିଷର ଜୀବନ ।

ଅଥଚ ଗଣକଙ୍କ ସବୁ ଗଣନା ଭୁଲ ହୋଇଗଲା । ଗରିବ ଘର ଝିଅମାନଙ୍କ ପାଇଁ ଗ୍ରହନକ୍ଷତ୍ରଙ୍କ ଗତିବିଧି ଏମିତି ବଦଳିଯାଏ । ସେ ରାଜଯୋଗ ହେଉକି ବୃହସ୍ପତି ଯୋଗ ସବୁ ଶୁଭ ଲଗ୍ନ ଅଶୁଭ ପାଲଟିଯାଏ । ଭାଗ୍ୟ ବିରୋଧରେ ଯୁଦ୍ଧ ଘୋଷଣା କରିବାର ଶକ୍ତି କାହିଁ ମେହନତ ମଣିଷର । ସେସବୁର ବିଚାର, ବଡ଼ଲୋକ, ଥିଲାବାଲାଙ୍କ ପାଇଁ । ଆହାପଣରେ ଓଦା ହୋଇଯାଉଥିଲା ହେମଲତାର ଆଖି । ଆଗକୁ କିଛି ଭାବିବାକୁ ଭୟ ଲାଗୁଥିଲା ତାକୁ । ଯିମିତି ଚାଲିଛି ଚାଲିଥାଉ ସେମିତି । ଆଉ କିଛି ଆଶା ରଖିବିନି ।

ତାକୁ ଏମିତି ଚିନ୍ତିତ ହେବା ଦେଖି କେଶବା ପଚାରେ ବ୍ୟସ୍ତ ହୋଇ; ଏମିତି କାହିଁକି ମନମାରି ବସିଛୁ ଯେ, କିଏ କିଛି କହିଲା ନା ଅସୁସ୍ଥ ଲାଗୁଛି ଦିହ ? ମୁଁ ତ ଗୋଟାଏ ମଣିଷ ଯେ, ତୋତେ କିଛି ସାହାଯ୍ୟ କରିପାରୁନି... ହେମ ମନର ଭାବନାକୁ ମନରେ ରଖି ଚଟାପଟ ଉତ୍ତର ଦିଏ, କିଏ କାହିଁକି କ'ଣ କହିବ ମ, ଏଇ କମଳା ମା' କଥା ଭାବୁଥିଲୁ... । କମଳା ମା' ଏଇ ପାଖ ବସ୍ତିରେ ରୁହେ । ସିଏ ବି ଜଣେ କାମବାଲୀ । ଏଇ ଆଖପାଖ କ୍ୱାର୍ଟରମାନଙ୍କରେ କାମ କରେ । ଏକୁଟିଆ ମଣିଷ । ନିଜ ପେଟ କଥା ନିଜେ ବୁଝେ । ଭଲମନର ସ୍ତ୍ରୀ ଲୋକଟିଏ । ଏମିତି ଯା'ଆସ ଭିତରେ ହେମର ପରିଚୟ ହୋଇଥିଲା କମଳା ମା' ସହିତ । ସୁଖଦୁଃଖ ବାଣ୍ଟୁବାଣ୍ଟୁ ହେମ କଥା ଛଳରେ ନିଜ ଅସୁବିଧା କଥା କହିଥିଲା । ସେ ଆଶ୍ରାଟିଏ ଖୋଜୁଛି ଭଡ଼ାଘର । ବଖୁରିଏ ହେଲେ ବି ଚଳିବ । ବେଶି ପଇସା ତ ଦେଇପାରିବାର ଶକ୍ତି ନାହିଁ । ଏ'ଯାଏ ଶିବବାବୁ ଦରମା ଟଙ୍କା ତା' ହାତକୁ ଦେଇ ନାହାନ୍ତି । ସେ ବି ମାଗିପାରୁନି- ତିନିଜଣଙ୍କ

Digitized by PPRACHIN, SOA

ବୋଝ ତାଙ୍କ ଉପରେ ଯେତେବେଳେ । କମଳା ମା' କୁହେ, ଠିକ୍ କଥା, ମାଗିବାକୁ ମାଡ଼ିପଡ଼ିବ । "ଆଉ ସେଇଥିପାଇଁ ଅଲଗା ଘର ଖଣ୍ଡେ ଖୋଜୁଛି, ନିଜ ଦୁଃଖସୁଖରେ, ନିଜେ ଚଳିବାକୁ ।" କେଶବା ମଧ୍ୟ ସ୍ୱାଧୀନ ଭାବେ କିଛି କାମ କରିବାକୁ ସାହସ କରିପାରୁନି, କମଳା ମା'ର ମନ ତରଳି ଗଲା ହେମର କଷ୍ଟ କଥା ଶୁଣି । ଭରସା ଦେଲା ସେ ନିଶ୍ଚୟ ଚେଷ୍ଟା କରି ଖୋଜିବ ।" କମଳା ମା'ର କଥାରେ କୋଉଠି ଯିମିତି ବିଶ୍ୱାସ ଟିକିଏ ଥିଲା । ସେଇଥିପାଇଁ ହେମକୁ ବି ହାଲୁକା ଲାଗିଥିଲା ଓ କେଶବା ଆଗରେ ଦିନେ କହିଥିଲା ମଧ୍ୟ ।

ତାରି କଥା ଚିନ୍ତା କରୁଛି ହେମ; ସପ୍ତାହକରେ ଖବର ଜଣେଇବ ବୋଲି କହିଥିଲା ତ... କେଶବା କିଛି ନ କହି କେବଳ ଚାହିଁ ରହିଲା ହେମ ମୁହଁକୁ ।

ଏଇ ତାର ସ୍ତ୍ରୀ ଯିଏ ତା' ଜୀବନର ଚଲାବାଟରେ ସାଥି ହେଉଆସିଛି ଏତେ ଦିନଧରି । ସୁଖ-ଦୁଃଖ, ମାନ-ଅପମାନ, ଅଭିମାନ କିଛିକୁ ଧରି ରଖିନି ନିଜ ଭିତରେ । ତା'ର ଦାବି ବୋଲି ବି କିଛି ନାହିଁ । ପିଲାଟିଦିନୁ ବାପ-ମାଙ୍କୁ ହରେଇ, କକେଇ-ଖୁଡ଼ୀଙ୍କ ପାଖରେ ମଣିଷ ହେଇଥିବା ହେମଲତା ଆଉ ଦଶଜଣଙ୍କ ଭାଗରୁ ମୁଠେ ମୁଠେ ଭାତ ଖାଇ ଗଢ଼ି ହେଇଛି ତା' ଦିହ-ମନ । ସେ ଶିଖିଛି ଦଶଜଣଙ୍କ ଗହଣରେ କିମିତି ଚଳିବାକୁ ହୁଏ । ଦାବି ଅଧିକାର, କି ଇଚ୍ଛା ଭଳି ଶବ୍ଦ ସହିତ ତା'ର ତେଣୁ ପରିଚୟ ନାହିଁ ।

ସେ ତାକୁ ଘରକୁ ଆଣିଲା ବେଳେ ତା' କକେଇ ଖୁଡ଼ୀ କହିଥିଲେ, "ବାପ-ମା' ଛେଉଣ୍ଡ ଝିଅଟା ତମକୁ ଲାଗିଲା ବାପ, ତାକୁ କେବେ ହତାଶ କରିବନି । ତାକୁ ମୁଁ ସୁଖଭାତ ଖୁଆଇ ବଢ଼େଇନି ଦିନେ । ଆମର ତ ଜଞ୍ଜାଳିଆ ଘର, ଟାଣଟୁଣ ଜୀବନ, ଆଉ କିଛି ଦେଇପାରୁନୁ । ହେଲେ ଜାଣ, ତମକୁ ସୁନାମୁଣ୍ଡାଟିଏ ଦେଉଛୁ । ସୁଖୀ ହେବ ତମେ ।" ଶାଢ଼ି ଖଣ୍ଡେ ପିନ୍ଧେଇ ଫୁଲପତ୍ରରେ ଟେକି ଦେଇଥିଲେ ପନ୍ଦରବର୍ଷର ହେମଲତାକୁ ତା'ହାତରେ ।

ସେଇଦିନୁ ଆଜିଯାକେ କେବେ ଦିନେ କୌଣସି କଥାରେ କିଛି ଆପତ୍ତି ନାହିଁ ହେମର । ସୁଖ ତ ସେ ଦେଇପାରିନି କେବେ ତଥାପି ଦୁଃଖରେ ଅଛି ବୋଲି ସେ କେବେ ଜଣେଇ ଦେଇନି କାହାକୁ । ଦିନେ କେବେ ଅଳି କରିନି କୌଣସି ପଦାର୍ଥ ପାଇଁ । ବରଂ ମା'ଭଳି, ଭଉଣୀ ଭଳି, ସେବା ଯତ୍ନ, ସ୍ନେହ ଦେଇ ତା' ହତାଶିଆ ଜୀବନକୁ ପରିପୂର୍ଣ୍ଣ କରିଛି, ସାହସ ଦେଇଛି । ହାତଧରି ବାଟ ଚାଲିଛି । ସେ ହିଁ ତ ତା'ର ଆଶାବାଡ଼ି । ସବୁକଥାରେ କହିଛି, ମୁଁ ତ ଅଛି । ତମେ ଏମିତି ଭାଙ୍ଗିପଡୁଛ କାହିଁକି ଯେ, "ମା ସା'ଡାଣୀ ସବୁବେଳେ କୁହନ୍ତି ହେମଭଳି ଅନ୍ନପୂର୍ଣ୍ଣାର ହାତ ଧରିଛୁ,

Digitized by PPRACHIN, SOA

ଅନ୍ନବସ୍ତ୍ରରେ କେବେ ଅଭାବ ରହିବନିରେ କେଶବା । ଗରିବ ଘରେ ଜନମିଛି ସିନା ମନଟା ତାର ବଡ଼, ବିଚାର ଅଛି ।"

ସତରେ, କେତେ ବଡ଼ ବଡ଼ ବିପଦ ଝଡ଼ଝଞ୍ଝା ଆସିଛି ହେଲେ କେବେ ଭୋକ ଉପାସରେ ରଖିନି ତାକୁ ହେମ । ନିଜେ ଘରର ଦାୟିତ୍ୱ ନେବାକୁ ଅଣ୍ଟା ଭିଡ଼ିଛି, ରୋଜଗାର ପାଇଁ । ଟିକିଏ ବି ଅଭିମାନ ନାହିଁ । କେଶବାର ଆଖିପତା ଓଦା ହେଇ ଆସେ ଭାବୁ ଭାବୁ । ସତରେ ସେ ବଡ଼ ଭାଗ୍ୟବାନ୍ ।

"ହେମ ମୁଣ୍ଡରେ ହାତ ବୁଲେଇ କୁହେ, କେତେ ଭାବୁଛୁ ସମସ୍ତଙ୍କ କଥା... ନିଜ କଥା ଭାବ ଟିକେ, ବାଧିକିରେ ପଡ଼ିଯିବୁ ଯେତେବେଳେ, କ'ଣ ହେଲାଣି ତୋ' ଦେହ, ଯେତେବେଳେ ସମୟ ଆସିବ, ସବୁ ସଜାଡ଼ି ହେଇଯିବ ଲୋ, ଚିନ୍ତାକଲେ କ'ଣ ହେବ ।"

"ଚିନ୍ତା ଆଉ କିଛି ନାହିଁ ଯେ, ସ୍ୱାଧୀନ ଭାବେ କିଛି କରି ହେଉନି । ଅନ୍ୟର ଦୟା ଉପରେ ବଞ୍ଚିବାକୁ ଭଲ ଲାଗୁନି ତ । ଅନ୍ୟର ସୁବିଧା, ସେମାନଙ୍କ ମନ, ଭାବନାକୁ ଜଗିରଖି ଚଳିବାଟା ଏତେ ସହଜ ନୁହଁ । ଥିଲା ନ ଥିଲାଙ୍କ ମଝିରେ ଥିବା ପାଚେରି ଏପଟେ ଥାଇ କାନ୍ଥ ସେପାଖର ବଡ଼ମଣିଷଙ୍କ ସହିତ କାରବାର କରିବା ମାନେ ଜାଣ କଣ୍ଟା ଉପରେ ଚାଲିବା...

"ସତରେ ହେମ ଭାରି କଷ୍ଟ । ଆମ ସ୍ଥିତିକୁ ଜାହିର କରିହୁଏନା, କି ନିଜକୁ ଖୋଲି ହୁଏନା । ସମସ୍ତେ ତ ମା' ସା'ନ୍ତାଣୀ ନୁହନ୍ତି । ସବୁ ଗରିବ ମେହେନତ ମଣିଷଙ୍କ ଭଳି ମନ ଦେଇଥିଲେ ବି କଥା ନ ଥିଲା... ଯେକୌଣସି କାମ, ଯେକୌଣସି କଥାରେ ବାଛବିଚାର ନ ଥାଇ ପଶୁର ଜୀବନ ବଞ୍ଚୁଥାନ୍ତେ । ଏମିତି ତ କେତେ ଭାଟଭିକାରି ବଞ୍ଚିଛନ୍ତି ରାସ୍ତାକଡ଼ରେ । କେଶବା ଦୁଃଖ କରେ ନିଜ ସ୍ଥିତି ପାଇଁ ।

"ମନଊଣା କରନି, ହେମ ବୁଝାଏ । ସମସ୍ତେ ସମାନ ନୁହଁନ୍ତି । ଠାକୁରେ ସଂସାରରେ ସ୍ତର ସ୍ତର କରି କେତେ ସ୍ତରର ମଣିଷ ଗଢ଼ିଛନ୍ତି, କେଜାଣି ସମସ୍ତଙ୍କର ବଞ୍ଚିବାର ପ୍ରକାର ଭିନ୍ନ । କହିବାକୁ ସିନା ଥିଲା, ନଥିଲା ନହେଲେ କେତେ ପ୍ରକାରର, ହେଲେ ସମସ୍ତଙ୍କର ବଞ୍ଚିବାର ଉଦ୍ଦେଶ୍ୟ ଏକ- ଗଣ୍ଡେ ଖାଇବେ, ଖଣ୍ଡେ ପିନ୍ଧିବେ । ଯାହା ଯୋଉଠି ମିଳୁ ମୁଣ୍ଡଗୁଞ୍ଜି ଚଳେଇନେବେ ଖରା-ବର୍ଷା-ଶୀତ-କାକରରେ । ଆମ ଭାଗ୍ୟରେ ଯାହା ଅଛି, ଆମକୁ ତ ଭୋଗିବାକୁ ହେବ ଧୈର୍ଯ୍ୟ ଧରି ।"

"ହଁ, ତା' ନୁହେଁ ଆଉ କଣ, ଦୀର୍ଘଶ୍ୱାସ ନେଇ କେଶବା ନିଜ ଆଡୁ ହିଁ ଆରମ୍ଭ କଲା, ଏଇ ଦି' ଚାରିଦିନ କଥା, ତୋ ଆଖିରେ ପଡ଼ିଛି କି ନାହିଁ କେଜାଣି, ବର୍ଷା ଛେଚୁଥାଏ ଝୋ ଝୋ ହେଇ ସଞ୍ଜବେଳ... ଅଫିସ୍‌ରୁ ବୋହୂମା ଫେରି ଆସିଥିଲେ ।

Digitized by PPRACHIN, SOA

କିଛି ଫୁଲଗଛ ଚାରା ଆଣିଥିଲେ ବି ଗ୍ୟାରେଜ୍ ପାଖ ଅଗଣାରେ ଲଗେଇବା ପାଇଁ । ଲକ୍ଷ୍ମୀକୁ ଡାକ ପକାଇଲେ । ହଠାତ୍ ଶୋଇଥିଲି, ମୋ' ନିଦ ଭାଙ୍ଗିଗଲା; ଲକ୍ଷ୍ମୀ ତ ଧାଇଁଲା ତାଙ୍କ ଡାକ ଶୁଣି, ମୁଁ ତା'ପଛରେ ଯାଇ ଚାହିଁଲି, ଝିଅ ମୋର ଛତା ଟେକି ଧରିଛି ବୋହୂମାଙ୍କ ମୁଣ୍ଡ ଉପରେ । ଶିରାବଣ ବର୍ଷା, ସେ ଭିଜି ଚାଲିଥାଏ ଗୋରୁ ଭଳି । ହାତର ଛତା ଟିକିଏ ଏପାଖ ସେପାଖ ହେଲେ ବିରକ୍ତିରେ ପାଟି କରୁଥାନ୍ତି । ଶେଷକୁ କ'ଣ ହେଲା ଜାଣିଛୁ ହେମ, ଫୁଲକୁଣ୍ଡଗୁଡ଼ାକୁ ଉଠେଇ ଠିକ୍ ଜାଗାରେ ଥୋଇ ପାରିଲାନି ବୋଲି ଚଟକଣିଟିଏ ଥୋଇଦେଲେ ଗାଲରେ । ମୋ' ଛାତି ଫାଟିଗଲା ଲୋ ହେମ । ରୋଗିଣା ଝିଅଟା ମୋର । ଦିନେ ତାକୁ ବଡ଼ପାଟିରେ କଥା କହିନି । କଣ୍ଠରୁଦ୍ଧ ହେଇଗଲା କେଶବାର, କେଡ଼େ ହତଭାଗା ବାପ ମୁଁ... ।" ହେମ ଟିକିଏ ପାଖକୁ ଘୁଞ୍ଚିଯାଇ ତା'ପାଟିରେ ହାତ ଦେଇ କହିଲା, "ଏମିତି ଊଣା ଭାବୁଛ କାହିଁକି ନିଜକୁ । ସମୟ ଆସିଛି ସହିବାକୁ ହେବ, ମୁଁ ଜାଣୁଛି ସବୁ । ଦେଖୁଛି ବି । ହେଲେ କ'ଣ କରିବା । ଆଶ୍ରା ଦେଇଛନ୍ତି ସେମାନେ । ପାଟି ଖୋଲିଲେ ଏତକ ବି ଯିବ । ଖାଇବା, ପିନ୍ଧିବା, ଚଳିବା ସବୁଥିରେ ନୂଆବୋଉଙ୍କର ଅଲଗା ନଜର । ସେମାନେ ଭଲ ଖାଆନ୍ତି, ଭିନ୍ନ ରୋଷେଇ ହୁଏ । ସବୁ ଜିନିଷରେ ଲକ୍ଷ୍ମୀର ଭାଗ ନ ଥାଏ ।" ବଳକା ଓ ଅଇଁଠା ଖାଦ୍ୟ ହେମ ନିଜ ପାଇଁ ରଖିଥାଏ । ସେ ସିନା ମା' ବୋଲି ବୁଝିପାରେ, ଲକ୍ଷ୍ମୀ ତ ପିଲା, ସେମାନଙ୍କ ସହିତ ଥିଲେ ମନକୁ ଊଣା କରେ, ପଚାରେ ବି, ସେମାନେ ଯାହା ଖାଉଛନ୍ତି ମୋତେ ତ କେବେ ଦେଉନୁ ସେସବୁ । ପ୍ରଶ୍ନକୁ ଏଡ଼େଇବା ପାଇଁ ହେମ ବାହାନା ଖୋଜେ । ଆମେ ଆମ ନିଜ ଘରକୁ ଗଲେ ଖାଇବାନି କିମ୍ବା କମ୍ ହେଇଥିଲା ତ, ଏଭଳି କିଛି ଉତ୍ତର । ଲକ୍ଷ୍ମୀର ମନ ବୁଝେନା, ସେ ଜାଣେ- କିନ୍ତୁ ନିରୂପାୟ ମା' ସେ ।

ହେମ କେବଳ ଅପେକ୍ଷା କରେ ସମୟକୁ ଏବଂ କମଳା ମା'କୁ । କେବେ ଆସିବ ବସା ଘରର ଖବର ନେଇ ।

କମଳା ମା' କିନ୍ତୁ ଆସିଲାନି ଖବର ନେଇ । ଶ୍ରାବଣ ଯାଇ ଭାଦ୍ରବ ଆସିଲା । ହେମ ହତାଶ ହେଲା । କେଶବା କହିଲା, ଆମ ଭାଗ୍ୟରେ ନିଶ୍ଚିନ୍ତ ବୋଲି କିଛି ନାହିଁ । ଆଖପାଖ ଦୋକାନରେ ବି ବୁଝିଲିଣି, ଯୋଉ କାମ ହେଲେ ବି କରିବି ବୋଲି । ହେଲେ ସବୁଠି ସେଇ 'ନାହିଁ' । ମଣିଷ ପାଇଁ ଧୈର୍ଯ୍ୟର ବି ଗୋଟାଏ ସୀମା ଅଛି । କେତେ ପରୀକ୍ଷା ଦେବ ତା' ସହିବା ପଣର, କହୁନୁ ?" ହେମ ପାଖରେ ବି କିଛି ଉତ୍ତର ନ ଥାଏ ।

ଦିନେ ସଞ୍ଜରେ ରାନୁ ଆଉ ସାନୁଙ୍କ ସହିତ ଲକ୍ଷ୍ମୀ ଖେଳୁଥିଲା । ଘଟଣା କେମିତି କଣ ଘଟିଲା କେଜାଣି, ଲକ୍ଷ୍ମୀ କାନ୍ଦି କାନ୍ଦି ଆସି ବୋଉକୁ ପଚାରିଲା 'ଗରିବ ମାନେ କ'ଣ କି ବୋଉ ?'

Digitized by PPRACHIN, SOA

କାହିଁକି କ'ଣ ହେଲା କି ? ପଚାରିଲା ହେମ ଆଶ୍ଚର୍ଯ୍ୟ ହୋଇ, କିଏ କହିଛି ନିଶ୍ଚୟ, ପିଲା ତ ସତ୍ତିଏଁ ।

"ଗରିବମାନେ କ'ଣ ଚୁଇଙ୍ଗମ ଖାନ୍ତିନି ?"

ହେମ ପୁଣି ଅଡୁଆରେ ପଡ଼ିଲା, ଚୁଇଙ୍ଗମ କି ଜିନିଷ, କେବେ ଶୁଣିଲା ଭଳି ତାର ମନେ ପଡ଼ିଲାନି, ପଚାରିଲା କିଏ କହିଲା କି ? 'ରାନୁଅପା', ଚୁଇଙ୍ଗମ ଖାଉଥିଲା, ସାନୁଭାଇ କହିଲେ ଲକ୍ଷ୍ମୀକୁ ଦେ' ଗୋଟେ । ସେ ଦେଲାନି କହିଲା, ଗରିବ ପିଲାଏ ଚୁଇଙ୍ଗମ ଖାନ୍ତିନି । ପିପରମେଣ୍ଟ ଖାଆନ୍ତି, ତୁ ଦେଖିନୁ, "ଯୋଉଟା ରାମ ମଉସାର ଦୋକାନରେ ମିଳେ ।" ବୋଉ ତୁ ମୋ ପାଇଁ ସେଥିରୁ ଦି'ଟା ଆଣି ଦେ..."

ହେମ ଝିଅକୁ ବୁଝେଇଥିଲା ତା' ଢଙ୍ଗରେ ଅବଶ୍ୟ । ପରେ ଯାଇ ନିଜେ କିଣି ଆଣିଥିଲା ଚୁଇଙ୍ଗମ ଓ ଚକୋଲେଟ ଝିଅ ପାଇଁ । ଦୋକାନୀଠୁ ବୁଝିଲା, ଏସବୁ ଟିକେ ଦାମିକା ତ ଇଂଲିଶ୍ ସ୍କୁଲ ପିଲାଏ ବେଶି ଖୋଜନ୍ତି । ଗାଁରେ ତାର କାଟତି ନାହିଁ । ସେ ଜାଣନ୍ତା କିମିତି ବି ?

ହେମ କିନ୍ତୁ ଆଣିଥିବା ଚକୋଲେଟ୍ ଆଉ ଚୁଇଙ୍ଗମକୁ ବାଣ୍ଟି ଦେଇଥିଲା ତିନି ପିଲାଙ୍କୁ । କହିଥିଲା, ସବୁ ଜିନିଷ ସମସ୍ତେ ଖାଇପାରନ୍ତି ସୁବିଧା ଥିଲେ । ଗରିବ ଶବ୍ଦର ମାନେ ବୁଝିବାକୁ ଲକ୍ଷ୍ମୀର ତ ବୟସ ହୋଇନି, ତେଣୁ ବୁଝେଇବା ଉଚିତ ମନାକଲାନି ।

ଏମିତି ଅନେକ ଛୋଟବଡ଼ ଘଟଣା କିନ୍ତୁ ଘଟିବାକୁ ଲାଗିଲା । ନିତିଦିନର ଚଳଣି ଭିତରେ, ଯାହା ହେମ ଆଉ କେଶବାକୁ ଅଡୁଆରେ ପକାଉଥିଲା, ଅଥଚ ଏସବୁ ସ୍ୱାଭାବିକ ହିଁ ଥିଲା । ପରିବେଶ ଓ ପରିସ୍ଥିତି ତ ମଣିଷର ବିଚାର ଓ ଦେଖିବାର ଢଙ୍ଗ ରୁଚିକୁ ପ୍ରଭାବିତ କରେ । ଲକ୍ଷ୍ମୀ ସେଇ ବୟସରେ ପହଞ୍ଚିଥିଲା, ସବୁ କଥାରେ ତାର କୌତୂହଳ ବଢୁଥିଲା, ଜାଣିବାକୁ ଚାହୁଁଥିଲା, ଉତ୍ତର ଖୋଜୁଥିଲା । ଅଥଚ ତାର ପିଲାଦିନଟା କିଛି ମାତ୍ରାରେ ବନ୍ଦୀ ହୋଇଯାଇଥିଲା ପରିସ୍ଥିତିର ଚାପରେ ।

ଦିନେ ସକାଳୁ ସକାଳୁ କମଳା ମା' ନିଜେ ଗ୍ୟାରେଜ ଘରକୁ ଆସି ହେମଲତାକୁ ଖୋଜିଲା । ଦାଣ୍ଡରେ ଖେଳୁଥିବା ଲକ୍ଷ୍ମୀ ଧାଇଁଯାଇ ବୋଉକୁ ଡାକି ଆଣିଲା 'ତୋତେ କମଳା ଆଈ ଖୋଜୁଛି ।'

ଚମକି ପଡ଼ିଲା ହେମ ସତକୁ ସତ । ହାତରୁ ବାସନ ଖସିପଡ଼ିଲା ଝଣଝଣ ହୋଇ । ଶୁଭସୂଚନା ନିଶ୍ଚୟ । କିଛି ଭଲ ଖବର ଥିବ, ମନେମନେ ଭାବି ତଳକୁ ଆସିଲା । ସତକୁ ସତ ଭଲ ଖବର ନେଇ ଆସିଥିଲା କମଳା ମା । କିନ୍ତୁ ବସାଘର ନୁହେଁ, ଭିନ୍ନ ପ୍ରକାର ପ୍ରସ୍ତାବଟିଏ । କହିଲା, ବସାଘର ମିଳିବା ସୁବିଧା ହେଉନି ଝିଅ । ଏତେ କମ୍ ପଇସାରେ କିଏ ରାଜି ହେଉନାହାନ୍ତି । ମୁଁ ଆଉ ପ୍ରକାରେ ଭାବିଛି, ଜାଣିନି ତୋ'ମନକୁ ପାଇବ କି ନାହିଁ ।"

Digitized by PPRACHIN, SOA

ହେମ କହିଲା କହୁନ; କ'ଣ ଭାବୁଛ ? କହିଲେ ସିନା ଜାଣିବି ।

"ଭାବୁଥିଲି, ତମେମାନେ ମୋରି ବସାରେ ରହନ୍ତ, ମୋର ଦି'ବଖୁରିଆ ଘର । ପୁଅ ବୋହୂ ତ ଅଲଗା ଘର କରି ଅଛନ୍ତି । ମୋ ସହିତ ସମ୍ପର୍କ ହିଁ ରଖି ନାହାନ୍ତି । ମୁଁ ଜଣେ ମଣିଷ । ତମେମାନେ ରହିଲେ ମୋତେ ଭଲ ଲାଗନ୍ତା । ତୁ ତୋର ରୋଷେଇ କରି ଖା'ନ୍ତୁ, ମୁଁ ମୋର । ତୋତେ ଅସୁବିଧା ନ ଲାଗିଲେ ହେଲା; ହେଲେ ଗୋଟିଏ କଥା... ।

"କି କଥା ପୁଣି... ?"

କଥା ହେଲା, ଭଡ଼ା ଟଙ୍କା ତୁ ମୋତେ ଦେବୁ । ମୋ' ବୟସ ହେଲାଣି, ଖର୍ଚ୍ଚ ବି ବଢୁଛି । ସେଇଥିପାଇଁ କହୁଛି । ଯାହା ଦେବାକୁ ତୁ ଚାହୁଁଛୁ । ଖୋଲାଖୋଲି କହିଲି ବୋଲି କିଛି ଭାବିବୁନି ଝିଅ । ତେଣିକି ତୋ' ଇଚ୍ଛା । ଭାବିଚିନ୍ତି କେଶବାକୁ ପଚାରି କହିବୁ ମୋତେ । କମଳା ମା' ଚାଲିଗଲା । ହେମ ଭାବିବାକୁ ଲାଗିଲା, ଇଏ ବି ଗୋଟାଏ ପରୀକ୍ଷା ଈଶ୍ୱରଙ୍କର । ଏକାଠି ଚଳିବାକୁ ହେବ । କେଶବା କହିଲା, ତୁ ଚଳିପାରିବୁ ତ, କମଳା ମା' କିମିତିକା ମଣିଷ କେଜାଣି, ମହରଗରୁ ଯାଇ କାନ୍ତାରରେ ପଡ଼ିବାନି ତ ? ଏବେତ ଜଣକ ଉପରେ ବୋଝ ହୋଇ ରହିବାକୁ ମାଡ଼ିପଡୁଛି ।

"ଆଉ ଉପାୟ କ'ଣ ଅଛି । ବେଶି ଆଶାକୁ ସାହସ ଅଣ୍ଟୁନି ଯେତେବେଳେ, ଏଇ ଭଲ ।

ସୁବିଧା ଦେଖି ହେମ ଶିବବାବୁଙ୍କୁ କହିଲା କମଳା ମା' କଥା । ଶହେ ଟଙ୍କା ନେବ କହୁଛି ଭଡ଼ା ବାବଦକୁ । ଏଠି ଆଉ କେତେଦିନ ଆପଣମାନଙ୍କୁ କଷ୍ଟ ଦେବି... ସବୁଦିନ ସକାଳୁ ସକାଳୁ ଆସି ପୁଣି କାମ ସାରି ସନ୍ଧ୍ୟାକୁ ଚାଲିଯିବି । ବସ୍ତିଟା ବେଶି ଦୂର ନୁହେଁ ଯିବାଆସିବା କରିବାକୁ । ପିଲାଙ୍କର କିଛି ଅସୁବିଧା ହେବନି । ଯେମିତି ଯତ୍ନ ନେଉଥିଲି ସେଭଳି ନେବି । ଆପଣଙ୍କ ଅନୁମତି ମିଳିଲେ କଥାଦେବି କମଳା ମା'ଙ୍କୁ- କଥାସାରି ହେମ ଅପେକ୍ଷା କଲା ଅନୁମତି ପାଇଁ ।

ଅଫିସ୍‌ରୁ ଫେରି ନିରୂପମା ଶୁଣିଲେ ସବୁକଥା । କହିଲେ, ଭଲ ହେଲା, ଯାଉ, ଯିବ ଯଦି, କହୁଛି ତ ଠିକ୍ ସମୟରେ ତା' କାମ ଆସି କରିବ । ଅସୁବିଧା ନାହିଁ"- ଶିବବାବୁଙ୍କର କିଛି ଅବିଶ୍ୱାସ ନ ଥିଲା ହେମ ଉପରେ । କଥାର ଖିଲାପ ସେ କରିବନି । ମଣିଷ ତ ଚାହେଁ ଟିକେ ସ୍ୱାଧୀନ ଭାବେ ବଞ୍ଚିବାକୁ । ତା' ସ୍ୱାଧୀନତା ଏଠି ନାହିଁ । ସେ ମନା କରନ୍ତେ କାହିଁକି ।

ଦଶହରା ଦିନଟା ଶୁଭଦିନ । କେଶବା କମଳା ମା'ଘରକୁ ତା' ଆଶ୍ରା ଉଠେଇ ନେଲା । ସାନୁ ଆଉ ରାନୁଙ୍କର ମୁହଁ ଶୁଖିଗଲା, ଲକ୍ଷ୍ମୀ ଚାଲିଯାଉଛି, ଖେଳସାଥୀ । ଯାହା ହେଲେ ବି ପିଲା ମନ-ମାନ ଅଭିମାନ ତ ବୁଝନ୍ତି ନାହିଁ ।

Digitized by PPRACHIN, SOA

କମଳା ମା'ର ବସ୍ତିଘରେ ହେମଲତା ଓ କେଶବାର ଜୀବନ ସଂଘର୍ଷର ଆଉ ଏକ ଅଧ୍ୟାୟରେ ପୁଣି କିଛି ପୃଷ୍ଠା ଯୋଡ଼ି ହେଇଗଲା । ଜୀବନ ଏଇମିତି ଚାଲେ ସମୟ ସହିତ ତାଳ ଦେଇ । ଜୀବନ ମାନେ ହିଁ ସମସ୍ୟା । ସମସ୍ୟାକୁ ସମାଧାନ କରିବାର ବାଟ ସେଇ ମଣିଷ ହିଁ ଖୋଜେ । ଅନ୍ଧାର ରାତିକୁ ପହଁରି ପହଁରି ଆଲୁଅକୁ ଅପେକ୍ଷା କରେ । ତାରି ନାଁ ଆଶା । ଜୀବନ ମରେନା, ଆଶା ବି ମରେନା । ଆଶା ବଞ୍ଚେ ବୋଲି ତାକୁ ଜାବୁଡ଼ି ଧରି ମଣିଷ ବଞ୍ଚେ ।

ନିଜ ଘର ଭଳି ସ୍ୱାଧୀନତା ନଥିଲେ ବି, ହେମଲତା କମଳା ମା'ର ଘରକୁ ନିଜଘର ବୋଲି ଭାବିଲା । ଯଦିଓ କମଳାର ଅଲଗା ଚୁଲିହାଣ୍ଡି ଥିଲା । ନିଜ ବ୍ୟବସ୍ଥା ସେ ନିଜେ ହିଁ କରୁଥିଲା । ଛ'ମାସ ଏଇ ବ୍ୟବସ୍ଥା ଭିତରେ ହିଁ କଟିଲା । କିଛି ଅସୁବିଧା ହେଉନଥିଲା ଏଥିରେ । ହେଲେ ହେମକୁ କାହିଁକି ଭାରି ଅସ୍ୱସ୍ତି ଲାଗିଲା । ବୁଢ଼ୀ ମଣିଷ, ନିଜ ପେଟ ପାଇଁ ନିଜେ ହାତପୋଡ଼ି ଭାତ ରାନ୍ଧିବ, ଭଲ ଦିଶୁନି କଥାଟା । ସିଏ ତ ରାନ୍ଧୁଛି ତିନିଜଣଙ୍କ ପାଇଁ, ସେଥିରେ ଅଧିକା ମୁଠେ ଚାଉଳ ପକେଇ ପାରିବନି ? କମଳା ମା' ତ ପୁଣି ନିଜ ସୁଖ ସୁବିଧାକୁ ତାଙ୍କ ସହିତ ଭାଗ କଲା, ଆଶ୍ରା ଦେଲା । ସ୍ନେହଶ୍ରଦ୍ଧା କି ଆପଣାପଣର କାଣିଚାଏ ଊଣା ନାହିଁ କାହା ପାଇଁ । ପରଅପର ଭେଦ ନାହିଁ ବି ।

କେଶବା ମନକୁ କଥାଟା ପାଇଲା- ନିଜ ବୋଉ ହେଇଥିଲେ କ'ଣ ଏଇୟା ହୋଇଥାନ୍ତା । ନାଇଁ ତୁ ନିଜେ ପଚାର ଥରେ କମଳାମା'କୁ, କ'ଣ ସେ କହୁଛି ।

ସାହସ କରି ଦିନେ ପକେଇଲା ହେମ କମଳା ମା' ଆଗରେ- "ଆମେ ଏକାଠି ଏକା ହାଣ୍ଡିରେ ଖାଇଲେ କେମିତି ହୁଅନ୍ତା, ମୁଁ ତମ ଝିଅ ଭଳି ।"

ଏଇ ପଦକ ଶୁଣୁଶୁଣୁ କମଳା ମା'ର ଛାତି ଖୁସିରେ ଗଦଗଦେଇ ଉଠିଲା, ଝିଅ ମରଣର ଦୁଃଖ ପାସୋରି ହେଇଗଲା ଯିମିତି ହେମର ମା' ଡାକରେ । ହେମ ମୁହଁ ଉପରେ କମଳାର ହଜିଲା ମୁହଁ ଥାପି ହେଇଗଲା ଯିମିତି । ତାକୁ କୋଳେଇ ନେଇ କହିଲା "ମୋ ଛାତି ଭିତରଟା କାହିଁ କୋଉ ଦିନରୁ ଶୂନ୍ୟ ହେଇ ରହିଥିଲା ଲୋ ହେମ, ତୋ ମା' ଡାକରେ ଆଜି ପୂରିଗଲା ସେ ଖାଲିଜାଗାଟା, ତୁ ହେମ ନୁହଁ, ମୋ କମଳା । ଝରଝର ହେଇ ମମତାର ଝରଣା ବହିଗଲା ଶିଥିଳ ଆଖିପତାରୁ କେତେ ସମୟ ଯାଏ କେଜାଣି ।

ସଂସାର ଗଡ଼ି ଚାଲିଲା ନିଜ ବାଟରେ । ଟାଣଟୁଣ ତ ହେଉଥିଲା । ହେମଲତାର ଦରମା ଅଢ଼େଇଶହ ଟଙ୍କା ଅଣ୍ଟୁ ନ ଥିଲା । ଲକ୍ଷ୍ମୀକୁ ପାଠ ପଢ଼େଇବାକୁ ମନସ୍ଥ କରି ସ୍କୁଲରେ ଭର୍ତ୍ତି କରିଦେଲା କେଶବା । ପାଠ ଦି'ଅକ୍ଷର ଜାଣିନଥିଲେ ବେଳଅବେଳକୁ

Digitized by PPRACHIN, SOA

ଅସୁବିଧା ହେବ । ଆଗକୁ କ'ଣ ଅଛି କିଏ ଜାଣେ । ଲକ୍ଷ୍ମୀର ମଉଳା ମୁହଁ ପୁଣି ଝଲସି ଉଠିଲା ସତ ହେଲେ ଚିନ୍ତା ପଡ଼ିଲା ଖର୍ଚ୍ଚ କେମିତି ତୁଳେଇବ ।

ଅବଶ୍ୟ ଘରେ ବସି କେଶବା ଠୁଙ୍ଗା ତିଆରି କରୁଥିଲା । କିଏ ଜଣାଶୁଣା ଲୋକ ସୁବିଧା ଅସୁବିଧାରେ ଡାକିଲେ ବସିଉଠି ତାଙ୍କୁ ସାହାଯ୍ୟ ବି କରୁଥିଲା-ସେମାନେ ଯାହା ଦେଲେ, ତାର ଖୁସି । ଯଦିଓ ହେମ ଆଉ ଦି' ଘର କାମ କରି କିଛି ରୋଜଗାର କରିପାରନ୍ତା, ତା' ପାଇଁ ସମ୍ଭବ ନଥିଲା । ଶିବବାବୁଙ୍କ ଘରକାମ ତାକୁ ବାନ୍ଧି ରଖୁଥିଲା । ସେ ବି କିଛି କହିପାରୁ ନଥିଲା କୃତଜ୍ଞତା ବୋଝରେ । କମଳା ମା'ର ଦରମା ବି ଏଇ ଘରେ ଖର୍ଚ୍ଚ ହେଉଥିଲା- ମୋର ଆଉ କିଏ ଅଛି ଯେ, ଟଙ୍କା ସାଇତି ରଖିବି କହୁନୁ- କହି ହେମ ହାତକୁ ବଢ଼େଇ ଦେଉଥିଲା ଟଙ୍କା ।

ସମୟ ଗଡ଼ିଲା । ଅଭାବ ବଢ଼ିଲା ତା' ସହିତ । ଲକ୍ଷ୍ମୀର ପଢ଼ା ଖର୍ଚ୍ଚ ବି ବଢ଼ିଲା । ସ୍କୁଲ ପୋଷାକ ଦରକାର ପଡ଼ିଲା । ପିଲାଟିଏ ଥିଲା, ରାନୁ ମା'ଙ୍କ ପୁରୁଣା ଫ୍ରକ୍‌ରେ କାମ ଚଳୁଥିଲା । ମଝିରେ ମଝିରେ ନିରୂପମାଙ୍କ ପାଖରେ ହାତ ପାତିବାକୁ ହୁଏ । ଦି' ଚାରି ଥର ଦେଲା ପରେ ବିରକ୍ତ ହୁଅନ୍ତି ନିରୂପମା । ଥରେ କହିଲେ ମଧ୍ୟ, ଦି'ମାସର ଦରମା ଆଗୁଆ ତୁ ନେଇସାରିଲୁଣି ସାମର୍ଥ୍ୟ ତ ନାହିଁ, ଝିଅକୁ ପାଠ ପଢ଼େଇବାକୁ ଏତେ ସଉକ କାହିଁକି । ତୋ'କାମ ତାକୁ ଶିଖେଇ ପାରନ୍ତୁ । ତୋତେ ସାହାଯ୍ୟ କରନ୍ତା । ଆକାଶ ଛୁଇଁବାକୁ ମନକଲେ କେମିତି ହବ ? କେଶବା ବି ଚାହିଁଲେ କିଛି ରୋଜଗାର କରିପାରନ୍ତା ।

ହେମକୁ ଭଲ ଲାଗିଲାନି କଥାଗୁଡ଼ାକ । ଆଖି ଜକେଇ ଉଠିଲା । ମା ସା'ନ୍ତାଣୀ ମନେପଡ଼ିଲେ । କେଡ଼େ ବଡ଼ ମନ ଥିଲା ତାଙ୍କର । ଅନେକଥର ଭାବିଛି, ଦିନ ଚାରିଟା ଛୁଟି ମିଳିଲେ ଥରେ ଯାଇ ଦେଖିଆସନ୍ତା, ଗୁହାରି କରନ୍ତା । ସେ ଖାଲି ହାତରେ ତ କେବେ ଫେରେଇ ନଥାନ୍ତେ । ହେଲେ ସାହସ ହୁଏନି । ହେମ ମୁହୂର୍ତ୍ତେ ଅପେକ୍ଷା କଲା ନିଜ କୋହକୁ ଚାପି । ଆର ପାଖଘରେ ଶିବବାବୁ ଶୋଇ ଖବରକାଗଜ ପଢୁଥିଲେ । ମଣିଷଟା ଏତେଟା ନିଷ୍ଠୁର ନୁହନ୍ତି । ଭାବିଲା, ଥରେ ବାବୁଙ୍କୁ କହିଦେଖନ୍ତା କିଛି ଯଦି କରିପାରନ୍ତେ କେଶବା ପାଇଁ । ଅକ୍ଷମ ଲୋକଟା, ତା' ଯୋଗ୍ୟ କାମ ହେଲେ ସେ ନିଶ୍ଚୟ କରନ୍ତା, କେତେଆଡ଼େ ବୁଲୁଛନ୍ତି । କୋଉଠି କିଛି କାମ ଆଖିରେ ଥିବ ।

ନିରୂପମା ଲୁଗାପଟା ପିନ୍ଧି, ଅଫିସ୍ ବାହାରୁଛନ୍ତି । ହେମ ସୁଯୋଗ ପାଇ ବାବୁଙ୍କ ଉଦ୍ଦେଶ୍ୟରେ କହିଲା ମନକଥାଟା । ସବୁ ଶୁଣି ଶିବବାବୁ କହିଲେ, ଆମର ଅଫିସମାନଙ୍କରେ କେଶବା ପାଇଁ ସେଭଳି ସୁବିଧା ସୁଯୋଗ ନାହିଁ । ବରଂ ନିରୂପମାଙ୍କ ଅଫିସ୍‌ରେ ସମ୍ଭବ ହେବ । ନିରୂପମାଙ୍କୁ ଲକ୍ଷ୍ୟ କରି କହିଲେ- ତମେ ଚେଷ୍ଟାକଲେ

Digitized by PPRACHIN, SOA

କେଶବା ପାଇଁ କିଛି କାମ ଯୋଗାଡ଼ କରିପାରନ୍ତ । ଏବେ ଯୋଉ ଯୋଜନା ଅର୍ଥାତ୍ ଶିଶୁ ବିକାଶ ଯୋଜନା ପାଇଁ ତମ ଏନ.ଜି.ଓ. କାମ କରୁଛି । ତା'ପାଇଁ କିଛି ଲୋକ ଆବଶ୍ୟକ ବୋଲି ଖବରକାଗଜରେ ବାହାରିଥିଲା ସପ୍ତାହେ ଦି'ସପ୍ତାହ ତଳେ । ତମେ ଥରେ ତମର ଏମ୍.ଡି.ଙ୍କୁ ଏଇ ସଂକ୍ରାନ୍ତରେ ପଚାରିପାର । କିଛି ଗୋଟାଏ କାମ, ଅକ୍ଷମମାନଙ୍କ ପାଇଁ କିଛି ସୁବିଧା ବି ଥାଇପାରେ; ହୋଇପାରିଲେ ଲୋକଟା ଉପକୃତ ହୁଅନ୍ତା । କେଶବାଟା କାମିକା, ପାରିବ ।

ନିରୂପମାଙ୍କର ଯଦିଓ ସାହାଯ୍ୟ କରିବାର ମନୋବୃତ୍ତି ନ ଥିଲା, ତଥାପି ସ୍ୱାମୀଙ୍କର କଥାକୁ ଏକାବେଳକେ କାଟିପାରି ନଥିଲେ । କହିଲେ, ଦେଖେ ଚେଷ୍ଟା କରିବି, କ'ଣ କହୁଛନ୍ତି ।" ହେମ ମନେମନେ ଠାକୁରଙ୍କୁ ପ୍ରଣାମ କଲା । ଯାହା ତାଙ୍କର ଇଚ୍ଛା ।

ଚାରିବର୍ଷର ସଂଘର୍ଷ ପରେ କେଶବା ନିରୂପମାଙ୍କ ସଂସ୍ଥାରେ ଦିନ ମଜୁରିଆ ଭାବେ କାମ ପାଇଲା । ପିଲାଙ୍କ ଖାଦ୍ୟ ପ୍ୟାକେଟ୍ କରିବା, ଖାଦ୍ୟ ତିଆରି କରିବାରେ ସାହାଯ୍ୟ କରିବା ଭଳି କିଛି କାମ । ବିଶେଷ ଅସୁବିଧା ହେଲାନି ତାକୁ । ତା'ସହିତ ଯିଏ ଯେତେବେଳେ ଯୋଉ ସାହାଯ୍ୟ ଚାହିଁଲା ତାକୁ ସହଯୋଗ ବି କଲା । ସମସ୍ତେ ତା' ବ୍ୟବହାରରେ ସନ୍ତୁଷ୍ଟ ଥିଲେ । କେଶବା ଅନେକ ଦିନ ପରେ ଟିକିଏ ନିଶ୍ଚିନ୍ତରେ ଶୋଇପାରିଲା । କାରଣ ତା'ପାଇଁ ଏଇ ସାତଶହ ଟଙ୍କା ଅନେକ ଅନେକ ଆଶ୍ୱସ୍ତି ଆଣିଦେଲା । ଅନ୍ତତଃ ରାତି ପାହିଲେ ଭାତ ପାଇଁ ଚିନ୍ତା କରିବାକୁ ପଡ଼ିବନି । ଲକ୍ଷ୍ମୀର ପଢ଼ାଖର୍ଚ୍ଚ ପାଇଁ କାହା ଆଗରେ ଭାତ ପାଇଁ ଚିନ୍ତା କରିବାକୁ ପଡ଼ିବନି । ମାଟ୍ରିକଟା ଯେମିତି ସେମିତି ପାସ୍ କରିଗଲେ, ଅନେକ ସମସ୍ୟାର ସମାଧାନ ହେଇଯିବ ।

ଏମିତି ହିଁ ଭାବେ ମଣିଷ । ସବୁ ଠିକ୍ ହେଇଯିବ । ଏଇତ ସମସ୍ୟା ଗୋଟିଏ । ସମାଧାନ ହେଇଗଲେ ହେଲା । ତେଣିକି ସହଜ ରାସ୍ତା... । ବଡ଼ ବିଚିତ୍ର ମଣିଷର ମନ ସତରେ ।

ଛୋଟ ପଣତିଆ ଶାଗପେଜର ସଂସାର କେଶବା ଭଳି ଘୋଷାରି ହୋଇ ହୋଇ ଆଗକୁ ଚାଲିଲା ମନ୍ଥର ଗତିରେ । ସୁଖର କଥା ଯେ, କମଳା ମାକୁ ମିଶାଇ ଚାରିପ୍ରାଣୀଙ୍କ ଭିତରେ ଏକପ୍ରକାର ଅଦ୍ଭୁତ ଆତ୍ମବିଶ୍ୱାସ ଗଢ଼ିଉଠି ପରସ୍ପର ପରସ୍ପର ସହିତ ବାନ୍ଧି ହେଇଗଲେ । ପ୍ରତ୍ୟେକେ ଭାବିଲେ ଯେ, ସେମାନେ ବଞ୍ଚିପାରିଛନ୍ତି । ଏଣିକି ବଞ୍ଚିପାରିବେ ଆଉ ମାଉସୀଙ୍କ ଭଳି । ସାହସ ଆସିଲା- ଏଣିକି ରାତି ଆଉ ଲମ୍ବା ହେବନି । ଆଲୁଅ ଦିଶିବ, ବାଟ ଫିଟିବ, ଭୟ ଦେଖେଇବନି, ଆଉ ଜୀବନ, ଏତେଦିନ ଧରି କେଶବା ଆଉ ହେମ ଏଇ ନିଶ୍ଚିତତା ଟିକେ ହିଁ ତ ଖୋଜୁଥିଲେ । କେତେ ଗାଳି, କେତେ ମୋଡ଼, କେତେ ନିନ୍ଦା ଅପମାନ, ନିର୍ଯାତନା ଦେଇ ଜୀବନ ଆଜି ରାସ୍ତା

Digitized by PPRACHIN, SOA

ଉପରେ ଠିଆହେଇଛି । ଏଣିକି ଚାଲିବାକୁ ଭୟ ଲାଗିବନି, ହେଉ ସେ ଯେତେ ଲମ୍ବା ରାସ୍ତା । କେତେବେଳେ ହେଲେ ବି ତ ଭେଟିବ ତାର ଲକ୍ଷ୍ୟକୁ ।

ଅବଶ୍ୟ ଏକଥା ଭାବିଲା ବେଳକୁ କିଏ ଯେମିତି ଅଟକାଏ ଏବଂ ପଚାରେ ଏମିତିତ ଆହୁରି ଅନେକଥର ଭାବିଛୁ, ଭାବପୁରରେ ଥିଲାବେଳେ ବି ରାହାସପୁରରେ ଥିଲାବେଳେ ବି । ଜନ୍ମମାଟିଠୁ କିଏ ବେଶି ଆପଣାର ଥିଲା କି ? ସମସ୍ତେ ଏଇ ସ୍ୱପ୍ନ ଦେଖେଇଥିଲେ ଅଥଚ ନିଶ୍ଚିନ୍ତପଣ କୋଉଠି ବି ନ ଥିଲା । ଆଜି ପୁଣି କାହିଁକି ଭାବୁଛୁ । ସମୟ ହାତଧରି କୁଆଡ଼କୁ ନେବ, ସେଇ ଜାଣେ । ମଣିଷତ ଖେଳ କଣ୍ଢେଇ । ଆଉ ରହିଲା 'ଲକ୍ଷ୍ୟ' । ଲକ୍ଷ୍ୟ ବି ତାର କ'ଣ, ବଡ଼ ହେବାର ସ୍ୱପ୍ନ ତ ନାହିଁ । ଗଣ୍ଡେ ଖାଇ, ଖଣ୍ଡେ ପିନ୍ଧି, ଝିଅଟା ପାଠ ଦି'ଅକ୍ଷର ପଢ଼ି ମଣିଷ ହେଲେ ହିଁ ହେଲା । କହିବାକୁ ଗଲେ ଲକ୍ଷ୍ମୀ ହିଁ ତାର ଲକ୍ଷ୍ୟ । ଲକ୍ଷ୍ମୀ ଏବେ ବଡ଼ ହେଲାଣି ।

ଲକ୍ଷ୍ମୀ ଭଲ ପଢ଼େ । ସେଥିପାଇଁ ଶିକ୍ଷକ ମହଲରେ ତାର ଆଦର ଅଛି । ଆବଶ୍ୟକ ବେଳେ ବି ସେମାନେ ସାହାଯ୍ୟର ହାତ ବଢ଼ାନ୍ତି । ସଭିଙ୍କ ସହାନୁଭୂତି ସାହାଯ୍ୟ ଭିତରେ ହିଁ ସେ ଆଗକୁ ପାଦ ବଢ଼େଇଛି । ନରମ ସ୍ୱଭାବ । ବୟସ ବଢ଼ିବା ସହିତ, ତା' ଭିତରେ ଜଣେ ସଂଭ୍ରମ, ସୁଶୀଳା, ଦାୟିତ୍ୱସଂପନ୍ନା ଝିଅଟିଏ ଜନ୍ମ ନିଏ । ଜୀବନ ପ୍ରତି ତାର ଦୃଷ୍ଟି କ୍ରମଶଃ ବଦଳିବାକୁ ଲାଗେ । ସବୁ ଝିଅଙ୍କ ଭଳି ଏକାପ୍ରକାର ବାଟରେ ସେ ଭାବେନା । ତା' ଭାବନା ଭିନ୍ନ ବାଟରେ ଚାଲେ । ଶାଳିଗାଁ, ରାହାସପୁରର ଆକାଶଠୁ ରାଜଧାନୀର ଆକାଶ ଧୂଆଁଳିଆ ହେଲେ ବି ଅନେକ ବଡ଼, ବ୍ୟାପ୍ତି ତାର ଆଖି ଛୁଇଁପାରେନା- ସେ ବୁଝିପାରେ ଏବଂ ଏଇ ବଡ଼ ଆଉ ବ୍ୟାପ୍ତ ଆକାଶକୁ ଛୁଇଁବାର ଦୁରନ୍ତ ଇଚ୍ଛା କ୍ରମଶଃ ତା'ଭିତରେ ସଂକଳ୍ପର ରୂପ ନେଇ ପଦ୍ମାସନ ପକେଇ ମାଡ଼ିବସେ ।

ଭାବେ, ଆଉ ଯାହା ହେଉ ପଛକେ, ତା' ପିଲାଦିନର ସାଥୀ ରମା, ସୁମତି, ସୁଜାତା କି ଶୋଭା ଭଳି ସେ ହେବନି । ବାହାସାହା ହେଇ ପିଲାଝିଲାଙ୍କ ଦେ ନେଙ୍ଗରା ଭିତରେ କଦାପି ସଢ଼ିବନି । ତା'ରାସ୍ତା ସେ ଠିକ୍ କରିବ, କୋଉ ବାଟରେ ଗଲେ ପହଞ୍ଚିପାରିବ ତା'ଲକ୍ଷ୍ୟ ସ୍ଥଳରେ । ନିଜକୁ ସେ ସଭିଙ୍କଠୁ ଭିନ୍ନ ପ୍ରମାଣିତ କରିବ । ପିଲାଦିନୁ ବାପା ବୋଉଙ୍କୁ ଦେଖିଆସିଛି । ଦେଖିଆସିଛି ସେମାନଙ୍କର ଜୀବନ ସଂଘର୍ଷକୁ । ପ୍ରତିଟି ମୁହୂର୍ତ୍ତରେ ପରିସ୍ଥିତିକୁ ସାମ୍ନା କରିଛନ୍ତି । ହାରମାନି ନାହାନ୍ତି କେବେ । ସେ କାହିଁକି ହାର ମାନିବ ଯେ । ଆକାଶ ତା'ର ଲକ୍ଷ୍ୟ । ଯଦି ଆକାଶକୁ ତ ହାତ ପାଇବନି, ତେବେ ବି ନିଜକୁ ସେ କେବେ ମାଟିରେ ମିଶେଇବନି । ତାର ମନ ଅନ୍ତତଃ ଟିଂରଟିଏ ହେବ ।

କେଶବା ବେଳେବେଳେ ଚକିତ ହୋଇ ଚାହିଁରହେ ତା'ଝିଅକୁ । ଦେଖୁ ଦେଖୁ ଏଡ଼େ ଟିକେନାକୁ ତୁଳାଭଳି ନଡ଼ବଡ଼ିଆ ଝିଅ କେତେବଡ଼ ହେଇଗଲାଣି । ବଡ଼ ମଣିଷଙ୍କ

Digitized by PPRACHIN, SOA

ଭଳି ତା'ର ଆଚାର ବିଚାର । କଥାବାର୍ତ୍ତା, ଚାଲିଚଳନ, ସ୍ୱଭାବ ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ଦିନେ ଦିନେ ହେମଲତାକୁ କୁହେବି, "ଇଏ କ'ଣ ଆମ ଝିଅ ହେମ ? ତୋରି ପେଟରୁ ଜନ୍ମ ହେଇଥିଲା ? ମୋରି କୋଳରେ କାନ୍ଧରେ ମଣିଷ ହେଇଛି ? ବିଶ୍ୱାସ ଲାଗୁନି ଲୋ, ଚିହ୍ନି ହେଉନି । ବଡ଼ଘର ଝିଅ ମିତି କିମିତି ତା'ର ସ୍ୱଭାବ ଲକ୍ଷଣ, କେଡ଼େ ବିଚାରବନ୍ତ ହେଇଛି ବି । କହିବାକୁ ଲାଜ ଲାଗୁଛି, ଗୁଣ ତ ଗୁଣ, ରୂପରେ ଏବେ କୋଉ ଊଣା କି ! ବଡ଼ଘରେ ଜନ୍ମ ହେଇଥିଲେ ଦିହୁଡ଼ି ଜାଳିଥାନ୍ତା । ଗରିବ ଘର, ଖଣ୍ଡିଏରୁ ଦି'ଖଣ୍ଡ ଜାମା ନାହିଁ ପିନ୍ଧିବାକୁ । ଆହା, କେଡ଼େ ହିନସ୍ତାରେ ଚଳୁଛି ଝିଅ ମୋର ।

"ଏମିତି କଣ କହୁଛମ ବାପ ହେଇ । ତମରି ଗୁଣ ତକ ଆଣିଛି ତମ ଝିଅ । ଈଶ୍ୱର ତାକୁ କୋଟି ପରମାୟୁ ଦେଇଥାନ୍ତୁ । ବଡ଼ ହେଇ ସଂସାରରେ ନାଁ କରୁ ।" - ହେମ ହାତଯୋଡ଼େ ଠାକୁରଙ୍କ ଉଦ୍ଦେଶ୍ୟରେ । କିଛି ସମୟ ସ୍ୱାମୀ ସ୍ତ୍ରୀ ଦୁହେଁ ତୃପ୍ତିରେ ଶୋଇଲା ଝିଅ ମୁହଁକୁ ଚାହିଁ ରହନ୍ତି । ଅଭାବ ଅସୁବିଧା ଭିତରେ ମୁହଁଟା କଳା ପଡ଼ିଗଲାଣି । ହେମ ମୁହଁରେ ଚିନ୍ତାର ରେଖା ଫୁଟିଉଠେ । "କ'ଣ ଏତେ ଭାବୁଛୁ ଯେ ?" କେଶବା ପଚାରେ ହେମ କାନପାଖରେ ।

କ'ଣ ଆଉ ଭାବିବି । ଭାବିବା ପାଇଁ ତ ଏଇ ଲକ୍ଷ୍ମୀ । ତାରି କଥା ଭାବୁଛି । ଏବେତ କଞ୍ଚାମାଟିର ବୟସ । ଏତିକିବେଳୁ ବାପା ବୋଉ ପାଇଁ ତାର ଚିନ୍ତା । କେମିତି ଦି'ପଇସା ଘରକୁ ଆସିବ । ଦିନେ କହିଲା ଖାଲି, ଭାତ, ଲୁଗା ହେଇଗଲେ ସବୁ ହେଇଗଲା କି ବୋଉ, ଆହୁରିତ କେତେ ଖର୍ଚ୍ଚ ଅଛି । ଦୁହେଁ କେତେ ଆଉ ଖଟିବ । ଭାବୁଛି ଏଥର ମୁଁ ସାହାଯ୍ୟ କରିବି ତମକୁ । ସ୍କୁଲପଢ଼ା ସାରି ଫେରିଲା ବେଳେ ଦି'ଘଣ୍ଟା ଟ୍ୟୁସନ କରିବି । ସ୍କୁଲର ଜଣେ ଦିଦି ପଚାରୁଥିଲେ ମୋତେ, ମୁଁ ହଁ କରିଛି । କିଛି ନହେଲେ ମୋ'ପଢ଼ା ଖର୍ଚ୍ଚଟା ଯୋଗାଡ଼ କରିନେବି ।

ମୁଁ କହିଲି, ତୋ ପଢ଼ାରେ ବାଧା ହେବ, ଆଗକୁ ପରୀକ୍ଷା ସବୁ ଅଛି । ନିଜେ ପଢ଼ିବୁ କେତେବେଳେ ?" ସେ କହିଲା ତୃତୀୟ ପଞ୍ଚମ ପିଲାଙ୍କୁ ପଢ଼େଇବାରେ କଷ୍ଟ, କିଛି ଅସୁବିଧା ହେବନି ମୋର । ଭାବିଥିଲି ସପ୍ତାହେ ଟ୍ୟୁସନ କରିସାରି ଦେଖିବି, ତା'ପରେ ତୋତେ ଜଣେଇବି । ପୁଣି ଭାବିଲି, ତୁ ଯଦି ଖରାପ ଭାବିବୁ, ମୋତେ ଦୁଃଖ ଲାଗିବ । ସେଥିପାଇଁ ଜଣେଇଲି । କାଲିଠୁ ମୁଁ ଯିବି । ଫେରିଲା ବେଳକୁ ଟିକେ ଡେରି ହେବ । ବ୍ୟସ୍ତ ହେବୁନି ।

କେଶବା ହାଁ କରି ଚାହିଁଥିଲା ହେମ ମୁହଁକୁ । ତା'ଝିଅ କ'ଣ ଏତେ ବଡ଼ ହେଲାଣି ଯେ, ରୋଜଗାର କରି ତା' କଷ୍ଟକୁ ଲାଘବ କରିବ । ଛାତି ତାର ଗଦ୍‌ଗଦେଇ

Digitized by PPRACHIN, SOA

ଉଠିଲା' କହିଲା, ଏତେ କଥା ହେଲାଣି, ମୁଁ ତ ଜାଣିନି । କେବେଠୁ ସେ ଟ୍ୟୁସନ କଲାଣି ? "ଏଇ ଗତ ସପ୍ତାହରୁ ତ ଯାଉଛି, ସ୍କୁଲ ପାଖରେ ଜଣେ ମାଷ୍ଟରାଣୀଙ୍କ ସମ୍ପର୍କୀୟଙ୍କ ଘର, ସପ୍ତାହକୁ ଛ'ଦିନ ପଢ଼େଇବ ।

ନିଜ ପଢ଼ା ଅଛି । ବିଶ୍ରାମ ଟିକେ ପାଇବନି । ଏତେ ପରିଶ୍ରମକୁ ତାର ବୟସ କଣ ହେଲାଣି ? ବ୍ୟସ୍ତ ହେଇ କହିଲା କେଶବା, ଝିଅ ପାଇଁ । 'ମନା କରିଥାନ୍ତୁ' ମୁଁ ମନା କରିନି କି, କମଳା ଆଇ ବି କହିଲା । ଖାଲି କ'ଣ ସେତିକି, ତମେ ଜାଣିନ, ମଝିରେ ଦି'ଦିନ ସେ ଯାଏ ଆଉ ଗୋଟାଏ ଜାଗାକୁ ସିଲେଇ ଶିଖିବ ବୋଲି । ଶିଖିଲାଣି ବି । ମୋତେ ଏବେ ଶିଖଉଛି ହାତକାମ ।

ମୋତେ କହୁଥିଲା । ଇଏ କିଛି ନୁହଁ ବୋଉ, ଆଜିକାଲି କମ୍ପ୍ୟୁଟର ହେଲାଣି, ତୁ କଣ ଦେଖୁନଥିବୁ କି ସାନୁଭାଇଙ୍କ ଘରେ । ସେମାନଙ୍କ ସ୍କୁଲରେ ସେସବୁ ପଢ଼ା ହେଉଛି । ସେମାନେ ଜାଣୁଛନ୍ତି କେତେକଥା । ଆମର ତ ସେସବୁ ସୁବିଧା ନାହିଁ । ଯାହା ସୁବିଧାରେ ମିଳୁଛି ଶିଖିନେବା କଥା-କେତେବେଳେ କାମରେ ଆସିବ ।" ମୋତେ ଆଚମ୍ବିତ ଲାଗୁଛି । ରୋଜଗାରର କେତେ ବାଟ ସେ ଜାଣିଲାଣି । ତାରି ମନ ଅଛି ସେଇ କମ୍ପ୍ୟୁଟର ଶିଖିବାକୁ । ଶିଖିପାରନ୍ତାଣି ରାନୁମା'ଙ୍କଠୁ, ହେଲେ ନୂଆବୋଉଙ୍କ ମନକୁ ପାଇବନି । ମିଛରେ ଅଶାନ୍ତି ବଢ଼ିବ ।"

କେଶବା ମନେ ମନେ ଉଲ୍ଲସି ଉଠୁଥିଲା, ଝିଅର ସ୍ୱପ୍ନ ଦେଖୁଛି । ସାହସବି କରୁଛି । ଭଲକଥା । ତାଙ୍କ ଅଫିସର ବାବୁମାନଙ୍କ ଟେବୁଲ ଉପରେ ସେଇ ଯନ୍ତ୍ରରୁ ଗୋଟିଏ ଲେଖା ଥାଏ । ଶୁଣିଛି ମୁହୂର୍ତ୍ତକରେ କୁଆଡ଼େ ସବୁକଥା ଜାଣିହେବ ସେଥିରେ । ହେମକୁ କହିଲା, "ଈଶ୍ୱର ଚାହିଁଲେ ତାର ସବୁ ଇଚ୍ଛା ପୂରଣ ହେବ । ମୋତେ ଦିଶୁଛି ଜଳଜଳ । ସେ ବଡ଼ହେବ । ବଡ଼ ହେବା ପାଇଁ ନିଜବାଟ ସେ ଖୋଜୁଛି । କମଳାମା ଶୁଣି କହେ, ତମେ କାହିଁକି ଭୟ କରୁଛ ଯିଏ ନିଜ ବାଟ ଖୋଜି ପାଇଲାଣି, ଆକାଶକୁ ଛୁଇଁବ ବୋଲି ହାତ ବଢ଼େଇଲାଣି । କେହି ତାକୁ ଅଟକେଇପାରିବନି । ତମ ଇଚ୍ଛା ଅନିଚ୍ଛାକୁ ସେ ଚାହିଁବନି ।"

କେଶବା ଭାବେ, ଝିଅଟିଏ ବୋଲି ତା' ଜନ୍ମବେଳେ କେହି କେହି ଦୁଃଖ କରୁଥିଲେ, ଅଥଚ ପୁଅ ହୋଇଥିଲେ [illegible] କ'ଣ ହୋଇଥାନ୍ତା ଯେ... ହାତଯୋଡ଼େ ଠାକୁରଙ୍କୁ । ହେମଲତା କୁହେ... [illegible] ଏତେ କଥା ଭାବନି, ବଞ୍ଚି ରହିଥାଉ ମୋ ଝିଅ ।"

କେଶବା କାମକୁ ଗଲାବେଳେ ଦେଖେ, ଅଫିସର [illegible] ଙ୍କୁ । ଦେଖେ ସ୍କୁଲ କଲେଜ ଯାଉଥିବା ଝିଅଙ୍କୁ । କେଡ଼େ ନିର୍ଭୀକ । [illegible] ନବ ।

Digitized by PPRACHIN, SOA

ପୋଷାକପତ୍ର, କଥାବାର୍ତ୍ତା ସବୁରେ ଫିଟ୍‌ଫାଟ୍ । ସହରୀ ଝିଅ ଟିକିଏ ସାହସୀ । ଗାଡ଼ି ମୋଟରକୁ ବି ଭୟ ନାହିଁ । ନିର୍ଭର ନାହିଁ କାହା ଉପରେ । ପୁଅଙ୍କଠୁ ବଳି । ନିଜେ ଚଳଉଛନ୍ତି ଗାଡ଼ିମୋଟର । ତଟସ୍ଥ ହେଇ ଦେଖେ କେଶବା ସେମାନଙ୍କୁ ଏବଂ ମନେ ମନେ ତା'ଲକ୍ଷ୍ମୀକୁ ଖୋଜେ ସେମାନଙ୍କ ଭିତରେ । ଭାବେ, ଝିଅଟା ପାଇଁ ଯଦି ସାଇକେଲଟିଏ ଯୋଗାଡ଼ କରିପାରନ୍ତା, କେତେ ପରିଶ୍ରମ କମିଯା'ନ୍ତା ତାର । ସମୟ ପାଆନ୍ତାବି । ହେଲେ ସାମର୍ଥ୍ୟ ଜୁଟେନା । ମନକଥା ମନରେ ରଖେ । ଈଶ୍ୱରଙ୍କ କୃପା ଯେ-ଏ ଯାଏ ଯେମିତି ସେମିତି ଚଳେଇଆସିଛନ୍ତି । ଦଶଜଣରେ । ଇୟେ କ'ଣ କମ୍ କଥା । ଆଉ ଅଧିକା କ'ଣ ଚାହିଁବ । ଲକ୍ଷ୍ମୀ ମାଟ୍ରିକଟା ପାସ୍ କଲାପରେ ଶିବବାବୁ କିମ୍ବା ମା'ଙ୍କୁ କହିପୋଛି ଏଇ ଅଫିସ୍‌ରେ ଖଣ୍ଡେ ଚାକିରି ଯୋଗାଡ଼ କରିଦେବ...ଭାବେ କେଶବା । ହେମ ଆଗରେ ବି କେବେ ପ୍ରକାଶ କରେନା ତା'ଭାବନାକୁ । କେବଳ ପୋଷି ରଖେ ଆଶାମାନଙ୍କୁ । ରାନୁମା ଓ ସାନୁବାବୁ ମାଟ୍ରିକରେ ପ୍ରଥମଶ୍ରେଣୀ ପାଇ କଲେଜରେ ନାଁ ଲେଖେଇଛନ୍ତି- ତା ଝିଅ ବି ପଢ଼ନ୍ତା ସେମିତି-ସ୍ୱପ୍ନ ଦେଖେ ସେ ।

ଦିନେ ଦିନେ କାମରୁ ଫେରିଲା ବେଳକୁ ଡେରି ହୋଇଯାଏ କେଶବାର । ବାବୁଙ୍କ ଘର କାମସାରି ଘରକୁ ଫେରି ଅପେକ୍ଷା କରିଥାଏ ହେମ । କିମ୍ବା ବରାଦଥିବା ଲୁଗାପଟାରେ କିଛି ଛୁଞ୍ଚିକାମ କରୁଥାଏ । ଆଜିକାଲି ଲଣ୍ଠନ ଆଲୁଅରେ ଆଖିକୁ ଭଲ ଦିଶେନି । ରାନୁମା କହୁଥିଲେ, ତୋ'ଆଖି ଖରାପ ହେଲାଣି ନିଶ୍ଚୟ । ଚଷମା ଦରକାର । ଦିନେ ସୁବିଧା କରି ଯାଉନୁ ଆଖି ଡାକ୍ତରଙ୍କ ପାଖକୁ ।

ଆଜି କିନ୍ତୁ ହେମର ମନଟା ଭଲ ଲାଗୁନଥିଲା, କୌଣସି କାମରେ ସ୍ଥିରତା ଆସୁନଥିଲା, କମଳା ମା' ବି ନାହିଁ । ସାଇ ବୁଲି ଯାଇଥିବ । କହୁଥିଲା ତ ଶିବ ପ୍ରଧାନ ଘରକୁ ଯିବ ବୋଲି, କାଲି ତା'ପୁଅଟା ମଦପିଇ ବୋହୂଟାକୁ ନିସ୍ତୁକ ବାଡ଼େଇଛି । ବର୍ଷ ଦିଟା ବି ହେଇନି ଶାଶୂଘରକୁ ଆସି । କୁଆଡ଼େ ବାପଘରକୁ ଚାଲିଯିବାର ଧମକ ଦେଉଛି । ସ୍ୱାଭାବିକ କଥା । କେତେ ବା ରୋଜଗାର । ସେଥିରୁ ଅଧେରୁ ଅଧିକ ଯଦି ମଦ ଦୋକାନରେ ଦେବ, କୁଟୁମ୍ବ ବଞ୍ଚିବେ କେମିତି । ଝିଅଟିଏ ଚାରିମାସର । ତାକୁ କିମତି ବଞ୍ଚେଇବ । ବାରଘରେ ଅଇଁଠା ବାସନ ମାଜି ଦି'ପଇସା ରୋଜଗାର କରିବାକୁ ବୋହୂଟା ହିଁ ଶେଷକୁ ଗୋଡ଼ କାଢ଼ିବାକୁ ବାଧ ହେବ ନା । ସେଥିରେ ପୁଣି ଶାଶୂଶ୍ୱଶୁର ଖେଣ୍ଟା ମାରିଲେ କ'ଣ କରିବ ବୋହୂଟି ? ନିଜ ବାଟ ନିଜେ ନଦେଖିଲେ ଆଉ ଉପାୟ ନାହିଁ ଏଇ ମେହେନତ ମଣିଷର । ସେଇକଥା ବୁଝଉଥିବ କମଳା ମା' ଶିବ ପ୍ରଧାନକୁ । ଆଉ ରାମା ରାଓ ରିକ୍ସାବାଲା ଘରେ ତ ନିତି ନୂଆ ନୂଆ ସମସ୍ୟା, ଏଇ ଗଲା ସପ୍ତାହରେ ତା'ଝିଅ ଜ୍ୟୋତି କୋଉ ଅଟୋ ଡ୍ରାଇଭର ସାଙ୍ଗରେ ଚାଲିଯାଇଛି । ରାମାରାଓ

Digitized by PPRACHIN, SOA

ଜାଣିନଥିଲା । ଚାରିଦିନ ଖୋଜାଖୋଜି କଲାପରେ କିଏ ଜଣେ ଖବର ଦେଲା ଯେ, ଜ୍ୟୋତି କଟକ ତେଲଙ୍ଗାପେଣ୍ଠରେ ଗୋଟେ ଟୋକା ଅଟୋ ଡ୍ରାଇଭର ପାଖରେ ରହୁଛି, ଆଗରୁ ବଡ଼ଝିଅ ମଣିରତ୍ନା ସ୍ୱାମୀକୁ ଛାଡ଼ି ପିଲାଦିଟାଙ୍କୁ ଧରି ଫେରିଆସିଛି ବାପ ପାଖକୁ । ରାମାରାଓ ସ୍ତ୍ରୀ କାନ୍ଦୁଥିଲା, କେମିତି ପୋଷିବି ଆଉରି ତିନିଟା ପେଟ ବୋଲି- ମୋ' ଝିଅମାନଙ୍କର ବୁଦ୍ଧି ନାହିଁ କିଛି ମା' ଘର, ବରକୁ ନ ସମ୍ଭାଳିଲେ, ସେମାନେ କେବେ ବିଶ୍ୱାସରେ ରହିବେକି ? କମଳାମା ଆଗରେ ସମସ୍ତେ ଆସି ଦୁଃଖ କହନ୍ତି । ସେ ଶୁଣେ ଧୈର୍ଯ୍ୟର ସହିତ । ଆହାରେ ଆହା ମିଶେଇ ।

ଦିନେ ଦିନେ ରାତିରେ କାହାଘରେ ଚୂଲି ଜଳେନି ତ, କାହାଘରେ ମଦମାଉଁସର ତାଉରେ ହୋ ହଲ୍ଲା, ଚଉପଦୀ ସାଙ୍ଗକୁ ଅସଭ୍ୟ ଆଚରଣର ତୋଫାନ ଉଠେ, ପାଟିଗୋଳ ହୁଏ । ବିଟ୍ ପୋଲିସ୍‌କୁ ବି ମୁହୂର୍ତ୍ତେ ଅଟକି ଯିବାକୁ ହୁଏ ସମାଧାନ କରିବାକୁ ।

ଏଇତ ନିତିଦିନର ବସ୍ତି ଜୀବନ । ଜୀବନ ବଞ୍ଚିବାକୁ ଯାଇ ଜୀବନକୁ ବେଳେବେଳେ ବାଜି ଲଗେଇ ଦିଅନ୍ତି, ଅଭାବ, ଅସୁବିଧା, ଅଶାନ୍ତି ଭିତରେ ଜୀବନ ଗଡ଼ିଚାଲେ ତା'ବାଟରେ । ବାଜା ବାଜେ, ବାହାଘର ହୁଏ, ରୋଶଣି ବି ହୁଏ ଲିଟୁମାଳ ଝୁଲେ ବିଜୁଳି ବତି ଖୁଣ୍ଟରୁ ହୁକ ପକେଇ ଆଲୁଅ ଅଣାହୁଏ । ଭଜମନ ଧୋବାର କାଠକେବିନ୍ ତା'ଝିଅ ରମାମଣି ପାଇଁ କେବେକେବେ ମାଧବୀକୁଞ୍ଜ ପାଲଟେ ଅନ୍ଧାର ରାତିରେ ତ ଦିନର ଆଲୁଅରେ ସେଇ ଜୀବନ ଲୁଣିଆ ଝାଳରେ ଗାଧେଇ ହେଇ ପେଟ ପାଇଁ ଦାନା ଖୁଣ୍ଟେ ।

ତାରି ଭିତରେ ବସ୍ତିମଣିଷ ସୁଖରେ ସୁଖ, ଦୁଃଖରେ ଦୁଃଖ ବାଣ୍ଟି ବଞ୍ଚିବାର ପ୍ରୟାସ କରନ୍ତି । ହେମ ଆଉ କେଶବାର ଜୀବନ ବି ଏଇମାନଙ୍କ ଭିତରେ ଚାପିଚୁପି ହେଇ ଗଡ଼ିଚାଲେ । ସଭିଙ୍କ ସହିତ ସମ୍ପର୍କ ରଖି ମଧ୍ୟ ଅନ୍ତରଙ୍ଗ ହୋଇପାରେନା ହେମ କାହିଁକି କେଜାଣି । ଲକ୍ଷ୍ମୀକୁ ଭଲ ଲାଗେନା ଏଇ ବସ୍ତି ଜୀବନ । ତଥାପି ସେ ତା' ପଢ଼ାର ପରିବେଶକୁ ନିଜେ ସଜାଡ଼େ । ତାକୁ ଯେମିତି ହେଉ ପଢ଼ିବାକୁ ହେବ । ନିଜକୁ ସେ ଗଢ଼ିବ । ଅନ୍ୟ କୋଉ କଥାରେ ତା ମନ ଯୋଡ଼େନା । ଟ୍ୟୁସନରୁ ଫେରିଲେ ଟିକିଏ କ'ଣ ପାଟିରେ ଦେଇ ପଢ଼ିବସେ ।

ଲକ୍ଷ୍ମୀ ପଢୁଛି । କେଶବାର ଡେରି ହେଲାଣି ଫେରିବାକୁ । ଅସ୍ଥିର ଲାଗୁଥିଲା ହେମକୁ । ଅସମର୍ଥ ମଣିଷ ତ । କେତେବେଳେ କୋଉ କଥା । ଘରୁ ବାହାରକୁ, ବାହାରୁ ଘରକୁ ହେଇ ହେମ ସମୟକୁ ଡେଙ୍ଗିବାକୁ ଚେଷ୍ଟା କରୁ କରୁ ବାହାରେ କେଶବାର ପାଟି ଶୁଭିଲା । ପାଣି ଢାଳେ ଆଉ ଗାମୁଛା ନେଇ ହେମ କେଶବା ହାତକୁ ବଢ଼େଇ ଦେଇ ଘର ଭିତରକୁ ଆସି ଭାବିଲା କ'ଣ ଜଳଖିଆ ସଜାଡ଼ିବ । ମନଟା ମୋଟେ ଭଲ ଲାଗୁନଥିଲା, କଥାଟା ଶୁଣିଲା ବେଳୁ ।

Digitized by PPRACHIN, SOA

କେଶବା ମୁହଁ ହାତ ଧୋଇ ଘର ଭିତରକୁ ଆସି ମସିଣା ଉପରେ ଲମ୍ବ ହୋଇ ବସି ହେମକୁ ବରାଦ ଦେଲା, କପେ ନାଲି ଚା' ଦିଅନ୍ତୁନି ହେମ, ମନ ଅସ୍ଥିର ଲାଗୁଛି । ଅନେକ ବାଟ ଚାଲିବାକୁ ପଡ଼ିଲା, ଟାଉନ୍ ବସ୍ ଧରିପାରିଲିନି ତ ।"

ହେମ ଚୁପ୍‌ଚାପ୍ ଉଠିଗଲା ଚା' କରିବାକୁ କିଛି ନ କହି, ଭୋକ ଉପାସରେ ଖଟି ଖଟି ଆସିଛି ମଣିଷଟା । ଆଗ ଚା' ଟିକେ ଦେଇସାରି ପଛକେ ଜଣେଇବ ଖବରଟା । ଚା' ଫୁଟିଲା, ଗିଳାସରେ ଛାଣି, କେଶବା ସାମ୍ନାରେ ଥୋଇ ବସିପଡ଼ିଲା ହେମ ମଣିଣା ଉପରେ । କେଶବା ଚାରିଢୋକ ପିଇଛି କି ନାହିଁ "ପଚାରିଲା ଆଜି ତୋ ମୁହଁ କାହିଁକି ଶୁଖିଯାଇଛି, ଲକ୍ଷ୍ମୀ ଆସିଲାଣି ତ ?"

ହେମ ଆଉ ରୋକି ପାରିଲାନି ନିଜକୁ, ରୁଦ୍ଧ କଣ୍ଠରେ କହିଲା, "ମା ସା'ନ୍ତାଣୀ ଚାଲିଗଲେ ।" କେଶବାର ଚା'ଗ୍ଲାସ୍ ଖସିପଡ଼ିଲା ହାତରୁ, କେବେ କେମିତି କିଏ କହିଲା ତୋତେ ? କେଶବା ହଠାତ୍ ନିଜକୁ ଶୂନ୍ୟ, ଅସହାୟ ବୋଧ କଲା । ସେ ଅନାଥ ହୋଇଗଲା ଦ୍ୱିତୀୟଥର ପାଇଁ । ବୋଉ ମଲାବେଳେ ତା'ର ହେତୁ ହେଇ ନ ଥିଲା କି ଦୁଃଖର ଗଭୀରତା ମାପିବା ଶକ୍ତିବି ତା'ର ନ ଥିଲା । ସେ କାନ୍ଦିଥିଲା ସମସ୍ତଙ୍କ ସହିତ । ସମସ୍ତେ କହୁଥିଲେ "ପିଲାଏ ଅନାଥ ହେଇଗଲେ, ବିଶେଷକରି କେଶବାଟା ।" ସେ କିନ୍ତୁ ବୁଝିପାରି ନଥିଲା- ସମୟକ୍ରମେ ଭୁଲିହେଇ ଯାଇଥିଲା ସବୁ । ଆଜି କିନ୍ତୁ ସତକୁ ସତ ସେ ଅନାଥ ହେଇଗଲା, ଛାତି ଭିତରୁ କୋହ ଉଠିଲା । ଭୋ ଭୋ ହୋଇ କାନ୍ଦିଉଠିଲା ବିକଳରେ ।

ହେମ ବି କାନ୍ଦିଲା । ଦୁହେଁ ମିଶି କାନ୍ଦିଲେ । ଲକ୍ଷ୍ମୀ ଧାଇଁ ଆସିଲା । ବାପା ବୋଉକୁ ସାହସ ଦେବାକୁ । କେଶବା କହିଲା, ସେ କେବେ ଈଶ୍ୱରଙ୍କୁ ଦେଖିନି କିନ୍ତୁ ମା' ସା'ନ୍ତାଣୀଙ୍କୁ ଦେଖିଛି । ସାକ୍ଷାତ୍ ଠାକୁରାଣୀ, ବିପଦ-ଆପଦ, ସୁଖ-ସଂଘର୍ଷ ସବୁଥିରେ ମା' ଠିଆ ହୋଇଥିଲେ ତା'ପାଖରେ । ପୁଅ ଭଳି ସ୍ନେହ କରୁଥିଲେ । ତା'ପାଇଁ ଲଢୁଥିଲେ ଅନ୍ୟମାନଙ୍କ ସାଥିରେ । ବଡ଼ଘରର ମଣିଷ ବୋଲି ନୁହେଁ, ମନରେ ଆଉ ବିଚାରରେ ସେ ଖୁବ୍ ବଡ଼ ମାପର- ଆଜି ଜାଣି ମୁଣ୍ଡ ଉପରୁ ଆଶ୍ରା ଉଠିଗଲା । ମା' ସା'ନ୍ତାଣୀ ଭଲ ମଣିଷ ଥିଲେ ।

ହେମ କହିଲା- ଶିବବାବୁ କହୁଥିଲେ, କିଛି ହେଇନଥିଲା, ଦିନ ଚାରିଟାର ଜ୍ୱର, ଦ୍ୱାଦଶୀ ପାରଣାକୁ ଉମା ଉଠେଇବାକୁ ଯାଇ ଦେଖେ ତ ମା ସା'ନ୍ତାଣୀ ନାହାନ୍ତି ।

କମଳାମା ବୁଝେଇଲା- "ସଂସାରଟା ଏମିତିରେ ବାପ, ସମସ୍ତେ ଏକା ଆସିଥାନ୍ତି, ଗଲାବେଳକୁ ବି ଏକା । ମଝିରେ ଥିବା କେଇଟା ଦିନ ଯାହା ମାୟା ଭିତରେ ଘାଣ୍ଟି ହୋଇ ଅଣନିଃଶ୍ୱାସୀ ହୁଏ ।"

Digitized by PPRACHIN, SOA

ସେଇ ରାତିରେ କେହି ଆଉ ଖାଇପାରିଲେନି । କମଳାମାକୁ ରୁଟି ଖଣ୍ଡିକ ଡାଲିରେ ଭିଜେଇ ବାଢ଼ିଦେଲା ଲକ୍ଷ୍ମୀ । ତା' ଦେହଟା ବି ଭଲ ରହୁନି ଆଜିକାଲି । ଧଇଁକାଶରେ ସେ ଭୂଇଁ ସାଉଁଟୁଛି । ମଣିଷ ଜୀବନର କି ଭରସା । ଆଜି ଅଛି କାଲିକୁ ନାହିଁ ।

ସେଇ ବର୍ଷର ଦୁର୍ଗାପୂଜା... । କମଳାମାର ଘରଛାଡ଼ଯାଇଥିବା ପୁଅ ବାଇଧରର ହଠାତ୍ ଆବିର୍ଭାବ ଘଟିଲା । ଏତେବର୍ଷ ପରେ ମନେପଡ଼ିଲା ବୁଢ଼ୀମା । ମା'କୁ ଦେଖିବ ବୋଲି ଆସିଲା । କଲିକତାର କୋଉ ଗୋଟାଏ ଲୁଗାକଲରେ କୁଆଡ଼େ ସେ କାମ କରୁଛି । ପିଲାଏ ବି ତାର ସେଇଠି ରହନ୍ତି ।

କମଳାମା ଦେଖିନି କେବେ ତା' ନାତିନାତୁଣୀର ଚେହେରା । ବାହା ହେବାର ଛ'ଟା ମାସ ହେଇନି, ଶାଶୂ ସଙ୍ଗେ କଳିଗୋଳ ଆରମ୍ଭ କଲା ବୋହୂ । ରଖିଥୋଇ ଦେଲାନି ରାହାବାଳୀଟା, ତାକୁ ଚାହିଁ ପୁଅ । ଆପଣା ରାଣିରେ ତେଲ ନାହିଁ । କାହା ସଙ୍ଗେ ବାଦ କରିବ କମଳାମା' । ଅଲଗା ଘର କରି ବାଇଧର ମା' ମୁହଁ ଚାହିଁବନି ବୋଲି ଚାଲିଗଲା ଦିନୁ କମଳାମା' ଟିକିଏ ଶାନ୍ତିରେ ନିଶ୍ୱାସ ମାରିଥିଲା । କିଏ ପଚାରିଲେ ଖୁବ୍ ସହଜ ଭାବରେ ହିଁ କହୁଥିଲା, ଜଣକୁ ତ ଦୈବ ଛଡ଼େଇ ନେଲା ଯେ, ଛାତିକୁ ପଥର କରି ସହିଲି । ବାପ ତ ଆଗରୁ ଯାଇଥିଲା ଦୁଃଖ ଦେଇ; ଆଉ ଏବେ ପୁଅ ବୋଲି କେତେ ସହିବି... ଯାଉ, ଭାବିନେବି ଯାକୁ ବି ଦୈବ ନେଲା' ଯା, କୋଉଠି ରହୁଛି, କ'ଣ କରୁଛି ମୁଁ କ'ଣ ଜାଣେ ଯେ କହିବି । କେତେଦିନର ଜୀବନ ଆଉ ମୋର... ହାତଗୋଡ଼ ଚଳୁଥିବା ଯାକେ ଭାତର ଅଭାବ ହେବନି । ଅଚଳ ହେଲେ ତ ସବୁ ଶୂନ୍ୟ ।"

ସେଇ ପୁଅ ବାଇଧର ଏବେ ମା'କୁ ଦେଖିବା ବାହାନାରେ ଆସିଲା । ସହଜ ଗତିରେ ଚଳିଆସୁଥିବା ଜୀବନକୁ ଧ୍ୱସ୍ତବିଧ୍ୱସ୍ତ କରିଦେବାକୁ । ଆସିଲା ଭୟଙ୍କର ଘୂର୍ଣ୍ଣିବାତ୍ୟା ଭଳି ।

ମଣିଷ ଚରିତ୍ର ସତରେ ବଡ଼ ବିଚିତ୍ର । ଆହୁରି ରହସ୍ୟମୟ ତାର ମନର ରୂପ । ସବୁ ମଣିଷ ବି କଣ ଆଚାର ବିଚାରରେ ସମାନ । ଅନ୍ୟର ସୁଖଶାନ୍ତିକୁ ଦି ଆଖିରେ ଦେଖିପାରିବାର ସ୍ୱଭାବ ସମସ୍ତଙ୍କ ପାଖରେ ନ ଥାଏ । ବଡ଼ ଦୁଃସ୍ଥ ଏମାନଙ୍କ ମାନସିକତା, ଭାରି ରୁଗ୍ଣ ମନ; ନିଜର ସେଥିରେ ସ୍ୱାର୍ଥ ଥାଉ କି ନ ଥାଉ, କିଛି ଯାଏ ଆସେନା, ଆଉ ଜଣେ କିନ୍ତୁ ସୁଖରେ ସୁବିଧାରେ ରହିପାରିବନି । ତେଣୁ ତାଙ୍କୁ ହନ୍ତସନ୍ତ କରି ସେମାନେ ସୁଖପା'ନ୍ତି । ବାଇଧର ଏଇ ଧରଣର ଗଣ୍ଡମୂର୍ଖ- ପରକଥାରେ ଭାସିଯିବା ସ୍ୱଭାବ- ପୁଣି ନିଶାଖୋର । ବାଇଧର କାନରେ କିଏ କି ମନ୍ତ ଫୁଙ୍କିଲା କେଜାଣି, ଦିନେ ସକାଳୁ ସକାଳୁ ମାଡ଼ି ଆସିଲା ଝଡ଼ ଭଳି ।

Digitized by PPRACHIN, SOA

କେଶବା- ହେମଲତାର କୂଳରେ ଲାଗି ଆସୁଥିବା ଜୀବନ ନୌକାକୁ ଦୋହଲାଇ ଦେଲା । ବଂଚିବା ପାଇଁ ଅହରହ ସଂଘର୍ଷ କରିଆସୁଥିବା ଜୀବନ କେତେ କଷ୍ଟରେ ଥୟ ଧରି ଆସୁଥିଲା । ବ୍ୟତିବ୍ୟସ୍ତ ହୋଇ ତଟସ୍ଥ ହେଲା, ଘଟଣା କ'ଣ ! କୁହାବୋଲା ନାହିଁକି ଶୁଣା ନାହିଁ, ଆସି କଳିଗୋଳ । ବାଇଧର ଅଭିଯୋଗ କଲା, ତା'ମାର ଅର୍ଜିତ ସମ୍ପତ୍ତିକୁ ହାତେଇ ନେବା ଉଦ୍ଦେଶ୍ୟରେ ହିଁ କେଶବା ପରିବାର ଏଠି ରହୁଛନ୍ତି । ମା'କୁ ଦେଖାଚାହାଁ କରିବା ଗୋଟାଏ ବାହନା ମାତ୍ର, ବିନା ଫାଇଦାରେ ପରକୁ କିଏ ନିଜର କରେ । ଆଉ ମା'ବି ତାର ମୂର୍ଖ, ଯିଏ ପୁଅବୋହୂ ପାଖରେ ଶାନ୍ତିରେ ରହିପାରିଲାନି, ସିଏ ପରକୁ ଆପଣାର କରି ରହିପାରିବ । ସବୁ ମିଛ, ଏତେଦିନ ଧରି ସବୁ ଶୁଣି ମଧ ମା'ର ଖାତିରରେ ଚୁପ୍ ରହିଛି । ଏଣିକି ବରଦାସ୍ତ କରିବନି ସେ । ଯଦି ସହଜରେ କେଶବା ତା' ପରିବାରକୁ ନେଇ ଏ ଘର ନ ଛାଡ଼ିବ, ତାହେଲେ ସେ ଅନ୍ୟ ଅବସ୍ଥା କରିବ । ଗୁଣ୍ଡା ଲଗେଇବ । ଉଠେଇ ନେବ ଝିଅକୁ କଲିକତା ବଜାରରେ ବିକ୍ରି କରିବାକୁ । କେହି ଯେମିତି ପଛରେ ତାକୁ ଦୋଷ ନ ଦିଅନ୍ତି । ମା' ତାର, ତା' ଅଧିକାର ଆଗ । ଏମାନେ ସ୍ୱାର୍ଥପର । ହାଣିକାଟି ରକ୍ତ ବୁହାଇ ଦେବି ।

ଥରିଗଲା କେଶବାର କଳିଜା । ସେ ଭୋଗିଛି ଥରେ, ଦେଖିଛି ଏଇ ଅମଣିଷମାନଙ୍କ ସ୍ୱରୂପ । ଭୋଗୁଛି ମଧ ତାର ଫଳ । ନିଜ ପାଇଁ ତାର ଚିନ୍ତା ନ ଥିଲା, ସେ'ଦିନ ବି ନ ଥିଲା, ଆଜି ବି ନାହିଁ । ଚିନ୍ତା ଲକ୍ଷ୍ମୀ ପାଇଁ । ବିଚାର ନ ଥିବା ନିଶାଖୋର ଅମଣିଷକୁ ପରତେ ନାହିଁ । ଚାହିଁଲେ କିଛି ଅସମ୍ଭବ ନାହିଁ ଏମାନଙ୍କ ପାଇଁ । ଯେତେ ତଳକୁ ବି ଓହ୍ଲେଇ ପାରିବେ । କି ଯେ ଜଘନ୍ୟ, ବର୍ବର ମଣିଷ ଏମାନେ । ସେଦିନ ନିଜକୁ ନିଜ ଗୋଡ଼କୁ ବଳିଦେଇ ହେମକୁ ବଞ୍ଚେଇ ପାରିଥିଲା ବୋଲି ଆଜି ଲକ୍ଷ୍ମୀକୁ କୋଉଠି ଲୁଚେଇବ । ସେତ ଅକ୍ଷମ । ହେ ଠାକୁରେ । ପୁଣି କାହିଁକି ଏ ଅଗ୍ନି ପରୀକ୍ଷା । ବିକଳ ହେଇ ପଡ଼ିଲା କେଶବା ନିଜ ଭିତରେ । କିଏ ଅଛି ଆପଣାର ଯେ, କହିବ, ସାହଯ୍ୟ ମାଗିବ । କିଏ ଥିଲେ ବି, ସେମାନେ କାହିଁକି ବିପଦ ସାମ୍ନାକୁ ଆସିବେ ।

ସତକୁ ସତ ସାଇପଡ଼ିଶାର କେହିବି ସାହସ କରି ଆସିନଥିଲେ ବାଇଧରକୁ ବୁଝେଇବା ପାଇଁ । ହେମ ତ ବରଫ ପାଲଟିଯାଇଥିଲା । ଲକ୍ଷ୍ମୀ କିନ୍ତୁ ସାହସ ହରେଇ ନଥିଲା କହିଲା । "ଭୟ କାହିଁକି ବାପା, ଆମେ ପୋଲିସ୍‌ରେ ଖବର ଦେବା । ମୁଁ ନିଜେ ଯିବି ।" କେଶବା ତା'ପାଟିରେ ହାତଦେଇ କହିଲା "ସେମିତି ଦୁଃସାହସ କରନା ଝିଅ, ଆମେ ନିଆଶ୍ରୀ ଗରିବ, ତୋର ସିନା ମନେ ନ ଥିବ, ମୋର ମନେ ଅଛି ଭାବପୁର ଘଟଣା । ମା ସା'ନ୍ତାଣୀ ବି ହାର ମାନିଥିଲେ ଏଇ ଦୁଷ୍ଟଙ୍କୁ । କିଏ ଶୁଣିବ ଆମ କଥା ?

Digitized by PPRACHIN, SOA

କି ପରିଚୟ ଅଛି ଆମର ? ପୋଲିସ କିଛି କରିବନି- ତୁ ଏ ସଂସାରକଥା ଜାଣିପାରୁନୁ । ସବୁ ସୁଖସୁବିଧା ଥିଲା ଲୋକଙ୍କ ପାଇଁ, ଆମେ ତ ଅନ୍ୟର ଦୟାରେ ବଞ୍ଚୁଛେ । ବରଂ ଦୁଷ୍ଟକୁ ଆଡ଼େଇ ଚଳିବା ଉଚିତ ହେବ ଝିଅ", ବାଇଧର ଗର୍ଜୁଥିଲା ବାହାର ବାରଣ୍ଡାରେ ବସି ।

ଲକ୍ଷ୍ମୀ କିନ୍ତୁ ଗ୍ରହଣ କରିପାରୁ ନଥିଲା ବାପର କାକୁସ୍ଥପଣକୁ- କେବଳ କମଳା ମା' ମୁହଁକୁ ଚାହିଁଦେଲେ ମନ ତାର ଦବି ଯାଉଥିଲା । ଯାହା ହେଲେ ବି ସେ ମା' ବାଇଧର ତା'ପୁଅ । କମଳା ମା' ପାଖରେ ସେମାନେ କୃତଜ୍ଞ ।

ବାଇଧର ଗର୍ଜି ଗାର୍ଜି କ୍ଲାନ୍ତ ହୋଇଆସିଲା, ନିଶା ତାକୁ ଅବଶ କରିଦେଉଥିଲା । ହଠାତ୍ ଭୂତ ଲାଗିଲା ଭଳି ଘର ଭିତରକୁ ଯାଇ ରୋଗ ବିଛଣାରୁ ମା' ବୁଢ଼ୀକୁ ଉଠେଇ ଆଣି ଜବାବ ମାଗିଲା-" ଏଇ ମୁହୂର୍ତ୍ତରେ କେଶବାକୁ ଘରୁ ବାହାର କରି ଚାବିକାଠି ମୋତେ ଦେ, ତୋତେ ବି ପୂରେଇବିନି ଘର ଭିତରକୁ । ଦେଖିବା କିଏ କଣ ମୋର କରିବ ।"

ଯିବାଆସିବା କରୁଥିବା, ଆଉ ଚାରି ଛ' ବସ୍ତି ଭାଇ ଆସି ଜମିଗଲେ । ବୁଝାବୁଝିରେ ବାଇଧରକୁ କହିଲେ, ଜାଣି ଜାଣି ତୁ ଭଲ କରୁନୁ । ଏତେବର୍ଷ ହେଲା କାହିଁ ତୋର ଦେଖା ନଥିଲା, କୋଉଠି ଥିଲୁ ତୁ ! କୋଉଠି ଥିଲା ତୋର ପୁଅପଣିଆ । ମା' ମନେପଡ଼େ ନଥିଲା ? କେତେ ରୋଗ ବଇରାଗ ଭୋଗିଛି କମଳାମା, ଦିନେ ଆସି ପଚାରିଛୁ କେମିତି ଅଛି ? ଦେଇଛୁ ଦି' ପଇସା ଖରଚ କରିବୁ ବୋଲି ? ନିଜେ ଖଟୁଛି, ନିଜ ରୋଜଗାରରେ ବଞ୍ଚୁଛି । ତୁ କିଏ ତାକୁ ଧମକେଇବାକୁ ? ଆମେ ମରିନୁରେ ବାଇଧର, ବଞ୍ଚିଛୁ । ତୋତେ ବି ଚିହ୍ନିଛୁ । ଏବେ ଆସିଛି ପୁଅ, ପୁରୁଷପଣ ଦେଖେଇବାକୁ । ଯାଃ, ସିଧା ଯା' ଏଠୁ । ନିଶା କଟିଲେ ଆସି କଥା ହେବୁ । ନ ହେଲେ ଥାନା ବାବୁଙ୍କୁ ଡାକିବୁ ସିଧା ସଳଖ ।

କମଳା ମା'ର ଶକ୍ତି ନଥିଲା ପୁଅ ସଙ୍ଗେ ଗର୍ଜିବାକୁ । ଖାଲି କାନ୍ଦିଲା । ତାର ପ୍ରତିବାଦ ନିଶାସକ୍ତ ପୁଅ ମୁଣ୍ଡରେ ପଶୁନଥିଲା । ଦୁଃଖ କଲା, ମାତୃତ୍ୱ ବାହୁନିଲା ଭାଗ୍ୟକୁ ନିନ୍ଦିଲା, ନିନ୍ଦିଲା ତାର ଅଭିଶପ୍ତ ମାତୃତ୍ୱକୁ । ଜନ୍ମ ହେଇଗଲେ କଣେ କେବଳ ପୁଅର ଅଧିକାର ପାଏନି । କର୍ତ୍ତବ୍ୟ କରିବାକୁ ପଡ଼େ । ଦାୟିତ୍ୱ ତୁଲେଇବାକୁ ହୁଏ । କେବେ କରିଛୁ କି ଏସବୁ ? ମୋ ପାଇଁ ତ ତୁ ମରିସାରିଥିଲୁରେ, ପୁଣି କାହିଁକି ଆସିଲୁ ଖୋଜିବାକୁ । ତୋର ତ ଛିଣିଯାଇଛି କୋଉ ଦିନୁ ।

ବାଇଧର କାନରେ କିଛି ପଶୁନଥିଲା ମା'ର କଥା । ନିଶାରେ ଟଳି ପଡ଼ିବା ଆଗରୁ, କିଏ ଜଣେ କହିଲା, "ତାକୁ ଘୋଷାରି ନିଅ ବାହାରକୁ, ଶୋଇ ପଡ଼ିଲେ

Digitized by PPRACHIN, SOA

ଅସୁବିଧା । ଉଠି ପୁଣି ଗର୍ଜିବ ।" ଦି'ଜଣ ଲୋକ ତାକୁ ଉଠେଇ ଘୋଷାରି ନେଇଗଲେ ରାସ୍ତାକୁ ।

ପୁଣି ଅଥୟ ହେଲା କେଶବାର ଜୀବନ । ବିପଦ ମାଡ଼ି ଆସିବାର ସୂଚନା ମିଳିଲାଣି । କିଛି ଗୋଟାଏ ଘଟିବା ପୂର୍ବରୁ ତାକୁ ବ୍ୟବସ୍ଥା କରିବାକୁ ପଡ଼ିବ । ଆଉ ହାତଟେକି ବସିଲେ ଚଳିବନି । ଈଶ୍ୱର ତ ନିଜେ ଆସି କିଛି କରିଦେବେନି । ମଣିଷକୁ ହିଁ ଉପାୟ ଖୋଜିବାକୁ ପଡ଼େ । ଈଶ୍ୱର କେବଳ ଗୋଟାଏ ଆଶ୍ୱାସନା ନହେଲେ ଦମ୍ଭ ।

ହେଲେ, କ'ଣ ସେ କରିବ ? ପରାମର୍ଶ କରିବ ତ କାହା ସହିତ ? ମା'ସାନ୍ତାଣୀତ ନାହାନ୍ତି ବାଟ ଦେଖେଇବାକୁ । ଶିବବାବୁଙ୍କୁ ପଚାରିବ ? କେଶବାକୁ ପୁଣି ଅସହାୟ ହିଁ ଲାଗିଲା, ନିଦ ହେଲାନି ଚିନ୍ତାରେ । ନିତିଦିନ ଭଳି କାମକୁ ଯାଉଥିଲା, ହେଲେ ମନ ଲାଗୁନଥିଲା କୋଉଥିରେ, ଦୈନନ୍ଦିନ ଜୀବନ ଚାଲୁଥିଲା ସତ ହେଲେ ଫୂର୍ତ୍ତି ନ ଥିଲା କାହା ମନରେ । ଯିମିତି ଭିତରେ ସବୁ ନିରବି ଯାଇଛି । ଚୁପ୍‌ଚାପ୍ ଏକ ଭୟର ବାତାବରଣ ।

ଦିନେ ତା' ଅନ୍ୟମନସ୍କତାକୁ ଲକ୍ଷ୍ୟକରି, ସାଥିରେ କାମ କରୁଥିବା ବନ୍ଧୁ ବିଦ୍ୟାଧର ପଚାରିଲା, 'ତୋର ଆଜିକାଲି କଣ ହେଇଛି କି କେଶବା'ଇ କେମିତି ଅସ୍ଥିର ଜଣାପଡୁଛୁ ? ଘରେ ସବୁ ଠିକ୍‌ଠାକ୍ ଚାଲିଛି ତ ?"

"କ'ଣ ଆଉ ହେବରେ ଭାଇ, ଏଇ ଗୋଡ଼ ଗଲା ଦିନୁ ଦୁଃସ୍ଥିତି, ଦୁର୍ଯୋଗ କ'ଣ କେବେ ମୋ ହାତ ଛାଡ଼ିଲାଣି ? ତୁ ତ ଅଳ୍ପ ବହୁତେ ସବୁ ଜାଣୁ । ଗଲା ମାସରେ କମଳା ମା' ପୁଅ ଆସି କେମିତି ଗଣ୍ଡଗୋଳ କରିଯାଇଛି ଜାଣିଛୁ । ଧମକ ଦେଇଛି ବି । ସେଇ ଭୟ । ଝିଅଟା ବାହାରକୁ ଯାଉଛି । ଗଲାଠୁ ଆସିଲା ଯାଏ ମୋ ମନ ପ୍ରାଣ ତାରି ପାଖରେ । ସେ ଘରକୁ ଆସିଲେ ଟିକିଏ ନିଶ୍ଚିନ୍ତ ଲାଗୁଛି ଯାହା । ନିଶାପାଣିର ମଣିଷ ସେମାନେ । ବିଚାର ନାହିଁ । କି ବିଶ୍ୱାସ ସେମାନଙ୍କୁ । ଭଲମନ୍ଦ କିଛି ଗୋଟାଏ ହେଇଗଲେ, କାହା ପାଖରେ ଗୁହାରି କରିବି କହୁନୁ । ମୁଣ୍ଡ ଗୁଞ୍ଜିବାକୁ ଆଶ୍ରା ଟିକେ ମିଳିଛି ବୋଲି, ଶାଗପେଜ ଖାଇ ଯିମିତି ସିମିତି ବଞ୍ଚିଯାଇ ପାରୁଛୁ । ନହେଲେ ଏତେ ବଡ଼ ସହରରେ ମୋ ଭଳି ମଳି ମୁଣ୍ଡିଆର ଥାନ କାହିଁ ? ବଢ଼ିଲା ଝିଅକୁ ନେଇ ହଠାତ୍ କୁଆଡ଼େ ଯିବି । ଆଗରେ ମାଟ୍ରିକ୍ ପରୀକ୍ଷା । ଏତିକିବେଳକୁ ଯେତେକ ବିପତ୍ତି । କିଛି ବୁଦ୍ଧି କୁଳଉନିରେ ଭାଇ ।"

ଆଶ୍ୱାସନା ଦେଲା ବିଦ୍ୟାଧର । ଥୟ ଧର କେଶବା'ଇ । କିଛି ଗୋଟାଏ ବାଟ ତ ନିଶ୍ଚେ ଦିଶିବ । ଆମଭଳି ଦିନମଜୁରିଆ ଆଗକୁ ତ ବେଶି ଭାବିପାରିବନି କି ଦେଖିପାରିବନି । କାଲି କଥାଟା ବି ଭାବିବା ପାଇଁ କି ଯୋଜନା କରିବା ପାଇଁ ସାହସ

Digitized by PPRACHIN, SOA

ହେଉନି । ଆଜିଟା ବଞ୍ଚିଯାଇଛେ ପିଲାଏ ଭଲ ଅଛନ୍ତି, ବାସ୍ ଏଇ ଯଥେଷ୍ଟ ଆମ ଭଳି ହତାଭାଗାଙ୍କ ପାଇଁ । କାଲି କଥା କାଲିକୁ ଭାବିବା, ରାତି ପାହୁ... ମୁଁ ଆଉ କ'ଣ ବୁଦ୍ଧି ଦେବି, ଦୁହେଁ ବସିଛେ ଏକ ନଉକାରେ... ଦୁଇ ସାଙ୍ଗ ଚାଲୁ ଚାଲୁ ଦୁଃଖସୁଖ ବାଣ୍ଟିନେଲେ ନିଜନିଜ ଭିତରେ । କ୍ଳାନ୍ତ ଲାଗୁଥିଲା ଦିନଯାକର ପରିଶ୍ରମରେ । ବିଦ୍ୟାଧର ଡାକିଲା, ଚାଲ ଭାଇ କପେ ଚା'ପିଇବା, ଭଲ ଲାଗିବ । ମନଟା ଚା'ରେ ଅଛି..." ଦୁହେଁ ଠିଆ ହେଲେ ରାସ୍ତାକଡ଼ ଚା' କେବିନ୍ ଆଗରେ । ମଧୁ ଚା'ଦୋକାନୀ ବଢ଼େଇ ଦେଲା ଦି'କପ୍ ଚା... ଦୁହିଁଙ୍କ ହାତରେ ।

ସାମ୍ନାରେ ରାମ ମନ୍ଦିର । ଗହଳି ଲାଗିଛି । "କିଏ ମହାତ୍ମା ଆସିଥିବେ ବୋଧେ, ପଚାରିଲା ବିଦ୍ୟାଧର ଦୋକାନୀକୁ । ଲୋକେ ସିଆଡ଼କୁ ଚାଲିଛନ୍ତି ତ । ମଧୁ କହିଲେ 'ପ୍ରବଚନ ଚାଲିଛି' । କେଶବା କହିଲା, ଆଜିକାଲି ଲୋକେ ଧର୍ମ କଥାକୁ ବେଶି ମନ ବଳାଉଛନ୍ତି । ଆମ ଭଳି ଲୋକଙ୍କର ସିନା ଦୁଃଖ ଅଶାନ୍ତି ଅଛି, ସୁଖୀ ମଣିଷର କ'ଣ ଦୁଃଖ ଅଛି ? ମଧୁ ଦୋକାନୀ କହିଲା, ଦୁଃଖ ଭାଇ ସମସ୍ତଙ୍କର ଅଛି ଅଳପ ବହୁତ । ହେଲେ ଭଲ କଥା ପଦେ ଅଧେ ଶୁଣିବାରେ ତ କିଛି ବାଧା ନାହିଁ, ସମୟ ଅଛି, ଆସୁଛନ୍ତି, ମନକୁ ଶାନ୍ତି ଲାଗୁଛି, ଧନ୍ଦାଳି ହେଉଥିବା ମଣିଷକୁ ଉଚିତ ବାଟ ଦିଶିଯାଉଛି ମଧ । ଦିନେ ଯାଉନ ତମେ ଶୁଣିବ । ମୋର ତ ବେଳ ନାହିଁ । ଏତିକି ବେଳକୁ ଦି'ପଇସା ଯାହା କରିବା କଥା । ମୋ ପାଇଁ ତ କର୍ମହିଁ ଗୁରୁ-ମଧୁ ତା ଦର୍ଶନ ବଖାଣିଲା ଚା'କରୁ କରୁ । ବିଦ୍ୟାଧର କହିଲା, "ଯିବାକି କେଶବାଇ, ଚାଲୁନୁ ଟିକିଏ ଶୁଣିଆସିବା । ସଞ୍ଜ ତ ଗଡ଼ିନି ଆହୁରି ।"

କେଶବା ଭାବିଲା, ମନଟା ଅସ୍ଥିର ଅଛି । ମହାତ୍ମାଙ୍କ କଥା ଶୁଣିଲେ ହୁଏତ ଭଲ ଲାଗିବ ଟିକେ । କହିଲା, "ଚାଲ ବସିବା ସତ୍‌ସଂଗରେ । କିମିତି କଣ କରି ଅଥୟ ମନକୁ ଶାନ୍ତ କରିବା କଥା ତ ।" ଦୁହେଁ ମୁହାଁଇଲେ ସତ୍‌ସଂଗ ଆଡ଼କୁ ।

ସେଦିନ ଘରକୁ ଫେରୁ ଫେରୁ ସଞ୍ଜ ଗଡ଼ିଯାଇଥିଲା ।

ଟାଉନ ବସ୍ ଧରିବା ଆଉ ସମ୍ଭବ ନ ଥିଲା, ରିକ୍‌ସା ହିଁ ଧରିଲା କେଶବା-ବାଟରେ ବିଦ୍ୟାଧର ଓହ୍ଲେଇଗଲା ନିଜ ରାସ୍ତା ଧରିବାକୁ ।

ବାଟରେ ଆସୁ ଆସୁ କେଶବା ସାଧୁ ମହାତ୍ମାଙ୍କ ଉପଦେଶକୁ ଭାବିଲା ତରଳେଇ, ତରଳେଇ ଠିକ୍ କହିଛନ୍ତି ମହାତ୍ମା । ଜୀବନଟା କେବେ ମିଛ ନୁହେଁ, ତାହିଁଲେ ବି ଜଣେ ମୂର୍ଚ୍ଛିପାରିବନି । ଯେକୌଣସି ପରିସ୍ଥିତି ହେଉ, ଜୀବନକୁ କଟେଇବାକୁ ହେବ ତା' ଭିତରେ । ଜିଇଁବା ପାଇଁ ତ ମଣିଷ ଅହରହ ସଂଘର୍ଷ କରି ଚାଲିଛି । ଜୀବନର ଶେଷ ଅଛି ହେଲେ ସମସ୍ୟାର ଶେଷ ନାହିଁ କି ସଂଘର୍ଷର ଶେଷ ନାହିଁ, ଯେତେ ସଙ୍କାଡ଼ିସୁଙ୍କୁଡ଼ି

Digitized by PPRACHIN, SOA

ତାକୁ ସୁନ୍ଦର କରି ଥାପିବ ବୋଲି ଭାବିଲେ ବି ସେତିକି ଅସଜଡ଼ା ହେଇଯାଉଛି ସେ ଜୀବନ । ସେ ଯିଏ ହେଉ ଗରିବ ଅଥବା ଧନୀ ଅସହାୟ କିମ୍ବା ପରାକ୍ରମୀ । ଯେଉଁ ବାଉଁଶ ସେଡ଼େ ପୋଲ । ଜୀବନର ଅନ୍ୟ ନାମ ସଂଘର୍ଷ । ସାହସୀ ମଣିଷ ଜୀବନକୁ ଭୟ କରେନି ବରଂ ସାମ୍ନା କରେ । ସାମ୍ନା କରୁ କରୁ ହିଁ ଶିଖେ ।

ମହାତ୍ମା ସରଳ କରି ବୁଝେଇଥିଲେ ଏଇ କଥାକୁ । ଠିକ୍‌କଥା, ନିଜକଥାରୁ ସେ କଣ ବୁଝିପାରୁନି ? ତଥାପି... "ବାବୁ... ଓହ୍ଲେଇବ ପରା" ରିକ୍‌ସାବାଲା ରିକ୍‌ସା ଥୋଇ ଡାକିଲା । ଭାବନା ଛିଣ୍ଡିଗଲା କେଶବାର । ଆଶାବାଡ଼ିକୁ ଆଶ୍ରାକରି ପଇସାଗଣି ରିକ୍‌ସାବାଲାକୁ ଦେଇ ଘର ଭିତରକୁ ପାଦ ଦେଉ ନ ଦେଉଣୁ ହେମ ବ୍ୟସ୍ତ ହୋଇ କହିଲା, ଏତେ ଡେରି କଲ... କମଳାମା'ର ଜ୍ୱର ବଢ଼ିଛି ଦି'ପହରୁ । ଲକ୍ଷ୍ମୀ ଶିବବାବୁଙ୍କ ଘରୁ କ'ଣ ଗୋଟାଏ ବଟିକା ଆଣି ଦେଇଥିଲା- ତଥାପି ତ ଜ୍ୱର କମିନି ।

କେଶବା ବସିଗଲା ସେଇଠି ମୁଣ୍ଡଧରି । ସେ ଜାଣିଥିଲା, ସବୁ ବିପତ୍ତି ଏକାଠି ଠୁଳ ହେବେ । ବୁଦ୍ଧିବାଟ ଦିଶୁନଥିବ । ବିଚାରୀ, ପୁଅର ନିଷ୍ଠୁର ବ୍ୟବହାରକୁ ସହଜରେ ନେଇପାରିନି । ଭାଙ୍ଗି ଟୁକୁରା ଟୁକୁରା ହେଇଯାଉଛି ନିଜ ଭିତରେ, ସ୍ୱାଭିମାନୀ ମଣିଷ । ଅତ୍ୟାଚାର ସହିବାର ବୟସ ନାହିଁ ଆଉ । କଣ କରିବ ସେ ଏବେ କମଳାମା ପାଇଁ । ଡାକ୍ତରଖାନା ନେବାକୁ ହେବ ନିଶ୍ଚେ ।

କମଳାମା' ଆଉ କାମକୁ ପାରୁନଥିଲା । ଛାଡ଼ିଦେଇଥିଲା ସମସ୍ତଙ୍କ କାମ । ହେମ ହିଁ ମନା କରିଥିଲା । କେବେ କେମିତି ଜରୁରି ପଡ଼ିଲେ ହେମଲତା ନିଜେ ସେମାନଙ୍କୁ ସାହାଯ୍ୟ କରିଦେଇ ଆସୁଥିଲା ସମୟକାଢ଼ି । ଏବେ କୃତଜ୍ଞତାର ଋଣ ଶୁଝୁଥିଲେ ସେ ଓ କେଶବା ବୁଢ଼ୀର ସେବା ଶୁଶ୍ରୂଷା କରି । ଅନେକ ଦିନ ବିଛଣା ଧରିଲା କମଳାମା ।

ନଅଣ୍ଟିଆ ସଂସାର । ତା'ସାଙ୍ଗକୁ ଔଷଧ ଖର୍ଚ୍ଚ । ଗୁଜୁରାଣ ମେଣ୍ଟେଇବା ପାଇଁ ଲକ୍ଷ୍ମୀକୁ ଆଉ ଗୋଟାଏ ଦି'ଟା ଟ୍ୟୁସନ ଧରିବାକୁ ପଡ଼ିଲା । ବାପା ବୋଉର ଦରମା ନିର୍ଦ୍ଦିଷ୍ଟ ଥିଲା । ତାକୁ ଅବଶ୍ୟ କିଛିଟା ପରିଶ୍ରମ କରିବା ସହିତ ସମୟ ଦେବାକୁ ହେଲା । କିନ୍ତୁ ସେକଥା ସେ ଜଣେଇନଥିଲା କାହାକୁ । କେତେଦିନ ବା ବଞ୍ଚିବ ବୁଢ଼ୀ ଆଉ ! କେତେ ସ୍ନେହ ଆଦର କରିଛି । ଗ୍ରୀଷ୍ମଛୁଟି ଥିଲା, କୌଣସିମତେ କଟିଗଲା ସମୟଟା ।

ହେଲେ ସ୍କୁଲ ଖୋଲିବା ପରେ ହିଁ ଆରମ୍ଭ ହେଲା ପ୍ରକୃତ ସମସ୍ୟା । ଆଗରେ ମାଟ୍ରିକ ପରୀକ୍ଷା, ତାର ସ୍ୱପ୍ନ । ପଢ଼ାରେ ଅବହେଳା କଲେ ଚଳିବନି, ଶିକ୍ଷକମାନେ ତାଗିଦ୍ କରିଥିଲେ । ବାପା ବୋଉ ମନେ ପକେଇ ଦେଉଥିଲେ । ନୂଆପା ଓ ସାନୁଭାଇଙ୍କର ପରୀକ୍ଷାଫଳ ବାହାରି ସାରିଥିଲା । ସାନୁ ଭାଇ ଭଲ ନମ୍ବର ରଖିଥିଲେ ।

Digitized by PPRACHIN, SOA

ଠିକ୍ କରିଥିଲେ ବାଙ୍ଗାଲୋରରେ ଇଞ୍ଜିନିୟରିଂ ପଢ଼ିବେ ଏବଂ ରାନୁଅପା ସେଇଠି ରହି କମ୍ପ୍ୟୁଟର କୋର୍ସ କରିବ । ଅଥଚ ତାର 'ସ୍ୱପ୍ନ ମାଟ୍ରିକ'ଟା ବି ସେ ଭଲ ନମ୍ବର ରଖି ପାସ୍ କରିପାରିବ କି ନାହିଁ କେଜାଣି, ମନେମନେ ଲକ୍ଷ୍ମୀ ଈଶ୍ୱରଙ୍କୁ ଡାକେ ଅସହାୟ ଭାବେ ।

ବୋଉ କହୁଥିଲା, ଆଜିକାଲି ବଜାର ଦରଦାମ ହୁ ହୁ ହେଇ ବଢ଼ି ଚାଲିଛି । ଭାତ ଡାଲମାରେ ସଂସାର ଚଳିଯାଉଥିଲା ଏଯାଏ, ଆଉ କିଛି ଥାଉ କି ନଥାଉ । ଅବଶ୍ୟ କମଳାମା କୁଆଡ଼ୁ କେମିତି କହିପୋଛି ଯୋଗାଡ଼ କରିଥିଲା ଦି'ବସ୍ତା ଚାଉଳ । ସରକାରୀ ଚାଉଳ ଟିକିଏ ଶସ୍ତା ପଡ଼େ ବୋଲି ଅଣ୍ଟେଇ ଯାଉଥିଲା ଏଯାଏ । ତା' ନିଜର ବି.ପି.ଏଲ୍ କାର୍ଡ ଥିଲା ବୋଲି ବାଧୁନଥିଲା । ଏବେ ତ କମଳା ଆଈର କାମ ବନ୍ଦ । ତା'ସାଙ୍ଗକୁ ଔଷଧ, ରୋଗୀର ପଥ୍ୟ ଖର୍ଚ୍ଚ ରହିଛି । ଆଈକୁ ଭଲମନ୍ଦ ଟିକେ କରି ଖୁଆଇ ପାରୁନି ବୋଲି ବୋଉ ମନ ଦୁଃଖ । ତା'ସହିତ ଆଉ ଗୋଟିଏ ଅସୁବିଧା ଆସି ଦୁଆରେ ଠିଆ ହେଲାଣି । କାଲି ବୋଉ କହୁଥିଲା ସାନୁଭାଇ ଆଉ ରାନୁଅପାକୁ ବାଙ୍ଗାଲୋର ନେଇ ଛାଡ଼ିବା ପାଇଁ ଶିବବାବୁ ଓ ମା' ଯିବେ । ସେଠି ସାନୁଭାଇ ଇଞ୍ଜିନିୟରିଂ ପଢ଼ିବେ ଆଉ ରାନୁ ଅପା ବି କମ୍ପ୍ୟୁଟର କୋର୍ସ କରିବ । ସେମାନଙ୍କୁ ସେଠି ଥଇଥାନ କରି କେବେ ଫେରିବେ କିଛି ଠିକ୍ ନାହିଁ । ତେଣୁ ବୋଉର ବି ଦରମା ବନ୍ଦ । ଆଗକୁ ଅନେକ ଖର୍ଚ୍ଚ ଅଛି । ସେଇ କଲୋନୀରେ ଆଉ ଯଦି କିଏ କାମବାଲୀ ଖୋଜୁଥିବ- ପଚାରି ବୁଝିବ ବୋଲି ବୋଉ କହୁଥିଲା । ଆଗରେ ତାର ପରୀକ୍ଷା ଅଛି । ଟ୍ୟୁସନ ଏକମାତ୍ର ଭରସା । ଛାଡ଼ିବା ସମ୍ଭବ ନୁହେଁ । ଏଣେ ନିଜ ପଢ଼ା ପାଇଁ ସମୟ ଦେଇପାରୁନି । ପଢ଼ାରେ କ୍ଷତି ହେଲେ ସ୍ୱପ୍ନ ଭୁଷୁଡ଼ି ପଡ଼ିବ ତାର ।

ଲକ୍ଷ୍ମୀ ବଡ଼ମଣିଷ ଭଳି ସଂସାରକଥା ଭାବିବାକୁ ଲାଗିଲା । ଭାବିଲା, କାହିଁକି ଏମିତି ହୁଏ ? ଜଣେ ଗରିବ, ଜଣେ ଧନୀ । ଜଣକ ପାଖରେ ସବୁ ସୁଖ ସୁବିଧା ଖଞ୍ଜି ହେଇ ରହିଥିବ' ଅଥଚ ଆଉ ଜଣେ ବଞ୍ଚିତ ହେଉଥିବ, ସାଧାରଣ ସୁବିଧା ଟିକକ ବି ନଥିବ ତା ପାଖରେ । ଗରିବ ହେବାଟା କେବଳ ଅପରାଧ ନୁହେଁ ପାପ ମଧ୍ୟ । ସ୍ୱପ୍ନ ଦେଖିପାରିବନି ଆଗକୁ । ଭଲ କଥାଟିଏ ଭାବିପାରିବନି, ଏମିତିକ ବଞ୍ଚିପାରିବନି ବି ଭଲରେ । ଭବିଷ୍ୟତ କଥା ଭାବିଲା ବେଳକୁ ତ ଡର ଲାଗୁଛି । ବାପା କହନ୍ତି, ଗରିବଙ୍କର ଭାଗ୍ୟ ଓ ଭବିଷ୍ୟତ ବୋଲି କିଛି ନ ଥାଏ ମା' । ଯାହା ମିଳିଲା, ତାକୁ ହିଁ ଧରି ରଖିବାକୁ ହୁଏ । ଇଏ କେମିତିକା କଥା । ସେ ବୁଝିପାରେନି । ଭବିଷ୍ୟତକୁ ଆଖି ଆଗରେ ନ ରଖିଲେ, ମଣିଷ ବଞ୍ଚିବ କେମିତି ? ପୁଣି ଭାବିଲା, ଏ ପ୍ରକାର ଭେଦଭାବ କିଏ ତିଆରି କରିଛି, ଈଶ୍ୱର ? ଈଶ୍ୱରଙ୍କ ଆଖିରେ ପରା ସାନବଡ଼ କିଛି ନାହିଁ ? ତା'ହେଲେ...

Digitized by PPRACHIN, SOA

ମଣିଷ ? ସାର୍ ଦିନେ କହୁଥିଲେ ପଢ଼େଇଲା ବେଳେ, ମଣିଷ ତିଆରି କରିଛି ଏଇ ଭେଦଭାବ । କାହିଁକି, କେମିତି ହେଇଛି, ଯେତେ ଯୁଆଡୁ ଭାବିବସିଲେ ବି ସେ ପହଞ୍ଚି ପାରେନା କୌଣସି ଏକ ବିନ୍ଦୁରେ । ଘରର ସ୍ଥିତି ତାକୁ ଦୋହଲେଇ ଦିଏ ।

ନିଜ ଭାଗ୍ୟ ନିଜେ ଗଢ଼ିବାର ସଂକଳ୍ପ ନେଇଥିବା ଲକ୍ଷ୍ମୀ ମନରେ ଏମିତି ଅନେକ ପ୍ରଶ୍ନ ଉଠି ତାକୁ ବ୍ୟତିବ୍ୟସ୍ତ କରିପକାଏ । କାହାକୁ କହିପାରେନା ମନର କଥା । ପ୍ରଶ୍ନମାନେ ମନରେ ଗୁଡ଼େଇ ତୁଡ଼େଇ ହେଇ ଅଣନିଃଶ୍ୱାସୀ କରିପକାନ୍ତି, ସମାଧାନର ବାଟ ଦିଶେନା । ସାଙ୍ଗସାଥୀମାନେ କେବେ ଏସବୁ ଭାବନ୍ତିନି କି ବୁଝନ୍ତି ନାହିଁ ବି, ସେମାନଙ୍କ କହିବା ହେଲା, ଯାହା ଭାଗ୍ୟରେ ଅଛି, ଅଧିକା ଚାହିଁବା କାହିଁକି ? ବାପାବୋଉଙ୍କ ପାଟିରୁ ବି ଏକଥା ଶୁଣିଛି । ଅଥଚ ଏ 'ଭାଗ୍ୟ'ଟା ବି କଣ ? କୋଉଠି ଲେଖା ହେଇଛି ଏଇ 'ଭାଗ୍ୟ'ର କଥା ? ବଡ଼ଲୋକ, ଛୋଟଲୋକ, ଭିକାରି, ରୋଗୀ ସମସ୍ତେ ତ 'ଭାଗ୍ୟ' କଥା ବାରମ୍ବାର ବ୍ୟବହାର କରନ୍ତି-ଅଥଚ କେହି ଜାଣନ୍ତିନି ତା ସମ୍ପର୍କରେ-ଦିନେ ପଚାରି ଦେଇଥିଲା ମଧ୍ୟ ରାଘବ ସାରଙ୍କୁ ଏକଥା ।

ସାର୍ ହସିଥିଲେ ତା'ପ୍ରଶ୍ନ ଶୁଣି । ନିଜକୁ ଖରାପ ଲାଗିଥିଲା । 'ସେ କଣ କିଛି ଭୁଲ ପ୍ରଶ୍ନ କରିଛି ? "ନା, କିଛି ଭୁଲ୍ ପଚାରିନୁ, ତେବେ ଏ ବୟସରେ ତୋର 'ଭାଗ୍ୟ' ନେଇ ଚିନ୍ତା କରିବା ଆବଶ୍ୟକ ନାହିଁ । ପଢ଼ାପଢ଼ିରେ ମନଦେଇ ଆଗକୁ ଯିବାକୁ ଚେଷ୍ଟା କରିବା ଉଚିତ । ଅନେକ ଲମ୍ବା ରାସ୍ତା ପଡ଼ିଛି ତୋ' ଆଗରେ-ଚାଲିବାକୁ ହେବ-ପହଞ୍ଚିବାକୁ ହେବ ଲକ୍ଷ୍ୟସ୍ଥଳରେ- ନିଜ ଭାଗ୍ୟ ନିଜେ ଗଢ଼ିବାକୁ ହେବ । ଦିନ ଆସିବ, ସମୟ ହିଁ ଦେବ ତୋ ପ୍ରଶ୍ନର ଉତ୍ତର । ଆଜି କେବଳ ତୋ' ଆଗରେ କର୍ତ୍ତବ୍ୟ ଛଡ଼ା ଆଉ କିଛି ନାହିଁ । ପରିସ୍ଥିତି ଯାହା ଆସୁ ମୁକାବିଲା କରିବାକୁ ହେବ । ହାରିଗଲେ ତ ହେବନି ।"

ତା'ପରେ ସେ କେବେ ଆଉ ପଚାରିନି ସାରଙ୍କୁ । ମାନିଛି ତାଙ୍କ କଥା ସତ ହେଲେ ମନ ଭିତରର ପ୍ରଶ୍ନ, ପ୍ରଶ୍ନ ହେଇ ଠିଆ ହେଇଛି ସେମିତି । ଜାଣେନା କେବେ ଉତ୍ତର ମିଳିବ ।

ମଝିରେ ମଝିରେ ପରିସ୍ଥିତି ତାକୁ ଚାପି ପକାଏ । ତା' ଦେଖା ଦୁନିଆଟା କେତେ ଆଗକୁ ମାଡ଼ିଯାଉଛି । ଅନେକ କିଛି ତା'ପାଖରେ ନାହିଁ । ଅନେକ କଥା ବି ସେ ଜାଣେନା । ଦୁଃଖ ବି କରିନି ଯେ, ସେ କାହିଁକି ବଞ୍ଚିତ ସେ ସବୁରୁ । ତଥାପି ସମ୍ଭାବନା ଓ ଆଶାମାନଙ୍କୁ ସାଇତି ସଂପାଦି ପୋଷି ରଖେ । ସମୟ ଓ ସ୍ଥିତିକୁ ଚାହିଁ ସେ ପ୍ରସ୍ତୁତ କରେ ନିଜକୁ । ଏଇତ ଆରମ୍ଭ ହେଇଛି ତା'ଜୀବନ । ରାଘବ ସାର କହିଛନ୍ତି, 'ଜୀବନ ଓ ତା'ସହିତ ଉପୁଜୁଥିବା ସମସ୍ୟାକୁ ଡରିଲେ ମଣିଷ କେବେ ଆଗକୁ ଯାଇପାରିବନି ।

Digitized by PPRACHIN, SOA

ସମସ୍ୟା ଥିବ, ସମାଧାନର ବାଟ ମଧ୍ୟ ଆମକୁ ଖୋଜିବାକୁ ପଡୁଥିବ । ମନେ ମନେ ଲକ୍ଷ୍ମୀ ଗୁରୁବାକ୍ୟକୁ ଦୋହରେଇ ନିଜ ପାଇଁ ସାହସ ଗୋଟାଏ, ଦମ୍ଭ ଦିଏ । ବୋଉଠୁ ଏକଥା ଶିଖିଛି ସେ, ବୋଉ କୁହେ ଧୈର୍ଯ୍ୟ ରଖି, ନିଜ କର୍ତ୍ତବ୍ୟ ଟିକକ ଠିକ୍ ଭାବେ କଲେ, ଦିନେ ଦେଖିବୁ ସମୟ ସବୁକିଛିକୁ ସଜାଡ଼ି ଦେଇଛି । ସବୁଦିନେ ତ ରାତି ନାହିଁ...ସକାଳ ହେବ ।'

ଆଉ କେଶବା ପାଇଁ, ଯଦି ତା'ଜୀବନରେ କିଛି ଘଟଣା କି ଦୁର୍ଘଟଣା ଘଟିଛି, ଅଚାନକ ହିଁ ଘଟିଛି । ଭାବି, ବିଚାରିବାକୁ ପ୍ରତିରୋଧ କି ପ୍ରତିକାର ପାଇଁ ସମୟ ଦେଇନି ପରିସ୍ଥିତି । ଓଲଟି ତାକୁ ଅସହାୟ କରି ଠିଆ କରି ଦେଇଛି ରାସ୍ତା ଉପରେ । ଦୁର୍ଦ୍ଦାନ୍ତ ସମୟ ଆଗରେ ତାର ଅହଙ୍କାର, ପୌରୁଷ, ସ୍ୱାଭିମାନ ହାତଟେକି ଦେଇଛି । ତା' ବିରୋଧରେ ଯୁଦ୍ଧ ଘୋଷଣା କରିବା ସମ୍ଭବ ବି ହେଇନି, ବଡ଼ ଅସହାୟ ମଣିଷ ନାମକ ଜୀବଟି । ଆଜି ବି ସେଇ ସମୟ ତାକୁ ନିର୍ଦ୍ଦୟ ଭାବେ ଠକିବାକୁ ଯାଉଛି । ଲକ୍ଷ୍ମୀର ପରୀକ୍ଷା ଆଉ ମାତ୍ର ଚାରିଟା ମାସ । ପଢ଼ାରେ ଲାଗିଛି ରାତିଦିନ । ପାହାନ୍ତାରୁ ଉଠି ପଢ଼ିବା ତା'ର ଅଭ୍ୟାସ । କମଳାମା'ର ବି ପାହାନ୍ତାରୁ ନିଦ ଭାଙ୍ଗେ । ପାଖରେ ଶୋଇଥିବା ଲକ୍ଷ୍ମୀକୁ ସେ ଉଠେଇଦିଏ ।

ସେ'ଦିନ ମଧ୍ୟ ସବୁଦିନ ଭଳି କମଳାମା ଲକ୍ଷ୍ମୀକୁ ଉଠେଇଦେଇ, ନିଜେ ଘୋଷାରି ହେଇ ଦାନ୍ତ ଘଷିବାକୁ ଦାଣ୍ଡ ଦୁଆରକୁ ଯାଇଥିଲା କବାଟ ଖୋଲି । ସେତେବେଳକୁ ରାତି ରିକ୍‌ସା ଚଳାଉଥିବା ପଡ଼ିଶା ଘର ରିକ୍‌ସାବାଲା ଯୋଗୀ ରିକ୍‌ସା ଆଣି ଘର ଆଗରେ ଠିଆ କରିବାକୁ ଯାଉଛି,- କିଛି ଗୋଟାଏ ଓଜନିଆ ଜିନିଷ ଦୁଲ୍‌କରି ପଡ଼ିଯିବା ଶବ୍ଦ ଶୁଣି ଚାହିଁଲା ଚାରିଆଡ଼କୁ, କୋଉଠି କଣ ହେଲା ବୋଲି । ପାହାନ୍ତି ଅନ୍ଧାର । ଆକାଶ ଆହୁରି ଫରଚା ହେଇନଥାଏ । ହଠାତ୍ ଆଖି ଅଟକିଲା କମଳାମା ଦୁଆରେ । ଆରେ ! କି କଥା, କମଳାମା ପିଣ୍ଡାତଳକୁ ଖସିପଡ଼ିଲା କେମିତି ?

ଧାଇଁଗଲା ଯୋଗୀ ରିକ୍ସା ଛାଡ଼ି । ଡାକିଲା ଦି'ଚାରିଥର । ହଲେଇଲା । କିଛି ଉତ୍ତର ନାହିଁ । ଅସାଡ଼ ହେଇପଡ଼ିଛି କମଳାମା । ଆଉ କିଛି ନ ଭାବି ଡାକ ପକେଇଲା କେଶବା'ଇରେ... ଆରେ କେଶବା'ଇ... ଧାଇଁଆ..."

ହେମଲତା କାନରେ ବାଜିଲା ଯୋଗୀର ଡାକ... ଏ ଡାକଟା କେମିତି ଭିନ୍ନ ଅଲଗା ଶୁଭିଲା ତା'କାନକୁ । ମନେପଡ଼ିଗଲା ମୁହୂର୍ତ୍ତକରେ, ଅନେକ ବର୍ଷ ତଳେ ଏମିତିକା ପାହାନ୍ତି ପହରରେ ଧଡ଼ିମଉସା ଡାକ ପକେଇଥିଲେ ଦାଣ୍ଡ ଦୁଆରେ । ଛାତି ଧଡ୍‌ପଡ୍ ହେଲା । ବିଛଣା ଛାଡ଼ି ଏକାନିଃଶ୍ୱାସକେ ଉଠିପଡ଼ି ଧାଇଁଲା ଦାଣ୍ଡ ଦୁଆରକୁ । କେଶବାକୁ ଉଠେଇ ଲକ୍ଷ୍ମୀ ଉଠିଗଲା ପଢ଼ା ଛାଡ଼ି, ପଡ଼ିଶାର ସାଇଭାଇଏ ଡାକହାକ ହେଇ ଜମିଗଲେ ଏକାଠି । କୁହାକୁହି ହେଲେ କମଳାମା ଆଉ ନାହିଁ ବୋଧେ ।

Digitized by PPRACHIN, SOA

କମଳା ମା' ଆଉ ନ ଥିଲା । ଗହଳି ନକରି ଚୁପ୍‌ଚାପ୍ ଚାଲିଗଲା, କମଳାମା ମାନେ ଏଇମିତି ହିଁ ଚାଲିଯା'ନ୍ତି ସଂସାରରୁ ଅଭିମାନ କଲାଭଳି, ଛ'ଆଠଖଣ୍ଡି କାଠର ନିଆଁ ଯଥେଷ୍ଟ ତାକୁ ପାଉଁଶ କରି ମାଟିରେ ମିଶେଇ ଦେବା ପାଇଁ, ତା'ଛଡ଼ା କମଳାମା'ଟା ଏବେ କୋଉ ଦାମିକା ମଣିଷଟାଏ ଥିଲା ଯେ, ତା'ପାଇଁ ସମୟ ମୁହୂର୍ତ୍ତେ ଠିଆ ହେଇ ନିରବ ପ୍ରାର୍ଥନା କରନ୍ତା ଅଥବା ଶତମୁଖ ହେଇ ଗୁଣ କୀର୍ତ୍ତନ କରି ଲୁହ ଗଡ଼ାନ୍ତା ! ସମସ୍ତେ ଜାଣନ୍ତେ ।

ସେମିତି କିଛି ହେଲାନି । ହେବାର ବି ନଥିଲା । ସଂସାରର କୋଉଠି କିଛି ଅଟକିଲା ନାହିଁ । ସହରତଳି ବସ୍ତିର ମାଟିଚାଳର ବଖୁରିଏ ଘରକୋଣ ଯାହା ଖାଲିପଡ଼ିଲା, କମଳାମା ଚାଲିଗଲା । ଗୋଟାଏ ବଡ଼ ମନ, ବଡ଼ ହୃଦୟ, ବଡ଼ ଭାବନା ନେଇ ଚାଲିଗଲା ପଞ୍ଚଷଠି ବର୍ଷର କମଳାମା, ବଡ଼ମାପର ମଣିଷଟିଏ ଥିଲା, ଅନ୍ୟର ଦୁଃଖକୁ ଭାଗକରି ନିଜେ ପିଇପାରିଲା ଭଳି ଛାତି ଥିଲା ତାର । ହେମ ଆଉ କେଶବା ସେଇ ମା'ପଣର ଗରିମା ଆଗରେ ମୁଣ୍ଡ ନୁଆଁଇ ପ୍ରଣାମ କଲେ । କୃତଜ୍ଞତା ବୋଧରେ ଭୂଇଁ ସାଉଁଟି ଲୁହରେ ଧୋଇ ଦେଲେ ସେଇ ମମତାମୟୀ ମା'ର ପାଦ ଦୁଇଟିକୁ ।

କେଶବା ଆଖିରେ ଅନ୍ଧାର ଘୋଟି ଆସିଲା, ତା'ସଂସାରରେ ବଜ୍ର ପଡ଼ିଲା ଯେମିତି । ଏ'ଆଘାତ ସହିବା ପାଇଁ ତା'ପାଖେ ଶକ୍ତି ନ ଥିଲା । ଭାଙ୍ଗି ପଡ଼ିଲେ ଦୁହେଁ । କମଳାମା'ର ମରଣ ଦୁଃଖ ଅପେକ୍ଷା ବାଇଧରର ହିଂସ୍ର ଚେହେରାଟା କେଶବା ଆଖିରେ ନାଚି ଉଠିଲା । ଭୟରେ ଥରି ଉଠିଲା ଅନ୍ତରାତ୍ମା । ଆଶ୍ରା କରିଥିବା ଡାଳ ତାର ଭାଙ୍ଗିଗଲା । ଏବେ ସେ କଣ କରିବ ? କୁଆଡ଼େ ଯିବ ? ଶିବବାବୁ ବି ନାହାନ୍ତି ଏ ଦୁର୍ଦ୍ଦିନରେ ।

ହେମ ଥୟ ଦେଲା, "ଧୈର୍ଯ୍ୟ ଧର, ନିଜକଥା ପରେ ଭାବିବା, ବର୍ତ୍ତମାନ ଆମର କର୍ତ୍ତବ୍ୟ ହେଲା, କମଳା ମା'ର ଶୁଦ୍ଧିକ୍ରିୟା, କେତେ ସ୍ନେହ, ବିଶ୍ୱାସ ଦେଇ ସେ ଆମକୁ ଆପଣାର କରିଥିଲା, ନିଜ ପୁଅଝିଅଙ୍କଠୁ ବଳି । ତା'ବିଶ୍ୱାସ ଆଉ ସିନହରେ କାଳିମା ନ ଥିଲା ଟିକେ । ସେଇ ଋଣ ତ ଶୁଝିପାରିବାନି ସାତଜନ୍ମରେ । ତଥାପି ତା' ବିଶ୍ୱାସର ମାନରଖି ଶେଷ କର୍ତ୍ତବ୍ୟ ଆମକୁ କରିବାକୁ ହେବ । ସାନ ଭାଇ ମଧ୍ୟ ଏଥିରେ ସମ୍ମତି ଜଣେଇଲେ ।

ହେଲେ ବାଇଧରକୁ ଖବର ନ ଦେଲେ କିମିତି ହେବ ! କେଶବା କହିଲା- ସେକଥା ପରେ ବିଚାର କରିବା-ଆଗ ତମେ ତାର କ୍ରିୟା କର । ଶ୍ରଦ୍ଧା ହେଉଛି ବଡ଼କଥା ।

ରକ୍ତ ସମ୍ପର୍କ ବୋଲି କିଛି ନାହିଁ । ବାଇଧରକୁ ପଛକରି ବୁଢ଼ୀ ତୋତେ ଆଗ କରିଥିଲା-ସାଇଭାଇ ବିଚାର ଆଲୋଚନା କରି ମତଦେଲେ ।

Digitized by PPRACHIN, SOA

କେଶବା ବି ଭାବିଲା ସେ କମଳାମା ପାଇଁ ଶକ୍ତି ମତେ ଶେଷ କର୍ତ୍ତବ୍ୟ କରିବ । କଲା ମଧ୍ୟ । ସାଇପଡ଼ିଶାଙ୍କୁ ଡାକି ଭାତଡାଲମା ଖୁଆଇ କମଳାମା'ର ଆତ୍ମାର ସଦ୍‌ଗତି ପାଇଁ ଶାନ୍ତି ହୋମ କଲା । ପୁଅଭଳି ପିଣ୍ଡଦାନ ମଧ୍ୟ କଲା ବାଇଧରକୁ ଅପେକ୍ଷା ନ ରଖି ।

ସେତିକିବେଳେ ଆସିଥିଲା ବିଦ୍ୟାଧର । ଆସିଥିଲା ଏଇଥିପାଇଁ ଯେ, ସପ୍ତାହେ ହେବ କେଶବାଇ କାହିଁକି ଆସୁନି ଅଫିସ୍ । ତା'ଛଡ଼ା ଆହୁରି ଗୋଟାଏ ଦୁଃସମ୍ବାଦ ଥିଲା ତାକୁ ଜଣେଇବା ପାଇଁ । କମଳାମା ଖବର ତାକୁ ଜଣାନଥିଲା । ଆସି ଦେଖେତ କେଶବା'ଇ ପରିସ୍ଥିତି ସଙ୍ଗୀନ । ଦୁଃସମ୍ବାଦଟା ଜଣେଇବା ଏତିକିବେଳକୁ ଉଚିତ ହେବ କି ନାହିଁ ଭାବି ଦିନେ ଦି'ଦିନ ଅପେକ୍ଷା କରିଗଲା । ମନେମନେ କିନ୍ତୁ ଭାବୁଥିଲା କଥାଟା କହିଦେଲେ ନିଜକୁ ଟିକିଏ ହାଲୁକା ଲାଗନ୍ତା ।

ତାକୁ ଚିନ୍ତିତ ହେବା ଦେଖି, କେଶବା ନିଜ ଆଡୁ ହିଁ ପଚାରିଲା "ମନ ଭଲ ନାହିଁ କିରେ ଭାଇ, ଶୁଖିଲା ଦିଶୁଛି ମୁହଁ, ଘରେ ପିଲାଏ ଭଲ ଅଛନ୍ତି ତ ?"

ଲୁଚେଇ ପାରିଲାନି ବିଦ୍ୟାଧର ମନର ଭାବନାକୁ । କହିପକେଇଲା, ତୁ ତ ସପ୍ତାହେ ହେଲା ଆସିନଥିଲୁ । ତା'ଭିତରେ ଅନେକ ଘଟଣା ଘଟିଗଲାଣି, ଛଟପଟ ଲାଗୁଛି ଶୁଣିଲାବେଳୁ" ଖବରଟା । ଭାବିଥିଲି, ତୋ ସହିତ କଥା ହେଲେ ଟିକିଏ ଉଶ୍ୱାସ ଲାଗନ୍ତା, ଏବେ ତ ଦେଖୁଛି ତୋ' ଅବସ୍ଥା...

"କହୁନୁ କି ଖବର, ମୁଁ କଣ ପର ହେଇଛି... ଦୁଃଖ ବାଣ୍ଟିନେବାରେ ଭାଇ... କହିପକା ।"

"ତା ସତ ଯେ, ଦୁଃଖ ତ କିଛି ଊଣା ନାହିଁ ତୋର । ଆହୁରି ଦୁଃଖ ଖବର ଶୁଣିଲେ...

"କହିପକା, ସାହସ ଅଛି ଶୁଣିବାକୁ' କହିଲା କେଶବା ।

"କହୁଛି, ଜାଣେନା କେତେ ସତ କେତେ ମିଛ । ଶୁଣିଛି ଯାହା କହୁଛି- ଆମର ସଂସ୍ଥାଟା କୁଆଡ଼େ ବନ୍ଦ ହେଇଯିବ ଏଇ ମାସେ ଦି'ମାସରେ । ଉଠିଯିବ ସବୁ । ଶୁଣିଲାଠୁ ମନଟା ସ୍ଥିର ଲାଗୁନି । ଆମଭଳି ଖଟିଖିଆଙ୍କ ପାଇଁ ମାସ ଶେଷର ଏଇ ଟଙ୍କାଟା ଦରମା ଭଳି ଅନେକ ସାହସ ଦେଉଥିଲା । ଭରସା ଆଣି ଦେଉଥିଲା ଯେ, ରାତି ପାହିଲେ ଭାତ ଗଣ୍ଡାକ ପାଇଁ ଅନ୍ତତଃ ଚିନ୍ତା ନାହିଁ । ଏବେ ସେତକ ଗଲା... ବିଦ୍ୟାଧର ଆଖିରେ ଅନ୍ଧାର କୁହୁଡ଼ି ମାଡ଼ିଆସୁଥିଲା ଯେମିତି ।

କେଶବାର ଭିତରଟା ବି ବରଫ ପାଲଟି ଯାଉଥିଲା ଧୀରେ ଧୀରେ । ଚିନ୍ତା ଜମାଟ ବାନ୍ଧି ଯାଉଥିଲା । ଚାରିଆଡୁ ବିପଦର ପାଦଶବ୍ଦ । ସେ ଜାଣିଥିଲା, ଏମିତି କିଛି ଘଟିବ, ବାଘ ମାଡ଼ି ବସିଲା ଭଳି ବିପଦ ପଞ୍ଝା ମାଡ଼ିବସୁଛି । କି ଆଶ୍ୱାସନା ଦେବ ସେ

Digitized by PPRACHIN, SOA

ବିଦ୍ୟାଧରଙ୍କୁ । ଗୋଟାଏ ଲମ୍ବାନିଃଶ୍ୱାସ ଛାତି ଭିତରୁ ଉଠିଆସିଲା । ସେ କେବଳ ଶୂନ୍ୟ ଦୃଷ୍ଟିରେ ଚାହିଁରହିଲା ବିଦ୍ୟାଧର ମୁହଁକୁ ଅସହାୟ ହେଇ ।

ଦି'ସପ୍ତାହ ଗଲା, ହେମଲତାକୁ ଜଣେଇନଥିଲା ଖବରଟା କେଶବା, କେବଳ ମନଭିତରେ ଘୋରତେଇ ପୋରତେଇ ହେଉଥିଲା । ସ୍ଥିର କରିପାରୁ ନଥିଲା କିଛି । ଦିନେ ଶୋଇଲାବେଳେ ଆରମ୍ଭକଲା କଥାଟା ବାଗ ଦେଖି ।

ହେମ ଶୁଣୁଣୁ ପଥର ପାଲଟିଗଲା । କେତେ ପ୍ରଶ୍ନ, କେତେ ସମସ୍ୟା ଆସି ତାକୁ ଘେରିଗଲେ । ଖାଇବା କ'ଣ, ବଞ୍ଚିବା କେମିତି, ଲକ୍ଷ୍ମୀର ପରୀକ୍ଷା, ଆଉ ସବୁଠୁ ବଡ଼ ବିପଦ ହେଲା ବାଇଧର ଗୁଣ୍ଡାଧରି ଆସିବ କହିଛି । କେହି ନାହିଁ ଆମର ଆଗପଛକୁ ।

ହେମ ବିକଳ ହେଇ କାନ୍ଦିଲା- ମୋ'ଲକ୍ଷ୍ମୀକୁ ଧରିନେବ ହେ ଠାକୁରେ ! କେତେ ପରୀକ୍ଷା ଆଉ ନେବ...,

ଶୁଣୁଥିଲା ଲକ୍ଷ୍ମୀ ବାପା-ବୋଉଙ୍କ କଥାବାର୍ତ୍ତା । ବ୍ୟସ୍ତ ହେଇପଡ଼ିଲା ନିଜ ଭିତରେ । ସେଇ ଅଦେଖା ଭାଗ୍ୟ ଆସି କ'ଣ ତାର ସବୁ ସମ୍ଭାବନାର ଦ୍ୱାରକୁ ବନ୍ଦ କରିଦେବ ?

ତା' ଆଗରେ ବସି ବୋଉ କାନ୍ଦୁଥିଲା ପିଲାଙ୍କ ଭଳି । ତାକୁ କଷ୍ଟ ଲାଗିଲା । ହେଲେ ମନର ବ୍ୟସ୍ତତାକୁ ଲୁଚେଇବାକୁ ଯାଇ କହିଲା- 'ଏତେ ଆଗରୁ ବ୍ୟସ୍ତ କାହିଁକି ହେଉଛ ତମେ । ଆସୁ ସେଇ ସମୟ ଦେଖିବା । ଭାଙ୍ଗିପଡ଼ିଲେ କଣ ସମସ୍ୟାର ସମାଧାନ ହେଇଯିବ । ହତାଶ ହେଇ ଲାଭ ନାହିଁ, ମୋ ପାଇଁ କିଛି ଭାବିବା ଦରକାର ନାହିଁ, କିଛି ହେବନି ମୋର । ସମୟ ବଦଳିଲାଣି, ସକାଳ ହେଉ-ଉପାୟ ଚିନ୍ତା କରିବା, ଶୋଇପଡ଼ ଠାକୁରଙ୍କୁ ଡାକି ।"

ଲକ୍ଷ୍ମୀର ଆଶ୍ୱସନାରେ କି ଯାଦୁ ଥିଲା କେଜାଣି- ଉଶ୍ୱାସ ଲାଗିଲା ହଠାତ୍ । ଠିକ୍‌କଥା ଭାବିବା ଅପେକ୍ଷା ଉପାୟ ଚିନ୍ତା କରିବା ସମସ୍ତେ ମିଶି, ଠାକୁର ନୁହେଁ, ମନେପଡ଼ିଲା କମଳାମା', ମନେପଡ଼ିଲେ ମା'ସା'ନ୍ତାଣୀ ।

ପୁଣି ଗୋଟାଏ ନୂଆ ସକାଳ । ନିଦରୁ ଉଠି ଲକ୍ଷ୍ମୀ ନୂଆ ସୂର୍ଯ୍ୟଙ୍କୁ ପ୍ରଣାମ କଲା । ଆରମ୍ଭ ହେଲା ତା' ନିତିଦିନର କାର୍ଯ୍ୟକ୍ରମ । ବୋଉକୁ କହିଲା, ତୁ ବ୍ୟସ୍ତ ହେବୁନି, ମୁଁ ଟ୍ୟୁସନ ପାଇଁ ବାହାରିଲି । ସେଠୁ ଫେରେ ବିଚାର କରିବା । ଟ୍ୟୁସନ୍ ପାଇଁ ତାକୁ କିଛି ବାଟ ଚାଲିବାକୁ ପଡ଼େ । ଚାଲୁଚାଲୁ ପଢ଼ିଥିବା ପାଠକୁ ମନେ ମନେ ହେଜିନିଏ ।

ଆଜି କିନ୍ତୁ ସେ ପାଠ କଥା ନଭାବି, ବାପା ବୋଉଙ୍କ ସଂସାର କଥା, ଘରର ସମସ୍ୟା ନେଇ ଚିନ୍ତା କଲା ଜଣେ ଦାୟିତ୍ୱସମ୍ପନ୍ନ ପୁଅଭଳି । ପରିସ୍ଥିତି ହେଇ ଚାଲିଛି । ତାକୁ ହିଁ କିଛି କରିବାକୁ ପଡ଼ିବ ।

Digitized by PPRACHIN, SOA

ଲକ୍ଷ୍ମୀ ଭାବିଲା, ସେ କାହାଠୁ ପରାମର୍ଶ ନେବ । ନେବା ଉଚିତ୍ ହେବ । ପରାମର୍ଶ କଥା ଭାବିଲା ମାତ୍ରେ, ମନେପଡ଼ିଲା ତା' ଅଙ୍କ ସାର୍ ରାଘବ ସ୍ୱାଇଁ, ଅନେକ ମେଧାବୀ ଛାତ୍ରଛାତ୍ରୀଙ୍କୁ ବହୁପ୍ରକାରେ ସାହାଯ୍ୟ କରିଛନ୍ତି । ଖୁବ୍ ସ୍ନେହୀ, ଛାତ୍ରବତ୍ସଳ । ସିଏ ବି ତ ତାଙ୍କରି ସାହାଯ୍ୟ ସହାନୁଭୂତି ନେଇ ଏତେ ପର୍ଯ୍ୟନ୍ତ ଆସିଛି । ତାଙ୍କରି ପାଖକୁ ସେ ଯିବ । ତାଙ୍କ ପରାମର୍ଶ ଖୁବ୍ ବ୍ୟବହାରିକ । କାର୍ଯ୍ୟରେ ଲଗେଇ ପାରିଲାଭଳି । କିଛି ବାଟ ସେ ନିଶ୍ଚେ ଦେଖେଇବେ । ଭାବୁ ଭାବୁ ତାକୁ ଉଶ୍ୱାସ ଲାଗିଲା ଏବଂ ଟଙ୍କାରାସ୍ତାଟା ଛୋଟ ମନେହେଲା । ଟ୍ୟୁସନ ବାଟନଧରି ସେ ବାଟ ଭାଙ୍ଗିଲା ରାଘବ ସାରଙ୍କ ଘରକୁ । ଆଜି ଟ୍ୟୁସନ ଯିବନି । ଡେରି କଲେ ସାର ସ୍କୁଲ ଚାଲିଯିବେ । ସମସ୍ତଙ୍କ ସାମ୍ନାରେ ବ୍ୟକ୍ତିଗତ ଅସୁବିଧାକୁ ଖୋଲି କହିବାକୁ ତାକୁ ଭଲ ଲାଗେନା ।

ରାଘବ ସାରଙ୍କ ଗେଟ୍ ଖୋଲି ବାରଣ୍ଡାକୁ ଉଠି କବାଟର କଡ଼ା ହଲେଇଲା । ଦୁଆର ଖୋଲି ସାର୍ ପ୍ରଥମେ ଆଶ୍ଚର୍ଯ୍ୟ ହେଇଗଲେ ଲକ୍ଷ୍ମୀକୁ ଦେଖି । ଲକ୍ଷ୍ମୀ ଯେ ଘରକୁ ନ ଆସେ ତା', ନୁହେଁ । ହେଲେ ଆଗରୁ ଅନୁମତି ନିଏ, ଯଦି କିଛି ପଢ଼ା ବୁଝିବାର ଥାଏ କିମ୍ବା ସମସ୍ୟା ଥାଏ ସେ ଖୁବ୍ ଶୃଙ୍ଖଳିତ । ତେବେ ନିଶ୍ଚୟ କିଛି ଜରୁରୀ ଆବଶ୍ୟକତା ଅଛି । ପଚାରିଲେ କି ହଠାତ୍ ଏମିତି ଆସିଲୁ, ଆ ଭିତରକୁ ଆସ, ଏତେ ବାଟତ ଚାଲିଚାଲି ଆସିଥିବୁ, ଶୁଖିଲା ଦିଶୁଛି ମୁହଁ ।"

ଲକ୍ଷ୍ମୀ ଘର ଭିତରକୁ ଆସି ଥ ହେଇ ବସିପଡ଼ିଲା କ୍ଳାନ୍ତ ହେଇ । ସାର୍ ଘର ଭିତରକୁ ଯାଇ ସ୍ତ୍ରୀଙ୍କ ହାତରେ ଗିଲାସେ ଦହି ସରବତ ପଠେଇ ଦେଇ କହିଲେ, ମୁଁ ଆସୁଛି, ତୁ ଟିକିଏ ସାଷ୍ଟାମ ହୁଅ, ପଛେ ଶୁଣିବି ତୋ'କଥା ।"

ଗୁରୁମା ସରବତ ଗ୍ଳାସ ବଢ଼େଇ ବସିପଡ଼ିଲେ ଲକ୍ଷ୍ମୀ ପାଖରେ । ଦି'ଚାରି କଥା ଭଲ ମନ୍ଦ, ସୁବିଧା ଅସୁବିଧା, ପଢ଼ାପଢ଼ି ଓ ଟ୍ୟୁସନ ସମ୍ପର୍କରେ ପଚାରି ବୁଝିନେଲେ । ସେ ଖୁବ୍ ଭଲପା'ନ୍ତି ଝିଅଟିକୁ । ନିଜ ପାଇଁ ନିଜେ ଲଢ଼ୁଛି । ପରିଶ୍ରମ କରୁଛି ଖୁବ୍ । କିଶୋରୀ ବୟସର ସ୍ୱପ୍ନ ନ ଦେଖି, ବାପା ମା'ଙ୍କୁ ସାହାଯ୍ୟର ହାତ ବଢ଼େଇଛି । ବିଚାରୀକୁ ନିଃଶ୍ୱାସ ମାରିବାକୁ ତର ନାହିଁ । କହିଲେ "ଠିକ୍ ଅଛି ତୁ ସାରଙ୍କ ସହିତ କଥାବାର୍ତ୍ତା କର । ସରିଲେ ମୋତେ କହିବୁ । ରୋଷେଇ କରୁଛି, ଖାଇଦେଇ ଯିବୁ ।" ଲକ୍ଷ୍ମୀ ଜାଣେ, ଗୁରୁମା ତାକୁ ନ ଖୁଆଇ କେବେବି ଛାଡ଼ନ୍ତିନି, ଖୁବ୍ ସ୍ନେହୀ, ଖୁବ୍ ଭଲ । କୃତଜ୍ଞତା ବୋଧରେ ନଇଁ ପଡୁଥିଲା ଲକ୍ଷ୍ମୀର ଭାରାକ୍ରାନ୍ତ ମନ । ଅନ୍ଧାର ଭିତରେ ବାଟ ଦିଶୁନଥିଲା ତ । ଆଉ କିଛି ମନେପଡୁ ନଥିଲା ତାକୁ, ରାଘବସାରଙ୍କୁ ହିଁ ଖୋଜୁଥିଲା । ଗୁରୁମା ବୁଝିପାରିଥିଲେ ତା'ମନର ଅବସ୍ଥା । ଭାରି ଭିତରମୁହାଁ, ବେଶି କଥା କୁହେନା ।

ସାର ଆସିଲେ । ଲକ୍ଷ୍ମୀ ନିଜ ଘରର ସମସ୍ୟାକୁ ଖୋଲି କହିଲା । କହିଲାବେଳେ

Digitized by PPRACHIN, SOA

ଆଖିରୁ ଲୁହ ବୋହିଯାଉଥାଏ । ସାର୍ ଆଶ୍ୱାସନା ଦେଲେ, କାନ୍ଦିଲେ ସମସ୍ୟାର ସମାଧାନ ହେବନି ଝିଅ । ଇଏ ଭାବପ୍ରବଣତାର ସମୟ ନୁହେଁ, ନିଜକୁ ଶକ୍ତ କରିବାକୁ ହେବ, ପରିସ୍ଥିତିକୁ ସାମ୍ନା କରିବାକୁ ହେଲେ । ଆମେ ଚେଷ୍ଟା କରିବା, ଉପାୟ ଖୋଜିବା । ଆଗରେ ପରୀକ୍ଷା ତୋର, ଲକ୍ଷ୍ୟ ତୋର ସେଇଠି, ମନେରଖ । ଆମକୁ ସମୟ ଅପେକ୍ଷା କରିବନି କେବେ । ସମୟ ସାଥିରେ ଆମକୁ ଚାଲିବାକୁ ହେବ । ତୁ ସ୍ଥିର ହୁଅ । ମୁଁ ଦେଖୁଛି, କ'ଣ କରାଯାଇପାରିବ ।

ଏ ଦୁନିଆରେ ସବୁ ସମ୍ଭବ । ବାଟ ମିଳିବ, ନିଶ୍ଚୟ । ତେବେ, ପରିସ୍ଥିତିକୁ ଦେଖିଲେ, ମୋ ମତରେ କମଳାମା ଘରେ ବେଶିଦିନ ରହିବା ଉଚିତ ନୁହେଁ । ବାଇଧର ଆସିବ ନିଶ୍ଚୟ । ସେ ଭଲମଣିଷ ନୁହେଁ ତ । ଗୁରୁମା କହିଲେ ଠିକ୍ କଥା, କେତେ ବଡ଼ବଡ଼ ଲୋକ ହାରିଯାନ୍ତି ଦୁଷ୍ଟମାନଙ୍କ ପାଖରେ । ସବୁପ୍ରକାର ଶକ୍ତି, ସାମର୍ଥ୍ୟ ଥାଇ ମଧ୍ୟ, ବରଂ ସେମାନଙ୍କୁ ଚୁପ୍‌ଚାପ୍ ଆଡ଼େଇଯିବା ହିଁ ବୁଦ୍ଧିମାନର କାମ । ଆମେତ ଦୁର୍ବଳ ସବୁ ଦୃଷ୍ଟିରୁ । ନା, କ'ଣ ? ପରିବାରଟା ହଠାତ୍ ଯିବେ କୁଆଡ଼େ ?"

ରାଘବ ସାର୍‌ବି ସମର୍ଥନ କଲେ ସ୍ତ୍ରୀ ଅଭୟାଙ୍କୁ, କହିଲେ ଘରଟା ଛାଡ଼ିଦେଇ ଅନ୍ୟତ୍ର ଚାଲିଗଲେ, ବାଇଧର ସମସ୍ୟାରୁ ମୁକ୍ତି ମିଳନ୍ତା ନିଶ୍ଚୟ' । ହେଲେ...

"ମୁଁ ବୁଝିପାରୁଛି ତମେ କ'ଣ, ଭାବୁଛ, ଅଭୟା କହିଲେ, ମୁଁ ସେଇକଥା ତମକୁ କହିବାକୁ ଯାଉଥିଲି ।"

କୋଉ କଥା ?

"ଏଇ ଆମ ଗୋପୀବଲ୍ଲଭ ମନ୍ଦିର ବେଢ଼ାରେ କିଛି ଘର ଥିଲା, ଅବଶ୍ୟ ସେସବୁ ଏବେ ପରିତ୍ୟକ୍ତ ଅବସ୍ଥାରେ ପଡ଼ିଛି । ମନ୍ଦିରର କିଛି କାମରେ ଆସୁନି ବୋଲି ପୂଜକ ମଉସା ଦିନେ କହୁଥିଲେ । ତାଙ୍କୁ କୁହାବୋଲା କଲେ, ହୁଏତ ସାମୟିକ ଭାବେ ମୁଣ୍ଡଗୁଞ୍ଜିବା ପାଇଁ ସେ ଅରାଜି ହୁଅନ୍ତେ ନାହିଁ, ଅଭୟା କହିଲେ । ଲକ୍ଷ୍ମୀ କଥାଟା ଶୁଣି ଟିକିଏ ସାହସ ପାଇ କହିଲା, ତାଙ୍କ ଝିଅ ସୁମିତ୍ରା ମୋ ତଳ କ୍ଲାସରେ ପଢ଼େ । ମୁଁ ଜାଣେ ତାଙ୍କୁ । ଆପଣ କହିଲେ ମୁଁ ପଚାରନ୍ତି ।"

ସାର ମନାକଲେ । ଉଚିତ ହେବନି ତୁ ପଚାରିବା, ମୁଁ ପଚାରି ବୁଝିବି, କୋଉ ସ୍ଥିତିରେ ଅଛି ସେ ଘରସବୁ । ତାର ଦାୟିତ୍ୱ ତ ମନ୍ଦିର ଟ୍ରଷ୍ଟିମାନଙ୍କ ହାତରେ । ଆଜି ରାତିରେ ମୁଁ ସେ ସମ୍ପର୍କରେ ଆଲୋଚନା କରିବି ସେମାନଙ୍କ ସହିତ, ତୋ' ବାପାଙ୍କୁ କହିଥିବୁ, କାଲି ଆସି ମୋ'ସହିତ ସେ ଦେଖା କରିଯିବ । ଅନ୍ତତଃ ତୋ' ପରୀକ୍ଷା ପର୍ଯ୍ୟନ୍ତ କିଛି ଗୋଟାଏ ଅସ୍ଥାୟୀ ବ୍ୟବସ୍ଥା ତ କରିବାକୁ ପଡ଼ିବ, ତା'ପରେ ଅନ୍ୟ ଉପାୟ ଚିନ୍ତା କରିବା ।

Digitized by PPRACHIN, SOA

ଅଭୟାଙ୍କୁ ଲକ୍ଷ୍ୟ କରି କହିଲେ, ବହୁତ ଡେରି ହେଲାଣି, ଲକ୍ଷ୍ମୀକୁ ଖାଇବାକୁ ଦିଅ । ସେ ଯିବ କହି ଉଠିଗଲେ ନିଜେ ସ୍କୁଲ ପାଇଁ ପ୍ରସ୍ତୁତ ହେବାକୁ ।

ଅଭୟା ଭାତ ଡାଲମା ଖୁଆଇ ତାକୁ ଛାଡ଼ିଥିଲେ । ଫେରିଲା ବାଟରେ ଲକ୍ଷ୍ମୀ ଭାବିଲା, ଈଶ୍ୱର କେବେ ତାକୁ ଭୋକ ପେଟରେ ରଖି ନାହାନ୍ତି, ଅଧାପେଟ ହେଉପଛେ ଖାଇଛି । ତାଙ୍କର ଅନନ୍ତ କରୁଣା, ହେଲେ ଏବେ ସମୟ ଆସୁଛି, ଭୋକ ପେଟରେ, ଖୋଲା ଆକାଶ ତଳେ ଜୀବନ କଟେଇବାକୁ ପଡ଼ିବ ଅନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ । ଆଗରେ ପରୀକ୍ଷା । ବାପାଙ୍କ ଚାକିରି ନାହିଁ । ଲକ୍ଷ୍ମୀ ଭାବିଲା ବଡ଼ ମଣିଷ ଭଳି । ସାର୍ ଠିକ୍ କହିଛନ୍ତି । କମଳା ଆଈର ଖବର ପାଇ ବାଇଧର ଯେକୌଣସି ମୁହୂର୍ତ୍ତରେ ଆସିଯାଇପାରେ । ଗୁଣ୍ଡାମାନଙ୍କ ସହିତ ଲଢ଼ିବାର ସାମର୍ଥ୍ୟ ଆମର ନାହିଁ । ବନ୍ଧୁ ପରିଜନ ବି କେହି ନାହାନ୍ତି । ଅର୍ଥବଳ ତ ନାହିଁ । ରୋଜଗାରର ବାଟସବୁ ବନ୍ଦ, ଅନ୍ୟର ଦୟା ଉପରେ ବଞ୍ଚିବାବି ସମ୍ଭବ ନୁହେଁ । ବୋଉ କହୁଥିଲା, ସଞ୍ଚୟ ବେଶିଦିନ ଯିବନି । ଯୋଉ ଦି'ତିନିଘର କାମ ଅଛି, ଏଠା ଛାଡ଼ିଲେ ସେ ବି ଯିବ । ଭାବୁଭାବୁ ଲକ୍ଷ୍ମୀ ଛନ୍ଦି ହେଇଯାଉଥିଲା ତାଙ୍କ ଦଦରା ସଂସାରର ଜଞ୍ଜାଳ ଜାଲରେ । ମୁକୁଳିବାର ବାଟ ଖୋଜୁ ଖୋଜୁ ପହଞ୍ଚିଯାଇଥିଲା ଘର ଦୁଆର ମୁହଁରେ ।

ବୋଉ ତା' ଆସିବା ବାଟକୁ ଚାହିଁ ବସିଥିଲା । ଡେରି ହେବା ଦେଖି ପଚାରିଲା, କୁଆଡ଼େ ଥିଲୁ ଏଯାଏ, ଟ୍ୟୁସନ ତ ସରିବଣି କେତେବେଳୁ, ମୋ ପ୍ରାଣ ତ ନ ଥିଲା ଜାଣ...

ଆଗରେ ପରୀକ୍ଷା... ଏଇ କେଇଦିନ ଟ୍ୟୁସନ ବନ୍ଦ କଲେ ହୁଅନ୍ତାନି ଝିଅ... ।"

ଟ୍ୟୁସନ ଯାଇନଥିଲି ବୋଉ, ରାଘବ ସାର୍‌ଙ୍କ ଘରକୁ ଯାଇଥିଲି, ଚାଲ କହିବି ସବୁକଥା ।

ଲକ୍ଷ୍ମୀ ସବୁକଥା କହିଗଲା ଟିକିନିଖି କରି, ହେମ ଆଉ କେଶବା ଶୁଣିସାରି ବସିଗଲେ ଗୁମ୍ ହୋଇ କିଛି ସମୟ । ପରିସ୍ଥିତି ସତରେ ଗମ୍ଭୀର । ଯୋଉ ଡାଳ ଧରିଲା ତ ସେଇ ଡାଳ ଭାଙ୍ଗିଲା । ଆଶ୍ରା ଟିକେ ଥିଲା ବୋଲି ସିନା, ଭୋକ ଉପାସରେ ଥିଲେ ବି ବାଧୁନଥିଲା । ଦିଶୁନଥିଲା ବାହାରକୁ କିଛି । ଝିଅ ବଡ଼ ହେଲାଣି, ତାକୁ ନେଇ ଠିଆ କରିଦେଇପାରିବନି ଦାଣ୍ଡରେ । ସବୁଠି ବିପଦ । ବାଘ ହେଣ୍ଟାଳ । ମଣିଷ ତ ପଶୁ ହେଇଯାଉଛି ସୁଯୋଗ ମିଳିଲେ । ଲକ୍ଷ୍ମୀର ପରୀକ୍ଷା କଣ କରିବ ? ଚାକିରି ତ ଆଉ ସସ୍ତାହେ, ପରିବାରର ମୁରବି ହିସାବରେ ତାର ଦାୟିତ୍ୱକୁ ସେ କିମିତି ଏଡ଼େଇଦେବ ।"

ମଝିରେ ହେମ କଥା କହିଲା, ଏବେ ସବୁଠୁ ବଡ଼ ବିପଦ 'ବାଇଧର' । ତାକୁ ମୁକାବିଲା କରିବା ଆମ ସାମର୍ଥ୍ୟର ବାହାରେ । ଆଜିକାଲି ଯୋଉସବୁ ଭୟଙ୍କର କଥାମାନ

Digitized by PPRACHIN, SOA

ଶୁଣାଯାଉଛି, ପୁଣି ଯୋଉ ଧମକ ସେ ଦେଇଯାଇଛି- ଭଗବାନ୍ କରନ୍ତୁ, ସେଭଳି କିଛି ବିପତ୍ତି ନ ଆସୁ ତଥାପି ଅମଣିଷଙ୍କୁ କୋଉ ବିଶ୍ୱାସ, କହୁକହୁ ଅଜଣା ଆତଙ୍କର କଳ୍ପନା କରି ହେମ ମୁହଁ କଳା ପଡ଼ିଗଲା ।

ଲକ୍ଷ୍ମୀ ପୁଣିଥରେ ବୁଝେଇଲା, ସେତେଯାଏ କାହିଁକି କଥାଯିବ ବୋଉ, ତା' ଆଗରୁ ଆମେ ଏଠୁ ଚାଲିଯିବା । ଗଣ୍ଡଗୋଳକୁ ଓହ୍ଲେଇବା କାହିଁକି । ଭାବିଲୁ ଥରେ ଆମଠୁ ଆହୁରି ହିନସ୍ତାରେ ଲୋକ ଅଛନ୍ତି, କାଠ କେବିନ୍‌ରେ, ଓଭରବ୍ରିଜ୍ ତଳେ ସେମାନଙ୍କ ଜୀବନ ଗଡ଼ିଚାଲିଛି, ବଞ୍ଚିଛନ୍ତି ସେମାନେ । ଭାବିନେବା ଆମେ ମଧ ସେଇ ହତଭାଗାଙ୍କ ଭିତରୁ ଜଣେ । ସମୟ ଆସିବ ଦିନେ, ଧୈର୍ଯ୍ୟର ସହ ଅପେକ୍ଷା କରିବା କଥା, କିଛି ଗୋଟାଏ ବ୍ୟବସ୍ଥା ତ ନିଶ୍ଚୟ ହେବ, ସାର୍ କଥା ଦେଇଛନ୍ତି । କହୁ କହୁ ଲକ୍ଷ୍ମୀ ଉତ୍ତେଜିତ ହୋଇ ପଡୁଥିଲା ।

କେଶବା କହିଲା, "ଦିନ କେଇଟା ତ ବହୁତ କଥା ଝିଅ, ଗୋଟିଏ ଓଳି ବି ଆମେ ଆକାଶ ତଳେ କଟେଇବା ସମ୍ଭବ ନୁହେଁ ବାସ୍ତବରେ । ବୁଝିପାରୁନୁ ତୁ । ଜିଦ୍‌ରେ କିଛି କରିହୁଏନା, ଆଗପଛ, ପରିବେଶ, ପରିସ୍ଥିତି କଥା ଭାବିବାକୁ ପଡ଼େ । ଯୋଉମାନେ ଫୁଟ୍‌ପାଥ୍‌ରେ ବଞ୍ଚିଛନ୍ତି, ଆମେ ଗରିବା ହେଲେ ବି ସେଇମାନଙ୍କ ସ୍ତରକୁ ଓହ୍ଲେଇପାରିବାନି ମା । ମୁଁ ଯିବି ରାଘବ ସାର୍‌ଙ୍କ ପାଖକୁ । ବିଦ୍ୟାଧର ସହିତ ବି ପରାମର୍ଶ କରିବି-କଣ ସେମାନେ ପରାମର୍ଶ ଦେଉଛନ୍ତି । ଆମେ ସୁଖ ଉଆସ ତ ଚାହୁଁନେ, ସୁରକ୍ଷିତ ଆଶ୍ରୟ ଟିକେ ଚାହୁଁଛେ ।

ଚିନ୍ତିତ ହେଇ ପଡୁଥିଲା କେଶବା ।

ହେମଲତା ମଧ ସମର୍ଥନ କଲା ସ୍ୱାମୀର କଥାକୁ । 'ସେଇ ଭଲ ହେବ', ପଚାରି ବିଚାରି ଯାହା ଠିକ୍ କରିବା, ମୁଁ ମଧ ଯାଇ ଶିବବାବୁଙ୍କ ଘରଆଡ଼େ ବୁଲିଆସେ କେବେ ଫେରୁଛନ୍ତି, ବିପଦ ବେଳେ ସାହାଯ୍ୟର ହାତ ବଢ଼େଇଥିଲେ ତ, ଭାବପୁର ଯାଇ ଥରେ ନିଧିନନାଙ୍କୁ ପଚାରିବାକୁ ମନ ଡାକୁଛି...

"ଲାଭ ହେବନି ହେମ । ସେ ସ୍ୱାର୍ଥପର ମଣିଷ । ବରଂ ଶିବବାବୁଙ୍କ ପାଖରେ ହେଲେ ମଣିଷପଣ ଅଛି । ତୁ ଚିନ୍ତା କରନା, କିଛି ବାଟ ତ ମିଳିବ । ମାସା'ନ୍ତାଣୀ ଥିଲେ ଏତେ ଅସହାୟ ଲାଗନ୍ତାନି-କେଶବା ଈଶ୍ୱରଙ୍କୁ ମନେ ପକେଇଲା ଭଳି ମା'ସା'ନ୍ତାଣୀଙ୍କୁ ସ୍ମରଣ କଲା ।

ସେଇଦିନ ସଞ୍ଜବେଳକୁ ହେମଲତା ଶିବବାବୁଙ୍କ କଲୋନୀ ଆଡ଼େ ମାଡ଼ିଗଲା । ଖବର ବୁଝିଲା ପଡ଼ୋଶୀ ବାସୁବାବୁଙ୍କଠୁ, ଶିବବାବୁ ଏତେଶୀଘ୍ର ଫେରୁନାହାନ୍ତି, ଛୁଟି ବଢ଼େଇଛନ୍ତି । କେଶବାବି ଅଫିସ୍‌ରୁ ଶୁଣିଲା, "ଜନନୀ ଓ ଶିଶୁ ସୁରକ୍ଷା ପ୍ରକଳ୍ପଟି" ବନ୍ଦ

Digitized by PPRACHIN, SOA

ହେବାକୁ ଯାଉଛି ଏଇ ମାସ ଶେଷରେ । ସବୁ ଠପ୍ । କେଶବା ଶୂନ୍ୟକୁ ଚାହିଁଲା । ପୁଣି ଅନିଶ୍ଚିତ ଅନ୍ଧାର ଭିତରକୁ ଠେଲି ହେଇଗଲା କେଶବାର ଢିରାଦିଆ ସଂସାର ।

ସେ'ଦିନ ରାତିରେ... ଅଭୟା ଓ ରାଘବବାବୁ ଅନେକ ଦିଗରୁ ଚିନ୍ତା କରିଥିଲେ ଲକ୍ଷ୍ମୀ ପାଇଁ । କୋଉ ପ୍ରକାରେ ସାହାଯ୍ୟ କରାଯାଇପାରେ । ଅଭୟା କହିଲେ ମନ୍ଦିର ସେମାନଙ୍କ ପାଇଁ ସୁବିଧା ହେବ । ହେମ କେଶବା ମିଶି ମନ୍ଦିର ବେଢ଼ାର ଯତ୍ନ ନେବେ । ସମୟ ଅସମୟରେ ଖାଇବା ବ୍ୟବସ୍ଥା ବି ହେଇପାରିବ । ମାସେ ଦି'ମାସ ମୁଣ୍ଡ ଗୁଞ୍ଜିବାକୁ ଅସୁବିଧା ହେବନି । ତା'ପରେ ସେଇ ପରିବାର ପାଇଁ କିଛି ଗୋଟାଏ ସ୍ଥାୟୀ ବ୍ୟବସ୍ଥା କରିବାକୁ ପଡ଼ିବ, ମାନେ ରୋଜଗାର ଚିନ୍ତା, ଆଶ୍ରୟ ସିନା ମିଳିଯିବ, ସଂସାରର ଅନ୍ୟାନ୍ୟ ଖର୍ଚ୍ଚ ତ ରହିଛି, ଚଳିବ କେମିତି ?

"ଇଏ ବି ଚିନ୍ତାର ବିଷୟ । ସ୍ଥାୟୀ ଭାବେ କିଛି ଗୋଟାଏ ବ୍ୟବସ୍ଥା ନହେଲେ, ଏମିତି ବିଚରା ପରିବାରଟା ବିପର୍ଯ୍ୟସ୍ତ ହେଇଯିବ । ଲକ୍ଷ୍ମୀଟା ଭଲ ପଢୁଛି, ପରିଶ୍ରମୀ, ଉପରକୁ ଉଠିବାର ଇଚ୍ଛା ଅଛି, ସାହସ ଅଛି ମଧ୍ୟ ।

ଅଭୟା ପୁଣି ଦୋହରେଇଲେ, ମୁଁ କହୁଛି, ତମେ ତୁମର ସୋସିଆଲ ୱାରକରମାନଙ୍କ ସହିତ ଥରେ ଆଲୋଚନା କର ଏ ବିଷୟରେ । କେତେତ ସଂସ୍ଥା ଅଛି ବୋଲି ତୁମେ କୁହ । ବୃଦ୍ଧାଶ୍ରମ, ଅନାଥାଶ୍ରମ କିମ୍ବା ଚାଇଲଡ୍ ହେଲପ୍ ଲାଇନ୍ ଭଳି ସଂସ୍ଥା । ଯଦି ସମ୍ଭବ ହୁଏ ସେଠି କୋଉଠି ପରିବାରଟିକୁ ଆଶ୍ରୟ ମିଳିଗଲେ ଲକ୍ଷ୍ମୀଟା ପଢ଼ିପାରିବ ବି ରୋଜଗାର ବି ହେବ ।"

ମୁଁ ବି ଭାବୁଥିଲି ସେଇ କଥା, ତେବେ କ'ଣ କି ଅଭୟା ଏସବୁ ପାଇଁ ଟିକିଏ ସମୟ ଲାଗିବ । ସେ ପର୍ଯ୍ୟନ୍ତ କେଶବା କେମିତି ସମ୍ଭାଳିବ ତା' ପରିବାରକୁ ? ତେବେ ଲକ୍ଷ୍ମୀର ପରୀକ୍ଷା ପର୍ଯ୍ୟନ୍ତ କିଛି ଗୋଟାଏ ଅସ୍ଥାୟୀ ବ୍ୟବସ୍ଥା ତ ନିହାତି ଜରୁରୀ ।

ମୁଁ ଥରେ ସକାଳୁ ମନ୍ଦିର ଟ୍ରଷ୍ଟି ରାଜୁବାବୁଙ୍କ ସହିତ ଆଲୋଚନା କରିବି । ଦେଖାଯାଉ ସଫଳ ହେଉଛି କି ନାହିଁ । ଗରିବ ମଣିଷଟାର କିଛି ଉପକାର ହେଇଯାଉ ଆମଦ୍ୱାରା, ନା କ'ଣ କହୁଛ ଅଭୟା ?

"ଲକ୍ଷ୍ମୀ ତ ନିଶ୍ଚୟ ପରୀକ୍ଷା ଦେବ । କିଛି ନହେଲେ ଆମ ଘରେ ସେ ରହିଯିବ ଏଇ ମାସଟା । ଆମ ପୁଅ ଆର୍ଯ୍ୟ ତ ଏବେ ଆସିବାର ନାହିଁ । ଝିଅଟା ଆଡଜଷ୍ଟିଭ୍ ମଧ୍ୟ । ଚଳେଇ ନେବ ନିଜକୁ ଯେକୌଣସି ପରିସ୍ଥିତିରେ ।"

ରାଘବବାବୁ ଖୁସି ହେଇଗଲେ ଅଭୟାଙ୍କ କଥା ଶୁଣି । ଅଭୟା ସବୁବେଳେ ଏମିତି । ସଙ୍କଟ ମୁହୂର୍ତ୍ତରେ ସେ ବାଟ ଦେଖେଇଦିଅନ୍ତି । ନହେଲେ ସେ ସୋସିଆଲୱାର୍କ କରିବାକୁ ଓହ୍ଲେଇ ପଡ଼ନ୍ତେ କିମିତି । ତାଙ୍କ ଜୀବନର ସଫଳତା ପଛରେ ତ ସେଇ ଅଛନ୍ତି ।

Digitized by PPRACHIN, SOA

ମନ ସମୁଦ୍ରରେ ଝଡ଼ ଉଠିଲେ ହିଁ ହତାଶା, ଅସହାୟତାର ଢେଉମାନେ ଚଳଚଞ୍ଚଳ ହୋଇ ମୁଣ୍ଡ ଟେକନ୍ତି ଭୟଙ୍କର ଭାବେ । ଆଉ ସେଇ ମୁହୂର୍ତ୍ତରେ ମଣିଷ ଅଗତ୍ୟା ଏକ ସିଦ୍ଧାନ୍ତରେ ପହଞ୍ଚିଯାଏ । ସେମିତି ଚରମସଙ୍କଟ ନଆସିଲେ ବୋଧହୁଏ ସେ କୌଣସି ସିଦ୍ଧାନ୍ତ କି ନିଷ୍ପତ୍ତି ନେବାକୁ ପ୍ରସ୍ତୁତ ହୁଏନା ଏକଥା ସତ ।

ସେଇଦିନ ବାପ ମା'ଝିଅ ତିନିହେଁ ମିଶି ଚିନ୍ତା କଲେ, ଆଉ କୋଉଠୁ କିଛି ସାହାଯ୍ୟ ମିଳିବାର ଆଶା ନାହିଁ । ଅପେକ୍ଷା ଆଉ କ'ଣ ପାଇଁ ? ଏ'ଘର ଯଦି ଛାଡ଼ିବାକୁହିଁ ହେବ, ତା'ହେଲେ ଡେରି କାହିଁକି । ଲକ୍ଷ୍ମୀ କହିଲା, ଆମେ ପ୍ରସ୍ତୁତ ହେବା ଏଇ ଦି'ତିନି ଦିନରେ ଘର ଛାଡ଼ିବା ପାଇଁ । ଅନ୍ୟ କାହାକୁ ଏକଥା କହିବା ଆବଶ୍ୟକ ନାହିଁ-ପୁଣି ଅନର୍ଥ ସୃଷ୍ଟି ହେବ । ବାପା ବିଦ୍ୟାଧର ମଉସାଙ୍କ ସହିତ କଥାବାର୍ତ୍ତା କରନ୍ତୁ । ବର୍ତ୍ତମାନ ପାଇଁ କିଛି ଜିନିଷ ତାଙ୍କ ଘରେ ରଖି, ଅଳ୍ପ କିଛି ଆବଶ୍ୟକ ଜିନିଷ ନେଇ ଆମେ ଯୋଉଠି ସମ୍ଭବ ସେଠିକି ଉଠିଯାଇପାରିବା ।

କେଶବା ଆଉ ଦୋଦୋ ପାଞ୍ଚ ନ ହୋଇ, ଝିଅର ନିଷ୍ପତ୍ତିକୁ ଟାଳି ପାରିଲାନି ପରିସ୍ଥିତିକୁ ଚାହିଁ । ହେମକୁ ପ୍ରସ୍ତୁତ ହେବାକୁ କହି ନିଜେ ପଶିଗଲା ଚିନ୍ତାର ଭଉଁରି ଭିତରକୁ ।

ଭାବିଲେ ଆଶ୍ଚର୍ଯ୍ୟ ଲାଗେ, କେତେ କେତେ ତିକ୍ତ ଅନୁଭୂତି, ଅଶାନ୍ତି, ଅପମାନ ଭିତର ଦେଇ ଗଡ଼ି ଆସିଛି ତାର ଏଇ ଜୀବନ । ଛାତି ଥରି ଉଠେ ମନେପଡ଼ିଲେ, କଣ୍ଠ ଶୁଖିଯାଏ । ଏଡ଼େ ହତଭାଗାଟିଏ ଯେ ସେ, କେବେ ଅନ୍ୟାୟ, ଅତ୍ୟାଚାର ବିରୋଧରେ ପ୍ରତିବାଦ କରିବାର ସୁଯୋଗ ହିଁ ପାଇନି । ଈଶ୍ୱର ତାକୁ ଏକାବେଳକେ ପଙ୍ଗୁ, ଅକର୍ମଣ୍ୟ କରିଦେଲେ । ସମୟର ସୁଅରେ କୁଟାକାଠି ଭଳି ସେ କେବଳ ଭାସିଆସିଛି । କେତେବେଳେ ଆଶ୍ରା ଟିକେ ପାଇଲେ ଆଉଜି ପଡ଼ି ନିଃଶ୍ୱାସ ନେଉଛି ତ କେତେବେଳେ ଭାସୁଛି ସୁଅ ପ୍ରଖର ହେଲେ ଅସହାୟ ଭାବେ । ସ୍ଥିର ନିଶ୍ଚିତ ଜୀବନକୁ ସେ ଏଯାଏ ଭେଟିନି । ହୁଏତ ଏହାହିଁ ଈଶ୍ୱରଙ୍କ ଇଚ୍ଛା, ରାତିପାହିଲା ବେଳକୁ, ଯାହା ଥୋଇଥିବେ ତା'ପାଇଁ ବିଷ ହେଉ କି ଅମୃତ । ତାକୁହିଁ ସେ ଗ୍ରହଣ କରିବ । ହାତ ଯୋଡ଼ିଲା କେଶବା ସେଇ ଅଦୃଶ୍ୟ ଶକ୍ତି ଉଦ୍ଦେଶ୍ୟରେ ଏବଂ ହେମ ଆଡ଼କୁ ଚାହିଁ କହିଲା, ଶୋଇଲୁଣି ହେମ... ଶୋଇଯାଇଥା' ଘଡ଼ିଏ' ଏଣିକି ରାତି ପାହିଲେ, ପେଟ ପାଇଁ ଚିନ୍ତା କରିବାକୁ ପଡ଼ିବ । ଖୋଲା ଆକାଶ ତଳେ ଆଖିରୁ ନିଦ, ହଜିଯିବ ଲୋ ହେମ... କଣ୍ଠରୁଦ୍ଧ ହୋଇଆସିଲା କେଶବାର । "ଆମ ପାଇଁ କିଛି ଚିନ୍ତା ନାହିଁ, ସେ ରାସ୍ତାକଡ଼ ହେଉକି ଗଛତଳ, ମୋ ଭୁଆସୁଣି ଝିଅ ଲକ୍ଷ୍ମୀକୁ କୋଉଠି ଥୋଇବି, କାହା ଜିମାରେ, ଭାବିଲେ ଛାତି ଫାଟିଯାଉଛି, ଧିକ୍ ମୋ' ବାପପଣକୁ ଲୋ ହେମ । ପରିବାରକୁ ଛତା ଘୋଡ଼େଇ

Digitized by PPRACHIN, SOA

ରଖିବାର ସାମର୍ଥ୍ୟ ମୋର ନାହିଁ । ମୋତେ କ୍ଷମା କରିଦେ, ଅନେକ କଷ୍ଟ ସହିଲିଣି । କେଶବାର ବୟସ୍କ ଆଖିରୁ ଲୁହ ଝରିଲା ଶ୍ରାବଣ ମେଘ ଭଳି ।

ହେମ ପଣତକୁ ବଢ଼େଇ ଦେଇ କହିଲା, "ଥୟ ଧର, ଏତେ ଅଧୈର୍ଯ୍ୟ ହେଲେ କେମିତି ହେବ । ସମୟର ପରୀକ୍ଷା ଇଏ, ଥୟ ଧର, ଲକ୍ଷ୍ମୀ ଶୁଣିଲେ ଭାଙ୍ଗିପଡ଼ିବ ।"

ରାତି ଘନେଇ ଆସୁଥିଲା । କାହା ଆଖିରେ ନିଦ ନ ଥିଲା । ତିନି ହେଁ ବିଛଣାରେ ଶୋଇ ଛଟପଟ ହେଉଥିଲେ ନିଦର ବାହାନା କରି । ପରଦିନ ସକାଳୁ ଅଫିସ୍ ଯିବା ପୂର୍ବରୁ କେଶବା ଲକ୍ଷ୍ମୀ ସହିତ ରାଘବ ସାର୍‌ଙ୍କୁ ଦେଖାକରିବ ବୋଲି ବାହାରିଲା । ହେମ ମନେ ମନେ ଠାକୁରଙ୍କୁ ହାତ ଯୋଡ଼ିଲା..." ମୃଗୁଣୀ ଭଳି ମୁଁ ବିପଦରେ ପଡ଼ିଛି ଠାକୁରେ... ହାତ ଟେକି ଦେଲି, ବାଟ ଦେଖାଅ ।"

ରାଘବବାବୁ ଲକ୍ଷ୍ମୀ ଓ କେଶବାକୁ ଦେଖି ଖୁସି ହେଲେ । ସଂକ୍ଷିପ୍ତରେ ପରିସ୍ଥିତିର ଗମ୍ଭୀରତା ନେଇ ଆଲୋଚନା ବି କଲେ । କହିଲେ, ବର୍ତ୍ତମାନ ପାଇଁ କିଛି ଅସୁବିଧା ନାହିଁ । ଆମ ମନ୍ଦିର ଟ୍ରଷ୍ଟିଙ୍କ ସହିତ ପରାମର୍ଶ କରିଛି । ସେମାନେ ଅରାଜି ନୁହନ୍ତି ।

ମନ୍ଦିର ବେଢ଼ାରେ ଥିବା ଘରମାନଙ୍କ ଭିତରୁ ଯୋଉଟା ଟିକିଏ ରହିବା ଯୋଗ୍ୟ ସେଇ ବଖରାରେ ତମେ ରହିପାର । ସୁବିଧା ବିଶେଷ ନାହିଁ ଯଦିଓ, ଚଳିଯାଇହବ ସାମୟିକ ଭାବେ । ଆମ ସମସ୍ୟା ମଧ୍ୟ କିଛିଟା ହାଲୁକା ହେଇଯିବ । ତେବେ, ଲକ୍ଷ୍ମୀ ପାଇଁ ସେ ସ୍ଥାନ ଉପଯୋଗୀ ନୁହେଁ । ତାକୁ ଆମ ଘରେ ଛାଡ଼ିବାକୁ ପଡ଼ିବ । ପରୀକ୍ଷା ସରୁ, ତା'ପରେ ଅନ୍ୟ ବ୍ୟବସ୍ଥା କରିବା । ଆମର କୌଣସି ଅସୁବିଧା ନାହିଁ । ବରଂ ଲକ୍ଷ୍ମୀ ଆମ ପାଖରେ ନିଶ୍ଚିନ୍ତରେ ରହି ପରୀକ୍ଷା ଦେଇପାରେ । ବର୍ତ୍ତମାନ ତୁମ ଦୁହିଁଙ୍କ ବିଚାର ଉପରେ ସବୁ ନିର୍ଭର କରୁଛି ।

କେଶବା, ଗଦ୍‌ଗଦ ହେଇ ହାତଯୋଡ଼ିଲା । ମନରକଥା ସତେକି ଶୁଣିପାରିଲେ ରାଘବ ସାର୍ ଈଶ୍ୱରଙ୍କ ଭଳି । ମାଗିବା ଆଗରୁ ଅଜାଡ଼ି ଦେଲେ କରୁଣା ତା'ହାତରେ । ସବୁ ସମସ୍ୟାର ସମାଧାନ ପ୍ରାୟ ହେଲା, ହାଲୁକା ଲାଗିଲା ନିଜକୁ । କେମିତି ଜଣେଇବ କୃତଜ୍ଞତା ଭାବିପାରୁ ନଥିଲା, ମାଡ଼ିପଡୁଥିଲା । ଛଳଛଳ ଆଖିରେ ଆର୍ତ୍ତସ୍ୱରରେ କହିଲା, ଆଜ୍ଞା ମୁଁ ଜୀବନରେ ଦ୍ୱିତୀୟଥର ପାଇଁ ଆଜି ଈଶ୍ୱରଙ୍କୁ ଭେଟିଲି । ଜାଣେନା ମୋର କୋଉ ଜନ୍ମର ତପସ୍ୟାର ଫଳ ଇୟେ । ମୋ ଲକ୍ଷ୍ମୀକୁ ଆଶ୍ରା ଦେଇ, ତାକୁ ଥଇଥାନ କରି ମୋତେ ସମସ୍ୟାମୁକ୍ତ କରିଦେଲେ । ଜନ୍ମେ ଜନ୍ମେ ମୁଁ ଋଣୀ ରହିଲି... ଭୂଇଁରେ ମୁଣ୍ଡ ଲଗେଇଲା କେଶବା ।

ଅଭୟା ବ୍ୟସ୍ତ ହେଇ କହିଲେ, 'ଏମିତି କୁହନ୍ତିନି କେଶବା । ପ୍ରଶଂସାର ବି ସୀମା ଅଛି । ତା'ଛଡ଼ା ଈଶ୍ୱର ଯୋଉଠି ସାହାଯ୍ୟର ହାତ ବଢ଼େଇବେ, ସେଠି ମଣିଷ

Digitized by PPRACHIN, SOA

କିବା ଛାର । ଲକ୍ଷ୍ମୀ ଆମ ଝିଅ ଭଳି । ସମସ୍ତେ ତାକୁ ଭଲ ପାଆନ୍ତି । ସମସ୍ତଙ୍କ ସଦିଚ୍ଛାରେ ତା' ଚଲାବାଟ ସହଜ ଆଉ ନିର୍ବିଘ୍ନ ହେଉ । ବାସ୍ ଏତିକି ଆମର କାମନା । ଚାରିଜଣରେ ଜଣେ ହେଇ ଠିଆ ହୋଇଯାଉ ନିଜ ଗୋଡ଼ରେ ।"

"ଆଉ ବିଳମ୍ବ ନ କରି ଶୀଘ୍ର ତମେମାନେ ମନ୍ଦିର ବେଢ଼ାକୁ ଚାଲିଆସ, କହିଲେ ରାଘବ ସାର୍, ସମୟ ଠିକ୍ ହାତଧରି ବାଟ କଢ଼େଇ ନେବ ।"

କେତେବଡ଼ ସଂସାର ଯେ, ଗୋଟେଇଗାଟେଇ ସଜାଡ଼ି ରଖିବାକୁ ସମୟ ଲାଗନ୍ତା । ଚୁପ୍‌ଚାପ୍ ହିଁ ସବୁ କାମ ହେଇଗଲା । ସାଇପଡ଼ିଶା କେହି ଜାଣିଲେନି । ଲକ୍ଷ୍ମୀ ତା' ବହିପତ୍ର ଲୁଗାପଟା ଦି'ଖଣ୍ଡକୁ ଅଲଗା କରି ବାନ୍ଧି ରଖିଲା । କେଶବାକୁ କହିଲା ବିଦ୍ୟାଧର, ତମ ଦରକାରୀ ଲୁଗାପଟା, ବିଛଣା ଚଦର, ବାସନକୁସନକୁ ଅଲଗା ବାନ୍ଧି ନିଅ । ଆଉ ବାକି ଯାହା ରହିଲା, ତାକୁ ସଜାଡ଼ି ଆମ ଘରେ ରଖିଦେବା । ମୋର ଛୋଟଘର, ଛୋଟ ପଣତ ହେଲେବି, ଏତିକି ତ କରିପାରିବି । ତମ ସୁବିଧା ହେଲେ ଯାଇ ନେବ । ଚିନ୍ତା କରନି । ବନ୍ଧୁ ହେଇଥାଏ ଆଉ କୋଉଥିପାଇଁ, ବିପଦ ବେଳେ ହାତ ନ ବଢ଼େଇଲେ ଆଉ କି ବନ୍ଧୁ । ସେଦିନ ବିଦ୍ୟାଧର ଅନେକ ରାତିଯାଏ କେଶବା ବସାରେ ଥିଲା ଅନେକ ସୁଖଦୁଃଖ ବି ହେଲେ । ଆଉ କେଇଟା ଦିନ, ଚାକିରି ଯିବ, ତେଣିକି ଅନ୍ନଚିନ୍ତା । ବିଦ୍ୟାଧରର ଦୁଇପୁଅ... ସପ୍ତମ ଅଷ୍ଟମରେ ପଢୁଛନ୍ତି । ଆଗକୁ ଭାବିପାରେନା ବିଦ୍ୟାଧର । ଭାଗ୍ୟ ଯୁଆଡ଼େ ବାଟ କଢ଼େଇବ । ପୁଣି କାମ ମଜୁରି ଖୋଜିବାକୁ ହେବ । ଦୁହେଁ ଭାଗ କରିନେଲେ ସମଦୁଃଖକୁ ।

ହେମ ରାନ୍ଧିଲା, ଭାତ ଡାଲି, ଆଳୁଭରତା । ବାଢ଼ିଦେଲା ଦୁଇବନ୍ଧୁଙ୍କୁ ଏକାଠି । ଜାଣେନା, ଏଇ ସୁଯୋଗ ଆଉ କେବେ ମିଳିବ କି ନାହିଁ ।

ବିଦ୍ୟାଧର ଖାଇସାରି ମୁହଁ ଧୋଇ କହିଲା- ଟିକିଏ ଅନ୍ଧାର ଥିବ, ମୁଁ ଆସିବି ରିକ୍‌ସା ନେଇ ପ୍ରସ୍ତୁତ ହେଇଥିବ ଯିମିତି । ଯିବା ।

ସେଇ ରାତିଟା ବି ଅନିଦ୍ରାରେ ହିଁ କଟିଲା । ଝିଅଟା ପାଖରୁ ଅଲଗା ହେଇଯିବ ପ୍ରଥମଥର ପାଇଁ । ହେମର ମା' ମନ ବିକଳ ହେଇଯାଉଥିଲା । ଶାଗ ପେଜ ବାଢ଼ି ଦେହମୁଣ୍ଡକୁ ଆଉଁଶି ଦେଲେ ଝିଅର, ମନ ପୂରିଯାଏ, ଦମ୍ଭ ଲାଗେ, ଆଶା ଜାଗେ, ତା'ର ହେଇ କିଏ ଜଣେ ଅଛି । ବଞ୍ଚିବାକୁ ଇଚ୍ଛା ହୁଏ । ଦୁଃଖକଷ୍ଟ ବାଧେନା । ସେଇ ଝିଅ ଆଜି ଅଲଗା ହେଇଯିବ । ଯଦିଓ ସେ ଖୁବ୍ ନିରାପଦ ଓ ସୁବିଧାରେ ରହିବ ତଥାପି ମନ ବୁଝୁ ନ ଥିଲା । ବାପାମା' ଦୁହେଁ କେବଳ ନୁହେଁ, ଲକ୍ଷ୍ମୀ ମନରେ ବି ବ୍ୟଗ୍ରତା ଥିଲା, ଉତ୍ତେଜନା ଥିଲା ଏବଂ ସୂର୍ଯ୍ୟୋଦୟର ଅନେକ ପୂର୍ବରୁ, ବସ୍ତି ଶୋଇଥିଲା ବେଳେ, ବିଦ୍ୟାଧରର ଡାକ ଶୁଭିଲା କାନରେ ।

Digitized by PPRACHIN, SOA

ରିକ୍‌ସା ଦୁଇଟିରେ ଜିନିଷ ରଖି ତିନିହେଁ ବାହାରିଗଲେ କମଳା ମା'ର ସ୍ନେହାଙ୍କିତ ଆଶ୍ରାରୁ । ଆଗପଛ ନ ଥିବା ଏକ ଅନିଶ୍ଚିତ ଯାତ୍ରାପଥ । ସାଥିରେ କେବଳ ସମୟ ଥିଲା, ପଛରେ କମଳା ମା'ର ଘର ଆଉ ଅସରନ୍ତି ସ୍ମୃତି ହାତ ଠାରୁଥିଲା ।

ପ୍ରଣାମ ଜଣେଇଲେ ତିନିହେଁ ।

ଆଗପଛ ହେଇ ରିକ୍‌ସା ଗଡ଼ିଲା । ଆଗରେ ପୂର୍ବାକାଶରେ ଖୋଲା ଦିଗନ୍ତ । ଗଲା ରାତିର ପିନ୍ଧିଥିବା ନୀଳରଙ୍ଗ ଶାଢ଼ିକୁ ବଦଳେଇ ଫିକା ତମ୍ବାଟିଆ ରଙ୍ଗର ଶାଢ଼ି ପିନ୍ଧିବାକୁ ଯାଉଥିଲା ପ୍ରାଚୀ ସୁନ୍ଦରୀ । ଲକ୍ଷ୍ମୀ ଆଖିରେ ପଡ଼ିଗଲା ସେଇ ମୁଗ୍ଧ ଦୃଶ୍ୟ । କହିଲା, ଚାହିଁଲୁ ବୋଉ ଆକାଶକୁ କି ଚମତ୍କାର ଦିଶୁଛି... ଆଗରୁ ମୁଁ ଦେଖି ନ ଥିଲି କେବେ । ହେମଲତା ଝିଅକୁ କହିଲା ସିନ୍ଦୂରା ଫାଟିବାର ବେଳ ତ... ।

କାହିଁକି କେଜାଣି ଲକ୍ଷ୍ମୀ ମୁହଁରେ ହସ ଟହଟି ଉଠିଲା । ଆଖି ଉଜ୍ଜ୍ୱଳ ଦିଶିଲା । ବୋଉ ମୁହଁକୁ ଅନେଇ କହିଲା...ଏଥର ସକାଳ ହେବ ନା ବୋଉ ? ? ଆଲୁଅ ଫିଟିବ... ଅନ୍ଧାର ରହିବନି... ବାଟ ଦିଶିବ... ମନକୁ ମନ ସ୍ୱଗତୋକ୍ତି କଲାଭଳି ଗୁଣୁଗୁଣେଇଲା ଲକ୍ଷ୍ମୀ ।

ହେମଲତାକୁ ଆଶ୍ଚର୍ଯ୍ୟ ଲାଗିଲା- ଝିଅଟା ପାଗଳୀଙ୍କ ଭଳି କ'ଣ ଏମିତି ମନକୁ ମନ କହିହେଉଛି ଯେ... !

ହେମ କହିଲା, ସବୁବେଳେ କ'ଣ ଅନ୍ଧାର ଥା'ନ୍ତା ଝିଅ... ଅନ୍ଧାର ତ କଟନ୍ତା... କଟିବ ମଧ... ସକାଳ ହେବ । ଏଇ ସକାଳକୁ ତ ଅପେକ୍ଷା ରଖେ ମଣିଷ । ଦେଖୁନୁ ସିନ୍ଦୂରା କିମିତି ଫାଟି ଫାଟି ଆସୁଛି..... ।

Digitized by PPRACHIN, SOA

ମୁଁ ଜାଣିଥିଲି ଏ ରାସ୍ତାଟା ମୋର ନୁହେଁ, ତଥାପି ମୁଁ ଏଇ କଙ୍କରିଳ ନାଲି ସଡ଼କକୁ ହିଁ ବାଛିଥିଲି ନିଜ ପାଇଁ । ଜାଣି ନଥିଲି, ଏ ସଡ଼କଟା କୁଆଡ଼େ ଯାଇଛି । ଏକଥା ବି ନୁହେଁ ଯେ, ମୋ' ସାମ୍ନାରେ ଆଉ କିଛି ରାସ୍ତା ନ ଥିଲା । ଥିଲା, ସଫା ରାସ୍ତା- ଚଉଡ଼ା, ସିଧାସଳଖ, ଆଖି ନ ପାଇଲା ଭଳି ଲମ୍ବା ପିଚୁକରା କଳା କଳା ରାସ୍ତାସବୁ ।

ଏମିତିକି ତୀର ଚିହ୍ନମାନେ ବାଟ ବି ଦେଖେଇ ଦେଉଥିଲେ - "ଏଇ ରାସ୍ତାରେ ଯା'ନ୍ତୁ, ଲକ୍ଷ୍ୟସ୍ଥଳରେ ପହଞ୍ଚି ପାରିବେ" କିମ୍ବା "ଏଇ ରାସ୍ତାରେ ଗଲେ ଆପଣଙ୍କ ଈପ୍ସିତ ସ୍ୱପ୍ନ ଅପେକ୍ଷା କରିଥିବ ଆପଣଙ୍କୁ' ଅଥବା "ଆପଣ ସ୍ୱପ୍ନକୁ ଭେଟିବାକୁ ଯଦି ଚାହୁଁଛନ୍ତି, ଏଇ ରାସ୍ତା ଧରନ୍ତୁ" – "ଆପଣଙ୍କ ଯାତ୍ରା ସଫଳ ହେଉ"- ଭଳି ଅନେକ ଫଳକ ।

ମୁଁ ସେତେବେଳେ ଛକ ଉପରେ ଠିଆ ହେଇଥିଲି, ଠିଆ ହେଇ ଚାହିଁଥିଲି ମୋ' ଚାରିପଟର ରାସ୍ତା ସବୁକୁ । ଭାବିପାରୁ ନଥିଲି ଯିବି ଯଦି କୁଆଡ଼କୁ ଯିବି, କୋଉ ରାସ୍ତାରେ ଯିବି ? ମୋ' ସାମ୍ନାରେ ଯୋଉ ସବୁ ରାସ୍ତା ପଡ଼ିଥିଲା ସେ ସବୁ ତ ମୋର ଅଚିହ୍ନା, ଅପରିଚିତ ଧୋବ ଧାଉଳିଆ ଅତରମଖା ନାମୀ ଦାମୀ ମଣିଷମାନେ ସେଇ ରାସ୍ତାରେ ଯାଉଥିଲେ । ମହମହ ବାସୁଥିଲା ସେହି ରାସ୍ତାସବୁ । ମୋର କେମିତି ଗୋଟିଏ ଧାରଣା ହୋଇଥିଲା ଯେ ମୋ' ଭଳି ସାଧାରଣରୁ ସାଧାରଣ ଅପାଂକ୍ତେୟମାନଙ୍କ ପାଇଁ ନୁହେଁ ଏସବୁ ରାସ୍ତା ।

ତା'ଛଡ଼ା ମୁଁ ଏଇ ରାଜକୀୟ ରାସ୍ତାରେ ଯାଇ କ'ଣ ବି କରିବି ? ମୁଁ ତ କେବେ

Digitized by PPRACHIN, SOA

ସ୍ୱପ୍ନ ଦେଖିନି କି ଚିହ୍ନିନି ସ୍ୱପ୍ନକୁ । ଅଥଚ ତାକୁ ଭେଟିବା ପାଇଁ ଯାଇ ତୁଚ୍ଛାଟାକୁ ଭେଟଣା ହେବି କାହିଁକି ? କାହିଁକି ହତାଶାର ଖାତାରେ ପ୍ରଥମ କରି ନାଁ ଲେଖିବି ? ତେଣୁ ହିଁ ଚାହିଁଲିନି ସେଇ ମହକୁଥିବା ରାସ୍ତାରେ ଯିବାକୁ ।

ଆଉ ମୋର ଲକ୍ଷ୍ୟ... ?

ଜୀବନ ବଞ୍ଚିବା ଛଡ଼ା ମୋ' ଭଳି ବେକାର ଯୁବକର କି ଲକ୍ଷ୍ୟ ଥାଇପାରେ ? ସତ କହିବାକୁ ଗଲେ ସେ ସବୁ ଦାମୀ ରାସ୍ତାରେ ଯିବାକୁ ମୋର ଭୟ ହେଉଥିଲା । ସେମାନଙ୍କ ସହିତ ମୁଁ ମୋଟେ ଧାଇଁ ପାରିବିନି । ମୋର ସ୍ପୀଡ୍ କାହିଁ ? ଗତି କାହିଁ ?

ନିଜ ପ୍ରଶ୍ନରେ ନିଜେ ହିଁ ହଡ଼ବଡ଼େଇ ଯାଇଥିଲି । ତା'ହେଲେ ? ମୋ' ଭିତରେ କିଏ ଜଣେ ବ୍ୟସ୍ତ ବିବ୍ରତ ହେଇ ପ୍ରଶ୍ନ କରିଥିଲା - "ଏଠି ଠିଆ ହେଇଛୁ କାହିଁକି, କୁଆଡ଼େ ଯିବୁ ବୋଲି ?"

ନିଛାଟିଆ ବିସ୍ତର ଖେଳପଡ଼ିଆର ଛିନ୍‌ଛାନ୍ ନିଶୁନତା ଭିତରେ ମୋ' ପ୍ରଶ୍ନ ଅନୁରଣିତ ହୋଇ ଫେରିଆସୁଥିଲା ମୋରି ପାଖକୁ ଏବଂ ମୁଁ ଆଛନ୍ନ ହେଇପଡୁଥିଲି କ୍ରମଶଃ...

ମୁଁ ଆଉ ମୋ' ପ୍ରଶ୍ନବାଚୀକୁ ପଛରେ ପକାଇ ଦଳଦଳ ମଣିଷ ଏକମୁହାଁ ଧାଉଁଥିଲେ ଜନ୍ଦାପିମ୍ପୁଡ଼ି ଭଳି । ମୋତେ ଆଶ୍ଚର୍ଯ୍ୟ ଲାଗୁଥିଲା ପୃଥିବୀରେ ଏତେ ଲୋକ ଅଛନ୍ତି ତାହାହେଲେ ସ୍ୱପ୍ନ ପଛରେ ଧାଇଁବାକୁ । ଏମାନେ ସମସ୍ତେ କ'ଣ ସ୍ୱପ୍ନ ଦେଖିଛନ୍ତି ? ନା, ଧରାଦେଇଛନ୍ତି ତା' ପାଖରେ । ନହେଲେ ଏମିତି ଧାଇଁଛନ୍ତି କାହିଁକି ଅଣନିଃଶ୍ୱାସୀ ହୋଇ ? ହୁଏତ ଦେଖିଥିବେ । ଦେଖିଥିବେ, ତା' ବୋଉ ଭଳିଆ । ବୋଉ ପାଟିରୁ ବି ତ ସେ ଶୁଣିଛି କେବେ କେବେ ଏଇ ସ୍ୱପ୍ନ କଥା । ଅନେକ ସ୍ୱପ୍ନ ସେ କୁଆଡ଼େ ଦେଖିଥିଲା ବାପା ବଞ୍ଚିଥିଲା ବେଳେ । ସେଇ ସ୍ୱପ୍ନ ସବୁ ଭାଙ୍ଗିରୁଜି ଗଲା, ବାପା ଅବେଳରେ ଚାଲିଗଲେ ବୋଲି ସେ ସବୁବେଳେ କାନ୍ଦୁଥିଲା ମଧ୍ୟ । ଅବଶ୍ୟ ମୁଁ କେବେ ପଚାରିନି ତାକୁ ତା' ସ୍ୱପ୍ନ ସଂପର୍କରେ । ପିଲା ଥିଲି ତ ସେତେବେଳକୁ ଆମେ ତିନି ଭାଇଭଉଣୀ ହିଁ ଥିଲୁ ତା' ପାଖରେ । ଆଉ କେହି ନଥିଲେ । ତେବେ ମନ ଭିତରେ ପ୍ରଶ୍ନ ଉଠେ ସ୍ୱପ୍ନ ଦେଖିଲେ, ଦେଖି ଭାଙ୍ଗିଗଲେ କ'ଣ ଏମିତି କାନ୍ଦିବାକୁ ହୁଏ ? ଯଦି ତା' ହିଁ ସତ, ତା'ହେଲେ କିଏ କାହିଁକି ସ୍ୱପ୍ନ ଦେଖିବ ଯେ !

ହଠାତ୍ ଅବନୀ ପଛକୁ ଫେରି ଚାହିଁଲା । ପନ୍ଦର କୋଡ଼ିଏ ବର୍ଷ ପଛକୁ... ସେଇ ସମୟମାନଙ୍କରେ ବୋଉ ଅନେକ କଷ୍ଟ କରିଛି । ପିଲା ତିନୋଟିଙ୍କୁ କେମିତି ବଞ୍ଚେଇବ, ପାଟିରେ ତାଙ୍କର କେମିତି ଢୋକ ଦେବ, ସେଇ କଥା ହିଁ ସେ ଭାବିଛି । ବାପା- ସୁଦାମ ପରିଡ଼ା ୟୁ.ପି. ସ୍କୁଲର ସାଧାରଣ ଶିକ୍ଷକଟିଏ ଥିଲେ । ମୁଣ୍ଡ ଗୁଞ୍ଜିବାକୁ ନଡ଼ାଛପରର ଦି'

Digitized by PPRACHIN, SOA

ବଖୁରିଆ ଘର ଖଣ୍ଡିକୁ ଛାଡ଼ିଦେଲେ, ବାଡ଼ିପଟର ଫଳନ୍ତି ଦି'ଟା ନଡ଼ିଆଗଛ ଆଉ ଦୁଧିଆଳୀ ଗାଈ ବଉଳୀ । ବାସ୍ ।

ବାପା ଗଲେ, ବାପାଙ୍କ ସହିତ ତାଙ୍କ ଦରମାଗଣ୍ଡାକ ବି ଚାଲିଗଲା । ବଉଳୀର କ୍ଷୀର ଉପରେ ଭରସାକରି ବୋଉ ତା' ଭଙ୍ଗା ସଂସାରର ଡଙ୍ଗା ଚଳେଇବାକୁ ଅଣ୍ଟା ଭିଡ଼ିଥିଲା । ବାଡ଼ିପଟର ଚାଖଣ୍ଡେ ବୋଲି ମାଟି । ସେଥିରେ ନିତିଦିନର ଭାତ ସାଙ୍ଗକୁ ଚାଖଣାର ବ୍ୟବସ୍ଥା କରିବା ପାଇଁ ପଟାଳିଏ ଶାଗ ଆଉ ସଜନାଗଛ... । ଚାଳ ଉପରେ କଖାରୁ ଡଙ୍କଟିଏ ମଡ଼େଇଥିଲା । ତେଲ ଲୁଣ ଛାଡ଼ିଦେଲେ ଆଉ କିଛି ସଉଦା ପ୍ରାୟ ଆସୁନଥିଲା ବାହାରୁ ।

ଭାବିଲେ ବିସ୍ମୟ ଲାଗେ, ବୋଉ ସତରେ କିମିତି ଚଳେଇ ପାରୁଥିଲା ତା'ର ନିଃସମ୍ବଳ ସଂସାରକୁ । ଅଧା ଭୋକ ଅଧା ନିଦର ଜୀବନ ସିଏ । ପେଜ ତୋରାଣିକୁ ବି ସାଇତି ରଖୁଥିଲା ବୋଉ ବଉଳୀ ପାଇଁ । ଆମ ପେଟରେ ତ ଦି'ମୁଠା ଭାତ ପଡୁଥିଲା ଯେମିତି ହେଉ, ହେଲେ ବୋଉ କ'ଣ ଖାଉଥିଲା କେଜାଣି । ସେ ତ କେବେ ଦେଖିଥିଲା ଭଳି ମନେପଡୁନି । ଓଃ ! କି କଷ୍ଟର ବେଳ ସିଏ ଭାବି ହୁଏନି । ଭାବିଲେ ଡର ଲାଗେ । କଣ୍ଠରୁଦ୍ଧ ହେଇଯାଏ ଏବେ ବି । ଅଥଚ ସେତେବେଳେ ସେ କିଛି ଭାବି ପାରୁନଥିଲା ।

ମାତ୍ର ଚାରି ଛ' ଦିନର ଜ୍ୱର, ଥଣ୍ଡାକାଶ- ବାପା ଚାଲିଗଲେ । କୁଆଡ଼େ ତାଙ୍କୁ ନିମୋନିଆ ହେଇଥିଲା । ସେତେବେଳକୁ ତା'ର ଷଷ୍ଠ ଶ୍ରେଣୀ । ସୁରେଖା ତୃତୀୟରେ ଏବଂ ଅରୁଭାଇ ଅଷ୍ଟମରେ ଥିଲା । ସଂଚିତ ସମ୍ବଳଗଣ୍ଡାକ ସରି ଆସିବାପରେ, ବୋଉ ବାଧ ହେଇ ଗୋଡ଼ କାଢ଼ିଥିଲା ଦାଣ୍ଡକୁ । ବାପା ଥିଲାବେଳେ କପେ କପେ ଚା' ଖାଉଥିଲା ବୋଉ ବାପାଙ୍କ ସାଙ୍ଗରେ, ସେତକ ବି ଛାଡ଼ିଦେଲା । ଲୁଗାପଟା ପୋଷାକପତ୍ର ତ ଖଣ୍ଡିକରୁ ଦି'ଖଣ୍ଡ ନଥିଲା କାହାର । ପୁରୁଣା ଖଣ୍ଡେ କେବେ କେମିତି ମାଗି ଆଣୁଥିଲା ବୋଉ କୁନ୍ତୀ ଦେଠେଇଙ୍କଠୁ । ମାଗିଯାଚିବା ତ ଜାଣିନଥିଲା ଜୀବନରେ- କୁହେ, "ମାଗିଲା ବେଳକୁ କଣ୍ଠାଗ୍ରତ ହେଇଯାଉଛିରେ ପୁଅ । ଏଇ ଭାଗ୍ୟ ବି ଥିଲା ମୋ' ପାଇଁ ।" ଏବେ ବଡ଼ ହେଲାପରେ, ସେ ବୁଝିପାରୁଛି ବୋଉର ଯନ୍ତ୍ରଣା କୋଉଠି, କେତେ ଗଭୀରରେ । ଦଶହରାକୁ ସିଦ୍ଧ ବଡ଼ବାପା ଅବଶ୍ୟ ନୂଆ ଲୁଗା କରି ଦେଉଥିଲେ ସବୁ କର୍ମଚାରୀଙ୍କୁ ତା' ସହିତ ସେମାନଙ୍କ ପାଇଁ ମଧ୍ୟ ।

ସିଦ୍ଧ ବଡ଼ବାପା ରକ୍ତ ସଂପର୍କୀୟ ନୁହଁନ୍ତି । ଆମର ଏଇ ଧରପୁର ଇଲାକାର ମୁଖିଆ । ସରପଞ୍ଚ । ବାପାଙ୍କ ବନ୍ଧୁ । ଭାଇନା ବୋଲି ଡାକୁଥିଲେ ବାପା । ସେଇ ହିସାବରେ ସେ ବଡ଼ବାପା । ଏମିତିରେ ସବୁ ଧନୀବର୍ଗର ମଣିଷ - ନଥିଲା ଗରିବଙ୍କ

Digitized by PPRACHIN, SOA

ବାପା ମା' । ସିଦ୍ଧ ବଡ଼ପା' ମଧ୍ୟ ଗାଁର ସବୁଠୁ ବେଶୀ ଧନୀ ବ୍ୟକ୍ତି । ତାଙ୍କର ବଡ଼ କୋଠା, ବେଶ୍ ଜମିଜମା, ତୋଟା, ପୋଖରୀ, ଚାକରବାକର, କୋଠିଆ, ହଳଶଗଡ଼, ପ୍ରତାପପ୍ରତିପତ୍ତିର ସମସ୍ତ ସାଜସରଞ୍ଜାମ ଭିତରେ ତାଙ୍କର ପ୍ରଭୁପଣ ଝଲସି ଉଠୁଥିଲା ବୋଲି କହିଲେ ଭୁଲ ହେବନି । ସ୍ୱାର୍ଥକୁ ଜଗିରଖି କେମିତି କାମ ଆଦାୟ କରାଯାଏ ତାଙ୍କୁ ବେଶ୍ ଜଣାଥିଲା ।

ଭାବୁ ଭାବୁ ଅବନୀ ଅଟକିଗଲା ମୁହୂର୍ତ୍ତେ ଏବଂ ଭାବିଲା, ବୋଉ ଯଦି ଏବେ ପାଖରେ ଥା'ନ୍ତା ତା' ମନକଥା ଶୁଣି ପାରୁଥା'ନ୍ତା ନା- ତା' ଗାଲରେ ଠୋ' ଠୋ' କରି ଦି' ଚଟକଣି ବଜେଇ ସାରନ୍ତାଣି । କହିଥାନ୍ତା, "ମୋ' ପେଟରେ କିମିତି ଜନ୍ମିଲୁ କେଜାଣି ଅକୃତଜ୍ଞ କୋଉଠିକାର । ତୋ' ବାପା ଆମକୁ ଯିମିତି ଅନାଥ ଅସହାୟ କରି ଛାଡ଼ି ଚାଲିଗଲେ, ଏଇ ସିଦ୍ଧସା'ନ୍ତେ ଥିଲେ ବୋଲି ସିନା ଡଙ୍ଗା ମୋର କୂଳରେ ଲାଗିଲା । ନହେଲେ ତ ମୁଁ ଭାସିଯାଇଥାନ୍ତିରେ ପୁଅ - କୋଉ ବନସ୍ତରେ ପଶିଥାନ୍ତି ତମକୁ ଧରି । ତାଙ୍କରି ଭରସାରେ ସିନା ଅରୁଟା ସହରକୁ ଗଲା ପାଠ ପଢ଼ିବାକୁ, ଅଥଚ ତୁ... ।

ଅବଶ୍ୟ ବ୍ୟକ୍ତିଗତ ଭାବେ ସିଦ୍ଧ ବଡ଼ପା' ଆମ ପାଇଁ ମନ୍ଦ ନଥିଲେ । ହେଲେ ଧରପୁରବାସୀ ଏକଥା କେବେ ସ୍ୱୀକାର କରିବେନି ଯେ ସେ ନିଃସ୍ୱାର୍ଥପର ଥିଲେ । ସେହି ସିଦ୍ଧ ବଡ଼ା'ପାଙ୍କର ଦୁଇଟି ଝିଅ - ରମା ଆଉ ସୀମା । ମଝିରେ ପୁଅ କଳ୍ପତରୁ, ଅରୁଭାଇଠୁ ଛ' ଆଠମାସ କି ବର୍ଷେ ବଡ଼ ହେବେ ।

ବୋଉ ସେଇ ବଡ଼ା'ପାଙ୍କର ଆଶ୍ରା ଲୋଡ଼ିଥିଲା । ତାଙ୍କ ଭଲମନ୍ଦରେ, ରୋଷେଇବାସରେ ସାହାଯ୍ୟ ସହଯୋଗ କରିବାକୁ ଯାଉଥିଲା ପ୍ରତ୍ୟେକ ଦିନ ରାତି ପାହିଲେ । ମାସକୁ ମାସ ଦରମା ଆଣୁନଥିଲା ସିନା, ଆବଶ୍ୟକ ବେଳେ ସାହାଯ୍ୟ କରୁଥିଲେ ସିଦ୍ଧ ବଡ଼ା'ପା । କୁନ୍ତୀ ଦେଠେଇ କିନ୍ତୁ ଭଲ ମଣିଷ ଥିଲେ । ଖୁବ୍ ଭଲ ପାଉଥିଲେ ବୋଉକୁ ବୋଲି ଚଳେଇ ନେଉଥିଲା ବୋଉ ସବୁ କଥାକୁ । ତା'ଛଡ଼ା ମଣିଷ ତ ପରିସ୍ଥିତିର ଦାସ । ମାନ ଅପମାନ ଅପେକ୍ଷା ଜୀବନଟା ବଞ୍ଚିବା ଯେ ମୂଳ କଥା ।

ସେଇ ସମୟମାନଙ୍କରେ ଅନେକ କଷ୍ଟ କରିଛି ବୋଉ । ତା'ର ମନେଅଛି ସବୁ ରାତିରେ କାମସାରି ଘରକୁ ଫେରୁ ଫେରୁ ଡେରି ହେଇଯାଏ ବୋଉର । ଆମେ ତିନି ଭାଇଭଉଣୀ ଡିବିରି ଜାଳି ଅପେକ୍ଷା କରିଥାଉ ତା' ଫେରିବା ବାଟକୁ । ଅରୁଭାଇ ପଢୁଥାଏ । ତା' ଦେଇ କିନ୍ତୁ କିଛି ପାଠ ହୁଏନି, ବହି ପଢ଼ିଥାଏ ଖୋଲା ହେଇ ସେମିତି । ଅରୁଭାଇ ଆଉ ସୁରେଖାକୁ ଭୋକ ଲାଗୁଥାଏ କି ନାହିଁ କେଜାଣି, ତା' ପେଟ କିନ୍ତୁ ଆଉଟୁପାଉଟୁ ହେଇ ଗାଁ ଗାଁ ଡାକୁଥାଏ ଭୋକରେ । ଦିନଟାସାରା ଡିଆଁଡେଇଁ ଖେଳକୁଦ-

Digitized by PPRACHIN, SOA

ସକାଳର ଭାତ ଗଣ୍ଡାକ ହଜମ ହେବାକୁ କେତେ ସମୟ । ଦିନେ ଦିନେ ସୁରେଖା ଚୂଲିରେ ଜାଳଦେଇ ଭାତ ଡେକ୍‌ଚି ବସେଇ ଦେଇଥାଏ । ବୋଉ ଆସିଲେ ଭାତ ଗାଳେ ।

ଦିନେ ବୋଉର ଆସିବା ବେଳ ଗଡ଼ିଗଲା । ଆସିଲାନି ତ । କୁନ୍ତୀ ଦେଠେଣିଙ୍କର ଜ୍ୱର ହେଇଥିଲା ନା କ'ଣ । ଭାତ ହେଇଆସିଥିଲା । ନିହାତି ଗାଳିବାକୁ ହେବ । କିଏ ଗାଳିବ ? ସୁରେଖାଟା ମୋଟେ ଏକୁଟିଆ ପାରିବନି ଜାଣି, ଅରୁଭାଇ ସାହାଯ୍ୟ କରିବାକୁ ଗଲା, ତା' ବି ପ୍ରଥମ କରି, ଆଗରୁ କେବେ ସେ ଗାଳି ନଥିଲା ଭାତ । ଦୁର୍ଭାଗ୍ୟକୁ ସେଦିନ ଦୁହେଁ ବିପଦରେ ପଡ଼ିଲେ । ଦୁହିଁଙ୍କର ହାତପାଦ ପୋଡ଼ି ଯାଇଥିଲା ଗରମ ପେଜରେ ।

ଆହା ! ସୁରେଖାଟା ସେଦିନ ଯାହା ଛଟପଟ ହେଇ କାନ୍ଦିଛି ନା, ସେ ତ ବ୍ୟସ୍ତ ହେଇପଡ଼ିଥିଲା । ବିକଳ ଲାଗୁଥିଲା । ସହି ନପାରି ସେଇ ଅନ୍ଧାର ରାତିରେ ଅରୁଭାଇ ମନା କରୁଥିବା ସତ୍ତ୍ୱେ ଧାଇଁ ଯାଇଥିଲା ବୋଉକୁ ଡାକିଆଣିବା ପାଇଁ ।

ସିଦ୍ଧ ବଡ଼ା'ପାଙ୍କର ଇଚ୍ଛା ନଥିଲା ବୋଉକୁ ଛାଡ଼ିବାକୁ । ରାଗରେ ତମତମ ହେଇ ଦି' ଚାରିପଦ କଟୂକ୍ତି ଶୁଣେଇ ଦେଇଥିଲେ ମଧ୍ୟ, "ନବାବଙ୍କ ପିଲାଏ ତ... ଭାତ ଗାଳି ଶିଖିନାହାନ୍ତି... ।" ତାଙ୍କ ଟୀକାଟିପ୍ପଣୀ ଶୁଣି ବ୍ରହ୍ମ ଜଳିଯାଉଥିଲା ତା'ର । ସଙ୍ଗେ ସଙ୍ଗେ ଉତ୍ତର ବି ସେ ଫେରେଇ ଦେଇଥିଲା । "କାହିଁକି ନ ଯିବ କି ବୋଉ, ବୋଉକୁ ତମେ କିଣି ନେଇଛ କି ? ସେ ତ ଆମ ବୋଉ ।"

ବୋଉ ଉଠିଆସିଥିଲା ତରବର ହେଇ । ତାକୁ ଟାଣି ନେଇଥିଲା ହାତଧରି ବାହାରକୁ । ବଡ଼ମାନଙ୍କୁ ଏମିତି ଜବାବ ଦିଅନ୍ତି ? କାନମୋଡ଼ି ଚଟକଣିଟିଏ ବସେଇଥିଲା । ଏବେ ବି ମନେଅଛି ବୋଉର କାନମୋଡ଼ା । ବୋଉକୁ ସିନା କିଛି କହି ନଥିଲା ସେତେବେଳେ । ହେଲେ ବୁଝେଇପାରି ନଥିଲା ନିଜକୁ । ଫେରିଲା ବାଟରେ ପଚାରିଥିଲା, ତୋତେ କ'ଣ କିଣି ନେଇଛନ୍ତି ସେମାନେ, ତୁ କାହିଁକି ଆସିପାରିବୁନି ? ବୋଉ ଉତ୍ତର ନଦେଇ କଥା ବୁଲେଇଥିଲା ।

ଅବଶ୍ୟ, ସେଦିନ କୁନ୍ତୀ ଦେଠେଣି ବିଛଣାରେ ଛଟପଟ ହେଇ ମଧ୍ୟ କଥାକାଟି କହିଥିଲେ "ଓହୋ ! ଏତେ କଥା କାହିଁକି ଯେ, ଝିଅଟାର ହାତଗୋଡ଼ ପୋଡ଼ିଯାଇଛି । ମା' ହେଇ ସେ ନଯିବ କିମିତି ? ଯାଉ, ମୋର ତ କିଛି ଅସୁବିଧା ହେବନି । ଏଠି ଆହୁରି ଚାରିଟା ମଣିଷ ଅଛନ୍ତି ମୋ'କଥା ବୁଝିବାକୁ । ସମ୍ଭାଳି ନେବିନି ମୁଁ ।"

.... ଅଥଚ ବୋଉ କହୁଛି ସିଦ୍ଧ ବଡ଼ା'ପା ଜଣେ ଦୟାବନ୍ତ ପୁରୁଷ । ହୁଁ ! ଘୃଣା ଆଉ ରାଗରେ ତା' ନାକପୁଡ଼ା ଫୁଲି ଉଠିଥିଲା । ମନକୁ ମନ କହିଲା, ଦୟାର ଅବତାର

Digitized by PPRACHIN, SOA

ତା ଅରୁଭାଇର ଡାହାଣ ହାତ ପାପୁଲି ଆଉ ସୁରେଖାର ବାଁ ପାଦରେ ବଡ଼ ବଡ଼ ଦି'ଟା ଫୋଟକା ହେଇଯାଇଥିଲା । ଭାଇର ପରୀକ୍ଷା ଥାଏ ଆଗରେ । ହାତର ଅବସ୍ଥା ଦେଖି ତା' ମୁହଁ କଳାକାଠ ପଡ଼ିଯାଇଥିଲା । ବୋଉ ତ ମୁଣ୍ଡରେ ହାତଦେଇ ଲଥ୍‌କରି ବସିପଡ଼ିଲା । କେମିତି ପରୀକ୍ଷା ଦେବ ଅରୁ । କେତେ ଆଶା କରିଥିଲି, ଦି' ଅକ୍ଷର ପାଠ ପଢ଼ିଲେ ପିଲାଟା କୂଳରେ ଲାଗିଯିବ । ହେଲେ ପ୍ରଭୁଙ୍କ ଇଚ୍ଛା ଅଲଗା । ମୋ' ସ୍ୱପ୍ନ ସହିତ ବାରମ୍ବାର କାହିଁକି ଏମିତି ଖେଳୁଛନ୍ତି କେଜାଣି... ସେଦିନ ବୋଉ ପୁଣିଥରେ ବୁହେ କାନ୍ଦିଥିଲା ସ୍ୱପ୍ନକୁ ମନେପକେଇ ।

ତାକୁ ଆଶ୍ଚର୍ଯ୍ୟ ଲାଗିଥିଲା ମଧ । ଭାଇର ହାତପୋଡ଼ିବା ସହିତ ବୋଉ ସ୍ୱପ୍ନର ସଂପର୍କ କ'ଣ ଓ କେମିତି । ଆଗରୁ ତ ତା'ର ସ୍ୱପ୍ନ ଭାଙ୍ଗିଯାଇଥିଲା ବୋଲି କାନ୍ଦୁଥିଲା । ପୁଣି କୁଆଡୁ ଆସିଲା ସ୍ୱପ୍ନ । କିଛି ବୁଝିପାରୁ ନଥିଲା ଏ ସ୍ୱପ୍ନ ରହସ୍ୟ । ଦିନେ ପଚାରି ବି ଦେଲା ।

କ'ଣ ଭାବିଲା କେଜାଣି ବୋଉ ତା' ମୁହଁକୁ ଚାହିଁରହିଲା କିଛି ସମୟ । ତା'ପରେ କହିଲା ସତରେ ତୁ ହୁଣ୍ଡାଟାଏ । କିମିତି କ'ଣ ବୁଝେଇବି ତୋତେ । ଆରେ ପୁଅ, ମୋର ଆଉ ସ୍ୱପ୍ନ କ'ଣରେ । ତମେ ଦିହେଁ ହିଁ ତ ମୋର ସ୍ୱପ୍ନ । ମୋର ଆଶା...ବୋଉ ଶୂନ୍ୟକୁ ଚାହିଁଲା । ସେମିତି ଶୂନ୍ୟକୁ ଚାହିଁ କହିଥିଲା, ମୁଁ ଜାଣେ, ଏ ଦୁଃଖ ସବୁଦିନ ରହିବନି । ରାତି ପାହିବ, ସକାଳ ଆଲୁଅ ଦିଶିବରେ ବାପା । ଏବେ ପିଲା ମନରେ କିଛି ସିନା ବୁଝିପାରୁନୁ । ଚଗଲା ହେଉଛୁ । ମନ ଥିରକରି ପାଠ ପଢ଼ିଲେ ବଳେ ବୁଝିବୁ ସବୁ । ସେଦିନ ଜାଣିବୁ ସ୍ୱପ୍ନ ମାନେ କିମିତି ତୋ' ଚାରିପଟେ ଚକାଭଉଁରି କାଟି ଘୂରିବୁଲୁଛନ୍ତି । ମନେ ପକେଇବୁ ମୋତେ... ।

ତଥାପି ସେ ବୁଝିପାରି ନଥିଲା । ରାତି, ଆଲୁଅ, ସ୍ୱପ୍ନଭଳି ଶବ୍ଦମାନେ ତା' ପାଇଁ ବେଶ୍ ରହସ୍ୟମୟ ମନେ ହେଉଥିଲେ ସେଇ ଚପଳ ବୟସରେ । ତା'ଛଡ଼ା ସୁରେଖାକୁ ନେଇ କାହିଁ ବୋଉ ତ କେବେ ସ୍ୱପ୍ନ ଦେଖିଛି ବୋଲି କହୁନଥିଲା । କେବଳ ଗୋଟିଏ କଥା ହିଁ ରେକର୍ଡ଼ ବଜେଇଲା ଭଳି କହୁଥିଲା ତା' ମୁହଁକୁ ଚାହିଁ, "କିଏ ଜାଣେଲୋ ଝିଅ କ'ଣ ତୋ' କପାଳରେ ଅଛି, ମୁଁ ସିନା ଜନ୍ମ ଦେଇଛି ଭାଗ୍ୟ ତ ତୋ' ନିଜର ।" ବାରମ୍ବାର କୁହେ ଏମିତି । ତା' ମଗଜରେ ଏସବୁ କଥା ପଶୁ ନଥିଲା । ଭାବିଲା ବେଳକୁ ଅଡୁଆ ତଡୁଆ ହେଇଯାଉଥିଲା ସବୁ ।

ତେବେ କୁନ୍ତୀ ଦେଠେଇ ଲୋକ ପଠେଇଥିଲେ ଅରୁଭାଇ ଆଉ ସୁରେଖାକୁ ଡାକ୍ତରଖାନା ନେବାପାଇଁ । ସୁରେଖାର ପାଦ ଶୁଖିବାକୁ ଅନେକ ଦିନ ଲାଗିଥିଲା । ଶୁଖିଲା ପରେ ବି ତା' ସୁନ୍ଦର ପାଦରେ ବଡ଼ ଧଳା ଚିହ୍ନଟିଏ ଛଉଭଳି ରହିଯାଇଛି । ବୋଧହୁଏ ପଛ ଦିନର ଯନ୍ତ୍ରଣାକୁ ମନେପକେଇ ଦେବାକୁ ।

Digitized by PPRACHIN, SOA

ଅବନୀ ଭାବନାକୁ ଅଟକେଇ ଲମ୍ବା ନିଃଶ୍ୱାସଟିଏ ନେଲା । ଅନେକ ବେଳୁ ସେ ଆସି ବସିଛି ଏଇ ଖେଳପଡ଼ିଆରେ । ଏଇଟା ତା'ର ନିତିଦିନର ବସିବା ଜାଗା । ମନ ଅସ୍ଥିର ହେଲେ କି ଉଦାସ ଲାଗିଲେ, କୁଆଡ଼େ ନଯାଇ ସେ ଏଠିକି ଚାଲିଆସେ । ଘଣ୍ଟାଏ ଦି' ଘଣ୍ଟା କି ଚାରିଘଣ୍ଟା... ଯେତେ ସମୟ ତା'ର ମନହୁଏ, ବସେ ଚୁପ୍‌ଚାପ୍ । ହାଲୁକା ଲାଗିଲେ ଯାଇ ଘରକୁ ଫେରେ । କିଛି ଦୂରରେ ପଡ଼ିଆ ମଝିରେ ପିଲାଏ ଖେଳୁଥାନ୍ତି ବି । ଅନ୍ୟମନସ୍କ ଭାବେ ଖେଳ ଦେଖେ । ଇଚ୍ଛାହେଲେ ଖେଳେ ମଧ୍ୟ ।

ଖରା ଲିଭିଯାଇଥିଲା । ଜହ୍ନିଫୁଲିଆ ଆଲୁଅ ଚହଟି ଉଠୁଥିଲା ଚାରିଆଡ଼ । ସୁଲୁସୁଲିଆ ପବନ ଦେହମନକୁ ଆଉଁସି ଦେଇ ତାକୁ ଭାବୁକ କରିଦେଲା ସତେକି ଏବଂ ତା' ଭାବନା ଭିନ୍ନ ବାଟରେ ବହିଚାଲିଲା । ଜଣେ ବୟସ୍କ ମଣିଷ ଭଳି ସେ ଭାବିବାକୁ ଲାଗିଲା । ଭାବିଲା, ମଣିଷର ଯେତେସବୁ ଚେଷ୍ଟା ନିଜ ଦୁଃଖ ଯନ୍ତ୍ରଣାକୁ ଲାଘବ କରି ସୁଖରେ ବଞ୍ଚିବ ବୋଲି । ହେଲେ ଦୁଃଖ କ'ଣ କେବେ ପାଖ ଛାଡ଼େ ନା ହାତ ଛାଡ଼େ । ସୁଖ ଅପେକ୍ଷା ଦୁଃଖଟା ବୋଧେ ଭଲ ବନ୍ଧୁ, ଆପଣାର । ସମସ୍ତେ କେବଳ କହିବା ପାଇଁ କୁହନ୍ତି - ସୁଖ କଥା ମନେପକାଅ, ଦମ୍ଭ ଆସିବ ଉତ୍ସାହ ଆସିବ । ବଞ୍ଚିବାକୁ ମନ ହେବ । ମିଛକଥା । ସେମିତି କିଛି ଲାଗେନା ବରଂ ସୁଖଟା ବଡ଼ ସ୍ୱାର୍ଥପର, ଡରୁଆ ଭୀରୁ । ଦୁଃଖକୁ ସାମ୍ନା କରିବାକୁ ସାହସ ନଥାଏ । ବିପଦ ଆସିବ ବୋଲି ଆଗତୁରା ଡରେ । ପିମ୍ପୁଡ଼ି ଗାତ ଖୋଜେ ପଶିବା ପାଇଁ । ଅବନୀ ନିଜକୁ ବୁଝେଇଲା ଯୁକ୍ତି ଦେଇ । ସୁଖ ଅଛି ତ ଦୁଃଖ ଅଛି । ଯେମିତି ଅନ୍ଧାର ଅଛି ବୋଲି ଆଲୁଅ ଅଛି । ଦିହେଁ ସତ । ବରଂ ସୁଖଆନନ୍ଦର ଗହଳି ଭିତରେ ଦୁଃଖଟା କୋଉଠି ଯିମିତି ମୁହଁ ଲୁଚାଦେଇ ଲୁଚି ରହିଥାଏ । ବାଟ ପାଇଲେ ମୁହଁ ଦେଖେଇ ମନପକେଇ ଦିଏ ପୁରୁଣା କଥା, ପୁରୁଣା ଦିନ, ପୁରୁଣା କ୍ଷତ । କେଞ୍ଚିଦେଇ କୁହେ, "ମୁଁ ଅଛି, ହଜିନି, ତୁ ଯେତେ ବାହାନା କରୁଛୁ କର ।" ଠିକ୍ ସୁରେଖା ପାଦର ପୋଡ଼ାଧଳା ଚିହ୍ନ ଭଳି । ଭାରି ଶକ୍ତି ତା'ର । ହେଉପଛେ ମୁହୂର୍ତ୍ତେ । ବସେଇ ଦିଏ ପଥରକରି । ମଣିଷ ସତରେ ସୁଖଲୋଭୀ । ଦୁଃଖକୁ ଡରେ ବୋଲି ଦୁଃଖ ତାକୁ ଡରାଏ । ନହେଲେ ସୁଖଦୁଃଖ ତା' ପାଇଁ ସବୁ ସମାନ ।

ଅବଶ୍ୟ ସୁଖ କହିଲେ, ସେ ବୁଝେ ଗଣ୍ଡେ ଖାଇ ଖଣ୍ଡେ ପିନ୍ଧି ସହଜ ଭାବେ ଜୀବନକୁ ଚଳେଇ ନେବା । ତା'ଠୁ ଅଧିକା ସେ ଜାଣେନା କି ଭାବିପାରେନା । ସେଭଳି କିଛି ସ୍ୱତନ୍ତ୍ର ସୁଖ ଯଦି ଥାଏ, ତା'ର ତ କେବେ ଭେଟ ହେଇନି ତା' ସହିତ ସେ ଜାଣିବ କିମିତି ? ତେବେ ଲୋକେ କହନ୍ତି, ସିଦ୍ଧେଶ୍ୱର ସାମନ୍ତ ଜଣେ ସୁଖୀ ମଣିଷ । ତା'ର ତ ସନ୍ଦେହ ହୁଏ । ଯଦିଓ ସେ ବଡ଼ଲୋକ । ଧନସଂପତ୍ତି, ପ୍ରତାପ ପ୍ରତିପତ୍ତି ସବୁ

Digitized by PPRACHIN, SOA

ଅଛି । ବେଶୀ ଧନ ସଂପତ୍ତି କ'ଣ ମଣିଷକୁ ସୁଖୀ କରାଏ ? ତାକୁ ତ ଲାଗେ ସେ ବେଶୀ ଦୁଃଖୀ । ସବୁବେଳେ ଅସନ୍ତୁଷ୍ଟ ସେ ତା' ବାପାଙ୍କୁ ବି ଦେଖିଛି । କାହିଁ କେବେ ତ ବିଚଳିତ ହେବା ସେ ଦେଖିନି ।

ଅବନୀ ତା' ଭାବନାକୁ ଫେରେଇ ଆଣିଲା ତା' ଅରୁଭାଇ ପାଖକୁ । ଅରୁଭାଇର ହାତଟା ଭଲ ହେଇଆସିଥିଲା ପରୀକ୍ଷାବେଳକୁ । କୌଣସି ମତେ ପରୀକ୍ଷାଟା ଦେଇପାରିଲା । ବୋଉ କିଛିଟା ଆଶ୍ୱସ୍ତ ହେଇଥିଲା । ତା'ସ୍ୱପ୍ନଟା ଥୟ ହେଇଗଲା ବୋଲି ବୋଧେ ।

ଆଉ ଯୋଉଦିନ ମାଟ୍ରିକ ଫଳ ବାହାରିଲା, ନିଜ ନାଁ ପ୍ରଥମଶ୍ରେଣୀ ଥାକରେ ଦେଖି ଅରୁଭାଇ ଆତ୍ମହରା ହେଇ ଧାଇଁଆସି ବୋଉକୁ କୁଣ୍ଢେଇ ଧରି କହିଲା, "ମୋ' ସ୍ୱପ୍ନ ସାର୍ଥକ ହେଇଛି ବୋଉ । ମୁଁ ଆହୁରି ପଢ଼ିପାରିବି । ମୋତେ ସ୍କଲର୍‌ଶିପ୍ ମିଳିବ । ଦେଖିବୁ ବୋଉ, ମୁଁ ଖୁବ୍ ବଡ଼ ଚାକିରି କରିବି । ଅନେକ ପଇସା ରୋଜଗାର କରିବି... ।" ଅରୁଭାଇ ଆଖି ଆନନ୍ଦରେ ଉଜ୍ଜ୍ୱଳ ଦିଶିଥିଲା ।

ସେଦିନ ବି ତାକୁ ଆଶ୍ଚର୍ଯ୍ୟ ଲାଗିଥିଲା । ସେ ଜାଣିନଥିଲା ତ କାହିଁ ଅରୁଭାଇର ବି ସ୍ୱପ୍ନ ଥିଲା ବୋଲି । ବେଶୀ ପଢ଼ିବ, ଚାକିରି କରିବ, ଖୁବ୍ ବେଶୀ ପଇସା ରୋଜଗାର କରିବା ଏଇଟା କ'ଣ ଗୋଟାଏ ସ୍ୱପ୍ନ, ଯା'କୁ ସ୍ୱପ୍ନ କୁହନ୍ତି ? କାହିଁ ତା'ର ତ ସେଭଳି କିଛି କେବେ ମନେହେଇନି । ତେବେ ସେ ଯାହା ହେଉନା କାହିଁକି, ସେଦିନ ଏଇ ସ୍ୱପ୍ନ ଥିଓରିଟା ତାକୁ ଏତେଟା ବ୍ୟତିବ୍ୟସ୍ତ କରିନଥିଲା । କଥାଟାକୁ ସେ ସହଜଭାବେ ନେଇ, ଭୁଲି ଯାଇଥିଲା ।

ସବୁଦିନେ ସେ ଏମିତି ହୁଣ୍ଡାପିଟା, ହୁରୁମା, ବୋକା । କୌଣସି କଥାକୁ କେବେ ଗୁରୁତ୍ୱ ଦେଇ ଭାବିନି । ନିୟମିତ ସ୍କୁଲ ଯାଉଥିଲା । ପାଠ ପଢୁଥିଲାବି । ହେଲେ ମନେରଖି ପାରୁ ନଥିଲା ସିମିତି କିଛି । ସେଥିପାଇଁ ବାପା ଖୁବ୍ ବିରକ୍ତ ହେଉଥିଲେ ତା' ଉପରେ । ବୋଉ କିନ୍ତୁ ବ୍ୟସ୍ତ ହେଉଥିଲା, ହଜାରେ ଠାକୁର ଠାକୁରାଣୀଙ୍କୁ ଡାକୁଥିଲା, "ପିଲାଟାକୁ ମଣିଷ କର ଠାକୁରେ ।" ବାପା ବିରକ୍ତ ହୁଅନ୍ତି । ରାଗରେ ତମତମ ହେଇ କୁହନ୍ତି, "ଦିଅଁ କ'ଣ ତମ ପୁଅ ମୁଣ୍ଡରେ ବୁଦ୍ଧିଜ୍ଞାନ ସବୁ ପୁରେଇଦେବେ ଯେ ତାଙ୍କୁ ଡାକୁଛ । ଏଇଟା ତ ଗଣ୍ଡମୂର୍ଖଟାଏ । କିଛି ହେବନି ଯା' ଦ୍ୱାରା ।" ସତକଥା । କିଛି ହେଇପାରିନି ତା' ଦ୍ୱାରା । କେତେ ମାଡ଼ ଖାଇଛି । କାନଧରି ଠିଆହେଇଛି ଖରାରେ । ଭୁଲ୍ ମାଗିଛି, କ୍ଷମା ଚାହିଁଛି, ଏଇ ପାଠ ନେଇ ତଥାପି କିଛି ଫଳ ହେଇନି । ସ୍କୁଲର ଅନ୍ୟ ଟିଚରମାନଙ୍କର ବି ତା' ପ୍ରତି ଏଇ ଧାରଣା - ସେ ମୂର୍ଖ, ହୁଣ୍ଡାପିଟା । ଆଉ ସବୁ କାମକୁ ଆଗ, ଖେଳକୁଦରେ କେହି ତା' ସମକକ୍ଷ ନୁହେଁ । ହେଲେ ପାଠଘର ଶୂନ ।

Digitized by PPRACHIN, SOA

ସ୍ଥିରହେଇ ଘଣ୍ଟେ ପଢ଼ିବନି ମନଦେଇ । କିଛି ହେବନି ଯା' ଦ୍ୱାରା । ଅରୁଣଟା ହିଁ ନାଁ ରଖିବ ସୁଦାମ ପରିଡ଼ାଙ୍କର ।

ଏମିତି ସମସ୍ତଙ୍କଠୁ ଶୁଣି ଶୁଣି ମନ ଗଉଁଆ ଧରିଯାଇଥିଲା । ଠିକ୍‌ଅଛି ତମ ଅରୁଣଟା ବୁଦ୍ଧିଆ, ନାଁ ରଖୁ । ମୋ' ଦ୍ୱାରା କିନ୍ତୁ ହେବନି ଏ ବିଦ୍ୟା- କୁହେ ମନକୁ ମନ । ସତରେ କିନ୍ତୁ ଅରୁଭାଇ ଖୁବ୍ ଭଲ ପଢୁଥିଲା । ଅକ୍ଷରଗୁଡ଼ାକ ତା'ର ଖୁବ୍ ସୁନ୍ଦର । ଗୁଣ ବି ସେମିତି । ଶାନ୍ତ ଶିଷ୍ଟ ସ୍ୱଭାବ । ଦିନ ରାତି ବହିଖାତା ଭିତରେ ବୁଡ଼ି ରହିଥିବ । ସାଙ୍ଗସାଥୀଟି ତାର ସିମିତି କିଛି ନଥିଲେ । ଖେଳରେ ତ ମନ ନଥାଏ ତା'ର । ଖାଲି ବହିଖାତା ପାଠ । ପୁସ୍ତକ କୀଟ । ଭାଇ ବୋଲି କ'ଣ ମନଖୁସିରେ କେବେ ତା' ସହିତ କଥାବାର୍ତ୍ତା, ମଜାଗପ କରେ; ନା; ଭଲ ପଢ଼େ ବୋଲି ତା'ର ଟିକିଏ ଗଉଁ । ସମସ୍ତେ ବି ତାକୁ ଭଲପା'ନ୍ତି । ବାପା ତ ତା' ପାଇଁ ବହି, କଲମ, ଛତା, ଜୋତା, ଜାମା କେତେ କ'ଣ ଆଣିଦିଅନ୍ତି ।

ସପ୍ତମ ଶ୍ରେଣୀରେ ସେ ପ୍ରଥମ ହେଇଥିଲା । ସେଥିପାଇଁ ବାପା ତା' ପାଇଁ ଭଲ ହଳେ ଚପଲ କିଣି ଆଣି ଦେଇଥିଲେ । ତା' ମୁଣ୍ଡରେ କିଛି ପଶିନଥିଲା । ହେଲେ ବୋଉ ମନ ବୋଧେ ଘାଣ୍ଟି ହେଇଥିଲା । ରାତିରେ ଖାଇଲାବେଳେ ବାପାଙ୍କୁ ଦଇନି ହେଲା ଭଳି କହିଥିଲା, ଅରୁ ପାଇଁ ତ ଆଣିଲ, ଭଲ କଲ । ଅବନୀଟା ପାଇଁ ଆଣିଦେଲନି ହଳେ ।

ବାପା ନାକଫୁଲେଇ ମୁହଁ ବୁଲେଇ ଦେଇଥିଲେ । ଭାତଗୁଣ୍ଡା ପାଟିକୁ ନେଉ ନେଉ କହିଲେ, "ଯୋଉ ତ ଗୁଣବନ୍ତ ପୁତ୍ର ତମର, ଛତା ଜୋତା ହିଁ ବାକି ଥିଲା ବାବୁ ହେବାପାଇଁ । ନିଜକୁ ଆଗ ଯୋଗ୍ୟ କରୁ ଏସବୁ ପାଇଁ..." ଲମ୍ବା ନିଃଶ୍ୱାସଟିଏ ନେଇ କହିଥିଲେ, "ତା' ଭାଗ୍ୟରେ କିଛି ନାହିଁ ଅରୁ ବୋଉ, ଅଯଥା ଆଶା କରନି ।"

ବାପାଙ୍କ କଥାର ଗୁରୁତ୍ୱ ସେ ବୁଝିପାରି ନଥିଲେ ବି କିଛି ଗୋଟାଏ ଖଟ୍‌କା ଲାଗିଥିଲା ମନରେ । ଅନୁଭବ କରିପାରିଥିଲା ଯେ, ବାପା ତାକୁ ମୋଟେ ଭଲପାଉ ନାହାନ୍ତି । ସେ ଭଲ ପଢ଼େନି ବୋଲି । ତା' ପ୍ରତି ଭଲ ନଜର ନାହିଁ । ସେ ଖାଇଲା ନ ଖାଇଲା, ତା'ର ଜାମାପୋଷାକ ଅଛି କି ନାହିଁ । ତା'ର କ'ଣ ମନ ହେଉଛି କିଛି ଯାଏ ଆସେନା ତାଙ୍କର । ଅଛି ତ ଅଛି । କେବଳ ଶାସନ ପାଠ ନ ପଢ଼ିଲେ ମାଡ଼ । ବାସ୍ । ପରୀକ୍ଷାରେ ପାଶ୍ ନକଲେ ମୋତେ ମୁହଁ ଦେଖେଇବୁନି । ସବୁ କଥାରେ ତ ଭାଇ ସାଙ୍ଗେ ତୁଳନା । ତାକୁ ଭୟ ଲାଗେ ବାପାଙ୍କ ସାମ୍ନାକୁ ଯିବାକୁ ଭାବେ, କାହିଁକି ସେ ଜନ୍ମ ହେଉଥିଲା କେଜାଣି ।

ଭୟ ଲାଗେ, ଫେଲ୍ ହେଇଗଲେ ଯଦି ବାପା ତାକୁ ଘରୁ ତଡ଼ିଦେବେ ସତକୁ

Digitized by PPRACHIN, SOA

ସତ । ବାପାଙ୍କ ରାଗକୁ ସେ ଚିହ୍ନେ । ବୋଉ ବି ତାକୁ ରକ୍ଷା କରିପାରିବନି । ଅରୁଭାଇ ଭଳି ସେ କେବେ ହେଇପାରିବନି । ପାଠ ତ ମନେରଖିପାରୁନି ମୋଟେ ।

କାହିଁକି କେଜାଣି, ସେଦିନ ପ୍ରଥମକରି ବାପାଙ୍କ ପାଇଁ ତା' ମନ ବିଦ୍ରୋହ କରିଉଠିଥିଲା । ଭାରି ଅପମାନିତ ମନେ ହେଇଥିଲା । ସେ କେତେ ଉଣା ଅରୁଭାଇଠୁ, ଏମିତିକି ସୁରେଖାଠୁ ବି । ଗୋଟେ କିମ୍ଭୂତ ଉଣାପଣର କୁମ୍ଭୀର ତା' ଗୋଡ଼ହାତ ତଣ୍ଟିକୁ ପୁଳା ପୁଳା କରି କାମୁଡ଼ି ଝୁଣି ପକେଇଲା ସତେକି । ମନଟା ବିରସ ହେଇଗଲା । ବୋଉ ଆଖିରେ ପଡ଼ିଥିଲା ତା'ର ଗୁମ୍‌ସୁମ୍ ଚେହେରା । ପଚାରିଲା, "ଦିହ ଭଲଲାଗୁନି କିରେ, ଏମତି ଶୁଖିଲାଟା ଦିଶୁଛି କାହିଁକି ମୁହଁ ।" ବୋଉଟା ଅନ୍ତର୍ଯ୍ୟାମୀ ସତରେ କିଛି ଲୁଚେନି ତା' ଆଖିରେ । ସେ ତାକୁ କିଛି ନାହିଁ ସେମିତି, ଠିକ୍‌ଅଛି ସବୁ କହି ଚୁପ୍‌ଚାପ୍ ଖାଇ ଉଠିଯାଇଥିଲା ବହିବସ୍ତାନି ଧରି ସ୍କୁଲକୁ । ଖାଇବା ଛୁଟିରେ ଘରକୁ ଯାଇନଥିଲା । ସ୍କୁଲଛୁଟି ହେଲାପରେ ବି ଘରକୁ ଫେରିବାକୁ ଇଚ୍ଛା ହେଲାନି କି ଖେଳଆଡ଼େ ମନ ଗଲାନି । ମନଟା ସତରେ ଓଜନିଆ ହେଇଯାଇଥିଲା । ଯିମିତି କିଏ ମାଡ଼ିବସିଛି ।

ସେଦିନ ବି ଏଇଠି ଏଇ ଜାଗାରେ ବହିବସ୍ତାନି ଧରି ଚୁପ୍‌ଚାପ୍ ବସି ଚାହିଁଥିଲା । ସାଙ୍ଗସାଥୀମାନେ ପଡ଼ିଆ ଭିତରେ ଖେଳୁଥିଲେ । ବେଳେବେଳେ ତା' ନାଁ ଧରି କୁହାଟ ବି ଛାଡୁଥିଲେ "ଆ'ରେ ଅବନୀ, ଖେଳିବୁ, ବସିଛୁ କାହିଁକି ?" ସେ କିନ୍ତୁ ବସିରହିଥିଲା ସେମିତି ।

ସବୁଦିନ ଭଳି ଖେଳିବାକୁ ଆସିଥିବା ସୀମା ଖେଳପଡ଼ିଆ ଭିତରେ ତାକୁ ନ ଦେଖି, ଖୋଜି ଖୋଜି ଆସି ପହଞ୍ଚିଥିଲା ତା' ପାଖରେ । ତାକୁ ଟିକିଏ ଚକିତ ଲାଗିଥିଲା । "ନୂଆ କଥା, ତୁ କିମିତି ଆଜି ଖେଳିବାକୁ ନଯାଇ ସୁନାପିଲା ଭଳି ବସିଛୁକିରେ, ବହିବସ୍ତାନି ଅଛି, ଘରକୁ ଯାଇନୁ କି ?" ପଚାରିଥିଲା ସୀମା ଗାଲରେ ହାତଦେଇ, "କିଛି ହେଇଛି ତୋ'ର ?"

ସେ ପାଟି ନ ଖୋଲି ମୁଣ୍ଡ ହଲେଇ ମନାକଲା "କିଛି ହେଇନି ।"

ସୀମାର ବିଶ୍ୱାସ ହେଇ ନ ଥିଲା । ବସି ପଡ଼ିଲା ତା' ପାଖରେ । "ନିଶ୍ଚୟ କିଛି ଗୋଟାଏ ହେଇଛି । ମୁହଁ କାହିଁକି ଏମିତି ଫୁଲେଇଛୁ ? ସ୍କୁଲ ଯାଇଥିଲୁ ? ମୁଁ ତ କାହିଁ ଦେଖିନି ତୋତେ ।" ଟିକିଏ ଅପେକ୍ଷା କଲା ଉତ୍ତର ପାଇଁ ସୀମା । ପୁଣି କହିଲା, "ଆଜି ଗାଳି ଖାଇଛୁ, ମୋତେ କହିବୁନି, ରାଣ ଅଛି... ।"

ସୀମା । ସିଦ୍ଧ ବଡ଼ା'ପାଙ୍କର ସାନଝିଅ । ବୟସରେ ବି ସାନ । ତଳ କ୍ଲାସରେ ପଢ଼େ । ଭାରି ସ୍ନେହୀ, ବୁଦ୍ଧିମତୀ ବି । ବଡ଼ ଭଉଣୀ ଭଳି ଖୋଳିତାଡ଼ି ପେଟ ଭିତରୁ କଥା ବାହାର କରିନିଏ । ଝିଅମାନେ ବୋଧେ ଏମିତି ବୁଦ୍ଧିଆ, ପୁଅମାନଙ୍କ ତୁଳନାରେ । ସବୁ କଥାରେ ତ ବଡ଼ ବଡ଼ ମନେହୁଅନ୍ତି ।

Digitized by PPRACHIN, SOA

ସେଇ ସଂଜରେ ବି ଜଣେ ପୋଖତ ମଣିଷ ଭଳି ସୀମା ସବୁକଥା ତା'ର ଶୁଣିଥିଲା ଧୈର୍ଯ୍ୟଧରି । ସିଏ ବି କିଛି ଲୁଚାଇ ନଥିଲା । ନିଜ ମନର ଭାବନାକୁ ସ୍ପଷ୍ଟଭାବେ ଖୋଲି ଥୋଇ ଥିଲା ସୀମା ଆଗରେ ।

ତା' ମନର ଭାବନା ସଂକ୍ରମିତ ହେଇ ସୀମା ମନକୁ ବି କିଛିଟା ଓଜନିଆ ହୁଏତ କରି ଦେଇଥିଲା । ଗମ୍ଭୀର ହେଇ ସୀମା କହିଲା, "ତୁ କାହିଁକି ଏମିତି ମନମୋଟିଆ ହେଉଛୁ । ମନଦେଇ ଟିକେ ପାଠପଢ଼ି ପାରୁନୁ ଅରୁଭାଇ ଭଳି । ସବୁବେଳେ ଫୁଲାଫାଙ୍କିଆ, ଅରଣା ହେଇ ବୁଲୁଛୁ । ଦାଦାଙ୍କ ମନକଷ୍ଟ ହେବନି ? କହିଲେ, କଥା ଧରିବୁ । ଅଭିମାନ କରିବୁ । କିମିତି ହେବ କହ ।" କିଶୋରୀ ସୀମା ବ୍ୟସ୍ତ ହେଇପଡ଼ିଲା କିଶୋର ଅବନୀ ପାଇଁ । ମୁହୂର୍ତ୍ତେ ନିରବ ରହି ତା' ହାତଧରି ଉଠେଇଲା, "ହଉ ହେଲା ଚାଲ ଏବେ ଘରକୁ ସଂଜ ହେଇଆସିଲାଣି । ଉଠ୍ ଏଥର... ବହୁତ ହେଇଗଲା ଅଭିମାନ ।" ଶାସନ କଲା ଢଙ୍ଗରେ ତା' ବହିବସ୍ତାନି ନିଜେ ଧରି ଉଠିଲା ସୀମା ଯିବାପାଇଁ । "ଖୁଡୀ ଅପେକ୍ଷା କରିଥିବେ ବ୍ୟସ୍ତ ହେଇ । ତାଙ୍କ କଥା ଟିକେ ଭାବ । ମୁହଁ ଶୁଖିଗଲାଣି । ଭୋକ ଲାଗୁଛି ନା ? ଫ୍ରକ୍ ପକେଟରୁ ଦି'ଟା ଖୁରୁମାଗଜା କାଢ଼ି ବଢ଼େଇଦେଲା ତା' ହାତକୁ... ଖାଇଦେ, ମୁଣ୍ଡ ଥଣ୍ଡା ହେଇଯିବ ଏତେ ଜିଦ୍ କିନ୍ତୁ ତୋ'ର ଭଲ ନୁହେଁ ।"

ସୀମା ! ତା' ପାଇଁ ଆଞ୍ଜୁଳିଏ ସଜ ବଉଳଫୁଲ । ମହକୁଥିବ ତା' ଚେତନାରେ ମହମହ ହେଇ ଚିରଦିନ । ସତେ ଯେମିତି ଅବନୀ ବଉଳର ବାସ୍ନାକୁ ଗଭୀର ଭାବେ ଆଘ୍ରାଣ କରିବାକୁ ଲାଗିଲା ।

ବିଚିତ୍ର ଝିଅ ସୀମା । ତା'ପାଖରେ ସେ କିଛି ବି ଲୁଚେଇ ପାରେନା । ଅନ୍ୟ ସାଙ୍ଗସାଥୀ, ଏମିତିକି ବୋଉ ଆଗରେ ବି ଯାହା ଖୋଲି କହିପାରେନା । ସୀମା ଆଗରେ ସେ ସବୁ କହି ହେଇଯାଏ ଅକ୍ଲେଶରେ । କିଏ ତାକୁ ବୁଝୁ କି ନ ବୁଝୁ, ସୀମା ତାକୁ ଠିକ୍ ବୁଝେ । ଛୁଇଁପାରେ ତା'ର ଦରଦକୁ । ତା'ର ପଦୁଟିଏ କଅଁଳ କଥା, ମନର ଘାଉଲା ଜାଗାକୁ ଆଉଁଶି ଦିଏ, ତାକୁ ତ ଲାଗେ ସେମିତି । ଖାଲି ସେତିକି ନୁହେଁ, ଶାସନ ବି କରେ ଠିକ୍ ବୋଉ ଭଳି ।

ସୀମା ଚାହିଁଥିଲା, ତାକୁ ସ୍ୱପ୍ନ ଦେଖେଇବାକୁ, ସ୍ୱପ୍ନ ପାଖକୁ ନେଇଯିବାକୁ । ସ୍ୱପ୍ନ ସହିତ ପରିଚୟ କରେଇ ଦେବାକୁ । କହୁଥିଲା ବି, ତମେ ଅରୁଭାଇ ଭଳି ଟିକେ ସ୍ଥିର ଭାବେ ମନଲଗେଇ ପଢ଼ିପାରନ୍ତନି । ଏମିତି କୋଉ କଥାଟା ଅସମ୍ଭବ ଏଇ ପୃଥିବୀରେ କହିଲ । ନିଜ ଉପରେ ତମର ବିଶ୍ୱାସ ନାହିଁ । ଥରେ ପାଦ ଉଠେଇ ଦେଖ, ସେ ପାଦ ମାଟି ଛୁଉଁଛି କି ନାହିଁ । ସହରକୁ ଯାଇ ବଡ଼ କଲେଜରେ ପଢ଼ିବା ସେଭଳି କିଛି

Digitized by PPRACHIN, SOA

ଅସମ୍ଭବ ନୁହଁ । ଅରୁଭାଇ ତ ପୁଣି ପଢୁଛନ୍ତି... ତମେ ଚାହିଁଲେ ହେଲା । ଥରେ ବିଦ୍ୟାକୁ ଆପଣାର କଲେ... କହିବ କହିବ ବୋଲି ସୀମା କଥା ଶେଷ କରିପାରେନା । ପହୁଁଚେଇ ପାରେନା ଅବନୀକୁ ସ୍ୱପ୍ନ ପାଖରେ ।

ତା'ର ଧୈର୍ଯ୍ୟ ବି ନଥାଏ ପୁରା କଥା ଶୁଣିବା ପାଇଁ । ବିରକ୍ତ ହେଇ କୁହେ, ତା'ପରେ ଆଉ କ'ଣ ବେଶୀ ପାଠ, ବଡ଼ ଚାକିରି, ବହୁତ ଟଙ୍କା, ବଡ଼ କୋଠା, ବଡ଼ ମଣିଷ- ସବୁ ବଡ଼, ଏଇୟା ତ ? ବୋଉ ବି ତ ଏଇୟା ଚାହୁଁଛି । ଆଗରୁ ବାପା ବି ଚାହୁଥିଲେ । "କେବଳ ତମେ ଚାହୁଁନା ଏଗୁଡ଼ା ଖରାପ କଥା ତ... ।" ସୀମା ବ୍ୟଞ୍ଜନା କରେ । ସବୁ ବାପା ମା', ଆପଣାର ମଣିଷ ଚାହାନ୍ତି ତାଙ୍କ ପିଲାଏ ଭଲ ମଣିଷ ହୁଅନ୍ତୁ । ଭଲରେ ରୁହନ୍ତୁ । ଖୁସୀ ରୁହନ୍ତୁ । ନାଁ ହେଉ । ଦଶଜଣ ଆଙ୍ଗୁଠି ଦେଖେଇ କୁହନ୍ତୁ ଇଏ ଅମୁକ ଲୋକର ପୁଅ । ନଜିର ଦିଅନ୍ତୁ... କହିଲାବେଳେ ସୀମାର ଆଖି ଦି'ଟା ମାୟାରେ ଭରି ଉଠେ, ଉଛୁଳି ଉଠେ ହୃଦୟ ।

ହେଲେ ଗଣ୍ଡମୂର୍ଖ ଅବନୀ ପରିଡ଼ା ମୁଣ୍ଡରେ କିଛି ପଶେନା । କିଶୋରୀ ସୀମାର ସ୍ୱପ୍ନ ପାଖରେ ସେ ଧରା ଦିଏନା । ଓଲଟି କୁହେ, ତୁ କ'ଣ ଜାଣିନୁ, ମୋ' ଦେଇ ଏଇସବୁ ପାଠବିଦ୍ୟା ସମ୍ଭବ ନୁହେଁ । ଅରୁଭାଇ ଭଳି ମୁଁ ଆକାଶ ଛୁଇଁ ପାରିବିନି । ଆକାଶ ମୋ' ପାଇଁ ଅନେକ ଦୂର, ଅନେକ ଉଚ୍ଚ, ମୋ' ଆଖି ପାଏନା । ସୀମା ମୁହଁ ଶୁଖିଯାଏ, ଅବୁଝା ହୁଣ୍ଡା ଅବନୀର କଥାର ଝାଞ୍ଜିରେ ।

ତା' ସ୍ୱପ୍ନ ମିଳେଇଯାଏ, ଆକାଶର ଶୂନ୍ୟତା ଭିତରେ ।

ସେ ମାଟ୍ରିକ ପଢ଼ିଲା ବେଳକୁ ସୀମା ଶାଢ଼ି ପିନ୍ଧି ବଡ଼ ମଣିଷ ଭଳି ଦିଶୁଥିଲା । ଆଉ ଖେଳିବାକୁ ଆସୁନଥିଲା । ବାହାରକୁ ବି ବାହାରୁ ନଥିଲା ବେଶି । ଖୁବ୍ କମ୍ ଦେଖା ହେଉଥିଲା । ଦେଖାହେଲେ ବି କିମିତି ମାପିଚୁପି କଥା କହୁଥିଲା । ପିଲାଦିନର ଚପଳତା ମୋଟେ ନ ଥିଲା । କେମିତି ବଦଳିଗଲା ସେ ହଠାତ୍ । ଅବଶ୍ୟ ଦିନେ ଦିନେ ସୁରେଖା ସାଙ୍ଗରେ ଦେଖା କରିବାକୁ ଆସେ ଘରକୁ । ହେଲେ ଏତେ ଗପେନା ପ୍ରଗଲ୍ଭ ହେଇ ।

ତା' ମାଟ୍ରିକ ବର୍ଷ ରମାଅପାର ବାହାଘର ହେଇଥିଲା ପାଖ ଗାଁରେ । ଆଉ ସିଏ, କଷ୍ଟେମଷ୍ଟେ ମାଟ୍ରିକଟା ପାଶ୍ କରି ଗାଁ କଲେଜରେ ନାଁ ଲେଖେଇଥିଲା । ତାହା ବି ଅରୁଭାଇ ନିହାତି ବାଧ୍ୟ କଲା ବୋଲି - ନ ହେଲେ ତ ତା'ର ଇଚ୍ଛା ନ ଥିଲା । ପଢ଼ିବାକୁ । ଅବନୀ ଭାବିଲା, ସେ ପଢ଼ି ନ ଥିଲେ ବୋଧେ ଭଲ ହେଇଥାନ୍ତା । ଅନ୍ତତଃ ଜନ୍ମମାଟିର ପାଣିପବନରେ ମୁକ୍ତ ଜୀବନର ସ୍ୱାଦ ଚାଖି, ଶାନ୍ତିରେ ଶୋଇପାରୁଥାନ୍ତା ତ କୋଡ଼ି-କୋଦାଳ, ମାଟି ସହିତ ଏକାତ୍ମ ହେଇ ଆଉ ଦଶଟାଙ୍କ ଭଳି ବଞ୍ଚି ପାରିଥାନ୍ତା । କୁଆଡ଼ର ହେଲାନି ସେ ।

Digitized by PPRACHIN, SOA

ସୁଧୀର, ଅନନ୍ତ, ଧରଣୀ ଆଉ ଦିନବନ୍ଧୁ ସହିତ ସେଇ କଲେଜରେ ଦେଖାସାକ୍ଷାତ ଓ ବନ୍ଧୁତା । ଏଇ ବନ୍ଧୁତା ହିଁ ତା' ଜୀବନର ମୋଡ଼କୁ ବଦଳେଇ ଦେଲା । ରାସ୍ତା ବଦଳିଗଲା । ସୁଧୀର ନାଁ ଲେଖେଇଥିଲା କଲେଜରେ । ହେଲେ ଅନ୍ତ, ଧରଣୀ, ଦିନୁଙ୍କର ପାଠ ସହିତ ସଂପର୍କ ନ ଥିଲା । କେବଳ ଗପ, ଫୁର୍ତ୍ତି, ହଇଚଇ ହୋହଲ୍ଲା କରିବାକୁ ସେମାନେ ନିତି ସଂଗରେ ଆସନ୍ତି ସୁଧୀର ପାଖକୁ । ତା'ଛଡ଼ା ସୁଧୀର ସେତେବେଳେ ବିରାଜ ଚଂପତିର ଦଳରେ ସାମିଲ ଥିଲା । ଦିନୁ, ଅନ୍ତ, ଧରଣୀ ବି ଯାଉଥିଲେ ବିରାଜ ଶିବିରକୁ ।

ବିରାଜ ଚଂପତି ଗୋଟାଏ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଗଢ଼ିଥିଲା । ତା'ରି ମାଧ୍ୟମରେ ଅଶିକ୍ଷିତ, ଅକର୍ମଣ୍ୟ, ଗରିବ, ଅସହାୟଙ୍କୁ ସାହାଯ୍ୟ ସହଯୋଗର ହାତ ବଢ଼େଇ ସେମାନଙ୍କ ପାଇଁ ଥଇଥାନର ବ୍ୟବସ୍ଥା କରୁଛି ବୋଲି, ଧରଣୀ ତାକୁ କହିଥିଲା । ସେ ଆହୁରି ବି ତାକୁ କହିଥିଲା ଯେ, "ଇଚ୍ଛାକଲେ ତୁ ବି ଆମ ସହିତ ଯୋଗ ଦେଇପାରୁ । ଏକାଠି କାମ କଲେ ଭଲ ଲାଗିବ, ଉତ୍ସାହ ଆସିବ । ପଢ଼ା ସହିତ ତା'ର କୌଣସି ସଂପର୍କ ନାହିଁ । ବିରାଜଭାଇ ବି କହିଛି - ଜନଗଣର ସେବା କରିବା ପାଇଁ ଶିକ୍ଷିତ ଉତ୍ସାହୀ ଯୁବକଙ୍କର ଆବଶ୍ୟକତା ରହିଛି । ସେମାନଙ୍କର ସଂଗ୍ରାମୀ ମନୋବୃତ୍ତି, ବୈପ୍ଳବିକ ଚିନ୍ତା ଆମ ପାର୍ଟିକୁ ମଜଭୁତ୍ କରିବ । ଏଥିରେ ଶିକ୍ଷିତ ମଧ୍ୟବିତ୍ତମାନେ ସିଧାସଳଖ ପ୍ରଭାବିତ ହେବେ । ଆମର ସଭ୍ୟସଂଖ୍ୟା ବଢ଼ିବ । ତାକୁ ଚାହିଁ ନେଟ୍‌ୱାର୍କ ବଢ଼ିବ - କାମ ଭଲ ହେବ ।"

ସୁଧୀର କୁହେ, ଜାଣିଛୁ ଅବନୀ, କଲିକତାରୁ ବଡ଼ ବଡ଼ ନେତା ଆସନ୍ତି କ୍ୟାମ୍ପକୁ । କେତେ ପ୍ରକାର ଆଲୋଚନା ହୁଏ । ବିରାଜ ଚଂପତିର ମୁଣ୍ଡରେ ମସଲା ଅଛି, ମାନିବାକୁ ପଡ଼ିବ - ନୂଆ କଥା, ନୂଆ ବିଚାର, ନୂଆ ଚିନ୍ତା, ନୂଆ ଯୋଜନା, ଆମ ପାଇଁ ତ ସବୁ ନୂଆ । ଆମେ କ'ଣ ଏସବୁ ଜାଣୁଥିଲୁ କି ? ତୁ ବି ଚାଲ, ଦିନେ ତୋତେ ନେଇଯିବି ବିରାଜଭାଇ କ୍ୟାମ୍ପକୁ । ବେଶ୍ ଭଲ ଲାଗିବ ତୋତେ । କେତେ କଥା ଶୁଣିବୁ, ଦେଖିବୁ, ଜାଣିବୁ... ଏମିତି କେତେ ପାଠ ପଢ଼ାନ୍ତି ସୁଧୀର ଅନ୍ତ, ଧରଣୀ, ଦିନୁ ହେରିକା ଘଣ୍ଟା ଘଣ୍ଟା ବସି ତା' ପାଖରେ ।

ତା' ମୁଣ୍ଡରେ କିନ୍ତୁ ଏସବୁ କଥା ପଶେନି କେବେ । କୌଣସି କଥାକୁ ତ ସେ ଗୁରୁତ୍ୱ ଦେଇ ଭାବୁ ନଥିଲା । ପାର୍ଟି, ପଲିଟିକ୍ସରେ ତା'ର କୌଣସି ଆଗ୍ରହ କି ରୁଚି ମଧ୍ୟ ନଥିଲା । କେବଳ ସାଙ୍ଗସାଥୀଙ୍କ ସହିତ ଏକାଠି ବସି, ସମୟ କଟେଇବା କଥା ହିଁ ଭାବୁଥିଲା । ଯେହେତୁ ସେମାନଙ୍କ ଗହଣରେ ବସୁଥିଲା, ଚଳ-ପ୍ରଚଳ ହେଉଥିଲା, ଶୁଣୁଥିଲା ଚାରିକଥା ସେମାନଙ୍କଠୁ, ଅନ୍ୟମନସ୍କ ଭାବେ, ଦେଖୁଥିଲା ବି, ସେମାନେ

Digitized by PPRACHIN, SOA

କିମିତି କୋଉ ଉପାୟରେ ରୋଜଗାର ବି କରୁଛନ୍ତି ଚାରି ପଇସା । ଭଲ ପୋଷାକପତ୍ର ପିନ୍ଧୁଛନ୍ତି, ଖିଆପିଆ ଫୂର୍ତ୍ତି କରୁଛନ୍ତି ଦିନେ ଦିନେ ତାକୁ ନେଇ ହୋଟେଲରେ ଖୁଆଉଛନ୍ତି । ସିନେମା ଦେଖାଉଛନ୍ତି ।

ତାକୁ ଚକିତ ଲାଗୁଥିଲା । କିମିତି ହେଉଛି ଏସବୁ । ପ୍ରଶ୍ନବାଚୀ ଓ ସଂଶୟ ଦୋଳାରେ ଝୁଲୁଝୁଲୁ, ଏମିତି କଟିଗଲା ଯୋଡ଼ାଏ ବର୍ଷ । ପ୍ଲସ୍‌ଟୁଟା ପାଶ କରିବା ପାଇଁ ତାକୁ ଦି' ଦି' ଥର ପରୀକ୍ଷାରେ ବସିବାକୁ ପଡ଼ିଥିଲା - ତା' ବି ସେଇ ଅରୁଭାଇର ଜିଦ୍‌ରେ । ଆଉ ବେଶୀ ପାଠ ତା'ର ଦରକାର ନ ଥିଲା । ତା' ଦେଇ ବି ହେବନି ।

ଅରୁଭାଇ କିନ୍ତୁ ସହରରେ ରହି କମ୍ପିଟେଟିଭ ପାଇଁ ନିଜକୁ ପ୍ରସ୍ତୁତ କରୁଥିଲା । ସଞ୍ଜ ସକାଳେ ଟ୍ୟୁସନ କରି ନିଜ ଖର୍ଚ୍ଚ କୌଣସି ମତେ ଗୋଗାଡ଼ କରୁଥିଲା । ଆର୍ଥିକ ଦୁରବସ୍ଥା ଯୋଗୁଁ, ତା'ର ସ୍ୱପ୍ନ ସାକାର ହେଇପାରିଲାନି ବୋଲି ଦୁଃଖ ବି ଥିଲା ତା'ର । ସେ ଇଞ୍ଜିନିୟର ହେବାକୁ ଚାହୁଁଥିଲା । ବାପାଙ୍କର ବି ଇଚ୍ଛା ଥିଲା । ହୋଇପାରିଲାନି ।

ସୁରେଖାର ଭାଗ୍ୟ ଆଉ କିମିତି ଉଜ୍ୱଳି ଉଠନ୍ତା । ଭଲ ପଢୁଥିଲା ଝିଅଟା । ମାଟ୍ରିକ୍ ପର୍ଯ୍ୟନ୍ତ ଉଠିଗଲା କୌଣସି ମତେ । ମାଟ୍ରିକ ପରୀକ୍ଷା ବେଳକୁ ପରୀକ୍ଷା ଫି ଯୋଗାଡ଼ ହେଇପାରିଲାନି । ସେଇଠି ଡୋରବନ୍ଧା ହେଲା ତା' ପାଠପଢ଼ାର । ଥିଲା ଘର ହେଇଥିଲେ, ବାହାଘର ପାଇଁ ଚେଷ୍ଟା କରାଯାଇଥାନ୍ତା । ବୟସ ତ ହେଇଥିଲା ହେଲେ ସାହସ କରିପାରି ନ ଥିଲା ବୋଉ । ଅତ୍ୟଧିକ ପରିଶ୍ରମ ଓ ଖଟଣି ଯୋଗୁଁ ସ୍ୱାସ୍ଥ୍ୟ ଭାଙ୍ଗିଯାଉଥିଲା । ତା' ସାଙ୍ଗକୁ ଚିନ୍ତା - ଶ୍ୱାସରୋଗରେ ଧଇଁସଇଁ ହେଇଯାଉଥିଲା ବିଚାରୀ ।

ଯଦିଓ ସିଦ୍ଧ ବଡ଼ା'ପା ବୋଉକୁ ବାରମ୍ବାର ଉସୁକାଉଥିଲେ ଯେ, ଘରଟା ତାଙ୍କ ପାଖରେ ବନ୍ଧକ ରଖି ଝିଅ ବୋଝଟା ଉଠେଇ ଦେଉ । କେତେ ଦିନ ଭୁଆସୁଣୀ ଝିଅକୁ ବେଳରେ ବାନ୍ଧି ରଖିବ । ତୁ ବରପାତ୍ର ଖୋଜ, ମୁଁ ଦେବି ଟଙ୍କା । ତଥାପି ବୋଉ ସାହସ କରି ନ ଥିଲା । ତା' ମନରେ କ'ଣ ଥିଲା କେଜାଣି କେବେ ଖୋଲି କହୁ ନ ଥିଲା ବି । କିମିତି ବି କହିଥା'ନ୍ତା । କାହା ଭରସାରେ ? ଅବନୀ ଭାବିଲା, ସବୁଦିନେ ତ ସେ ଅଯୋଗ୍ୟ, ଅପଦାର୍ଥଟିଏ । କୋଉ କାମକୁ ଯୋଗ୍ୟ ନୁହେଁ, ତା' ଉପରେ କେହି ବି ଭରସା କରିପାରିବେନି । ବୋଉ ଆଉ କିମିତି କରନ୍ତା । ସିଧାସଳଖ କିଛି ନ କହି, କେବଳ ଭାଗ୍ୟକୁ ନିନ୍ଦା କରେ । କାନ୍ଥବାଡ଼କୁ ଶୁଣାଇ ପଦେ ଅଧେ କୁହେ, ଦି' ଦି'ଟା ପୁଅ ଘରେ ଥାଉଣୁ ଅଧାଦିନ ଚୁଲି ଜଳୁନି । ଭୁଆସୁଣୀ ଝିଅ ଦାଣ ଦୁଆରକୁ ଗୋଡ଼ କାଢ଼ିପାରୁନି, ଭଲ ଲୁଗା ଖଣ୍ଡେ ନାହିଁ ବୋଲି । ଭାଗ୍ୟ ଏମିତି ଯେ, ଦିହଟା ବି ବାଦ ସାଧୁଛି । ଚାରିପାଇଟି କରିପାରୁନି କୋଉଠିକି ଯାଇ... । ଘରେ ପଶିଲେ ତାକୁ

Digitized by PPRACHIN, SOA

ଅଣନିଃଶ୍ୱାସୀ ଲାଗେ । ଭଲ ଲାଗେନି ଶୁଣିବାକୁ ଏତେ କଥା । କିନ୍ତୁ ଉପାୟ କ'ଣ, ଶୁଣେ ସବୁ ପାଟି ବନ୍ଦ କରି । ଅରୁଭାଇ ତ ଘରେ ନଥାଏ, ସେ ଶୁଣେନା ବୋଉର କ୍ଷୋଭ, ଦୁଃଖ ।

ବେଶୀ ସମୟ ଘରେ ବସିରହିଲେ ବିରକ୍ତ ଲାଗେ । ସାଙ୍ଗସାଥୀମାନେ ଯେଝା ବାଟରେ ଲାଗିଯାଇଥିଲେ । ଗୁଡ଼ି ଉଡ଼େଇବା କି କଙ୍କି ଧରିବା ବୟସ ତ ଆଉ ନଥିଲା । ଖେଳକୁଦ, ଗଛଚଢ଼ା, ନଈପହଁରାର ସମୟ ବି ଅତିକ୍ରାନ୍ତ କରିଯାଇଥିଲା । କ'ଣ କରିବ-କିଛି ଗୋଟାଏ ତ କରି ପକେଇବାକୁ ମନ । ବାହାର ଦୁନିଆଟାକୁ ଚାହିଁଲେ ଆବାକାବା ଲାଗୁଥିଲା । ଆଖି ପାଉନଥିଲା । କୋଉ ଡାଳକୁ ହାତ ପାଉନଥିଲା, ଡାଳ ହିଁ ତ ଆଖିରେ ପଡୁନଥିଲା କେମିତିକା ଗୋଟିଏ ସନ୍ଧିକ୍ଷଣ, ଭୟଙ୍କର ସଂକଟର ସାମ୍ନା କରିଥିଲା ସେ । ଖୁବ୍ ଏକୁଟିଆ, ଅସହାୟ ଲାଗିଥିଲା ତାକୁ ।

ସେତିକିବେଳକୁ ସୀମା ହିଁ ତାକୁ ବୁଦ୍ଧି ବତେଇଥିଲା, "କିଛି ଗୋଟାଏ କର ଅବନୀ । ବସି ରହିଲେ ଏମିତି ମନ ଅଶାନ୍ତ ହେବ । ହତାଶ ଲାଗିବ । ଯେକୌଣସି କାମ ହେଉ, କେତେ ବାଟ ପଡ଼ିଛି । କାମ କରିବାରେ ତ ଲାଜ ନାହିଁ । ପଢ଼ା ଚାଲିଥିଲେ, ଚିନ୍ତା ନ ଥିଲା । ବି.ଏ.ଟା ପାଶ୍ କରିଯାଇଥିଲେ ଚାକିରି ଖଣ୍ଡେ ତ ଭଲରେ ମିଳିପାରିଥା'ନ୍ତା । ନହେଲା ନାହିଁ । ଏମିତି ଖାମଖିଆଲି ଭାବେ କେତେ ଦିନ ଚାଲିବ । ପାରିବିନି ଭାବିଲେ ତ କିଛି କରିପାରିବନି । ତା'ଛଡ଼ା ଖୁଡ଼ୀଙ୍କର କ'ଣ ଆଉ ବୟସ ଅଛି ଖଟିବାକୁ ? ତମର ତ ପୁଣି କିଛି ଦାୟିତ୍ୱ ଅଛି ସେମାନଙ୍କ ପାଇଁ... ।" ସୀମାକୁ ତ ସେ କିଛି ଜବାବ ଦେଇପାରେନା । ମୁଣ୍ଡ ଭିତରଟା ଫାଙ୍କା ଲାଗେ । ଖରା ନଇଁଲେ ଚୁପ୍‌ଚାପ୍ ଆସି ଖେଳପଡ଼ିଆର ଗୋଟାଏ କୋଣରେ ବସି ଭାବେ... ଅନେକ କଥା... କେତେବେଳେ ହତାଶ ଲାଗେ ତ କେତେବେଳେ ଶୂନ୍ୟ, ଉଦାସ ଲାଗେ । ପୁଣି ଭାବେ, ସୀମା ସତ କହୁଛି । କିଛି ଗୋଟାଏ କାମରେ ଲାଗିଲେ ବୋଧେ ଏଇ ଉଦାସ ଭାବ କଟିଯିବ, ଭଲ ଲାଗିବ । ସୀମା ଠିକ୍ ମନେପକେଇ ଦେଇଛି । ବୋଉ କି ସୁରେଖା ପାଇଁ ନହେଲେ ବି ନିଜ ପାଇଁ ତ କିଛି ଦାୟିତ୍ୱ ଅଛି । ସବୁ କଥାକୁ କେତେ ଚାହିଁରହିବ ବୋଉ ମୁହଁକୁ । ବିଚାରୀ ବୋଉ ବି... ସେଇ ମୁହୂର୍ତ୍ତରେ ତା'ର ମନେହେଉଥିଲା ଉଚ୍ଚକୂଳରେ ଗରିବ ହେଇ ଜନ୍ମ ହେବାଠୁ ବଳି ଯନ୍ତ୍ରଣା ଆଉ କିଛି ନାହିଁ । ଇଚ୍ଛାକଲେ ବି କୋଉ ଚାକିରିଟିଏ ମିଳିଯିବ ? ଏଡ଼େ ଦୁର୍ଭାଗ୍ୟ ଯେ ତା'ର, ସଂରକ୍ଷଣ ବାଟରେ ମଧ୍ୟ କାଣିଚାଏ ସୁବିଧା ତାକୁ ଜୁଟିବନି ।

ଶୂନ୍ୟଦୃଷ୍ଟି ନେଇ ଆକାଶକୁ ଚାହେଁ ସୁଦାମ ମାଷ୍ଟ୍ରଙ୍କ ସାନପୁଅ ଅବନୀ ପରିଡ଼ା । ଆଖିପାଏନା - କେଡ଼େ ଉଚ୍ଚ ଏଇ ଆକାଶ । ସେ କେବେ ବି ଛୁଇଁପାରିବନି, ଅରୁଭାଇ

Digitized by PPRACHIN, SOA

ହୁଏତ ପାରିବ, ତା'ର ଧୈର୍ଯ୍ୟ ଅଛି ସାହସ ଅଛି । ତାକୁ ହତାଶ ଲାଗେ ଭାବୁ ଭାବୁ, ଆଖି ତଳକୁ ନଇଁଆସେ ।

ଆଉ ରହିଲା ବୋଉର ସ୍ୱପ୍ନ । ତାକୁ ନେଇ ଯଦି ବୋଉ କିଛି ସ୍ୱପ୍ନ ଦେଖିଥିବ ସେ ତ ଜାଣିନି । ଜାଣିଲେ ବି କୋଉ ସାକାର କରିପାରିବ ଯେ । ସ୍ୱପ୍ନକୁ ବାସ୍ତବ ରୂପ ଦେବାପାଇଁ ଯୋଉ କୌଶଳର ଆବଶ୍ୟକତା ରହିଛି, ତାକୁ ତ ସେ ସବୁ ଜଣାନାହିଁ । ନିଜ ପାଇଁ ତେଣୁ ତା'ର କିଛି ସ୍ୱପ୍ନ ନାହିଁ । ବାପା ଠିକ୍ କହୁଥିଲେ । ତା' ଭାଗ୍ୟରେ ସେଭଳି କିଛି ଆଖିଦୂରୁଶିଆ ଚମତ୍କାର ଘଟିବନି । ପିଲାଦିନୁ ସମସ୍ତିଙ୍କ ପାଟିରୁ ଏକଥା ଶୁଣି ଶୁଣି ନିଜ ଭିତରେ କିମିତି ଅନାସ୍ଥା ଭାବ ବସିଯାଇଛି ପଦ୍ମାସନ ପକେଇ, ଚେଷ୍ଟାକରି ମଧ କାଢ଼ି ତାକୁ ଫୋପାଡ଼ି ପାରୁନି ସେ ।

"ଏଇ ଅବନୀ... ଅବନୀ କିରେ... ଅବନୀ..."

ହଠାତ୍ କାହାର ଡାକରେ ତା' ଭାବନା ଛିଣ୍ଡି ଯାଇଥିଲା । ନିଦରୁ ଉଠିଲା ଭଳି ଝାଡ଼ିଝୁଡ଼ି ହେଇ ଉଠିପଡ଼ିଲା ତା'ର ଅଛିଣ୍ଡା ଚେତନା । ଆଗ ପଛକୁ ଚାହିଁଲା, ଖେଳପଡ଼ିଆ ଶୂନ୍‌ଶାନ୍ ହେଇଯାଇଥିଲା । ଦୂରରେ ତାଳପତ୍ର ମେଲେଇ ଠିଆ ହେଇଥିଲେ କେଇଟା ଆମ୍ବଗଛ । ସଞ୍ଜ ଆଉ ନଥିଲା । ଅନ୍ଧାର ଆବୋରି ବସିଥିଲା ଚାରିଆଡ଼ । ପଡ଼ିଆ ସେ ପାଖକୁ ରାସ୍ତା । ରାସ୍ତା ଶେଷମୁଣ୍ଡରେ ଲାଇଟପୋଷ୍ଟ । ଆଲୁଅ ଜଳିଲାଣି । ରକ୍ତହୀନ ରୋଗୀଭଳି ନିଷ୍ପ୍ରଭ ଦିଶୁଥିଲା ଖୁଣ୍ଟ ଉପରେ ଆଲୁଅଟା । ଗାଁମାନଙ୍କରେ ଏମିତି ହିଁ ଆଲୁଅ ଜଳେ ।

ସେଇ ଲାଇଟ୍‌ପୋଷ୍ଟ ତଳେ ମୋଟର ବାଇକ୍‌କୁ ଆଉଜି ଠିଆ ହୋଇଛି କିଏ ଜଣେ... ସ୍ପଷ୍ଟ ଦିଶୁ ନଥିଲା ମୁହଁ... କେବଳ ଅନୁମାନ ଲଗେଇ ହେଉଥିଲା, ବଡ଼ିବିଲ୍‌ଡ଼ର ବିରାଜଚଂପତିର ବଳିଷ୍ଠ ପରିପୁଷ୍ଟ ଚେହେରା ତା' ଆଖି ଆଗରେ ନାଚିଗଲା... ସେଇ ବୋଧେ, ତା'ରି ଭଳି ତ ଦିଶୁଛି ।

ହାତଠାରି ଡାକୁଥିଲା ଲୋକଟା ।

ସନ୍ଦିଗ୍ଧ ମନରେ ଟାଳ୍ ଟାଳ୍ ହେଇ ଉଠିଯାଇଥିଲା ସେ ବସିବା ଜାଗାରୁ ବାଧ ଛାତ୍ରଟିଏ ଭଳି । କ'ଣ ଆଉ କରିପାରିଥାନ୍ତା, ଭାବିପାରି ନଥିଲା ସେତେବେଳେ । ନଯାଇ ଉପାୟ ବା କ'ଣ ଥିଲା ।

ସଂଧ୍ୟାର ସେଇ ମଳିଛିଆ ଅନ୍ଧାର ଭିତରେ ଠିଆହେଇ ବିରାଜ ଚଂପତି ଅନେକ ବାଟରେ ତାକୁ ବୁଝେଇଥିଲା ଅନେକ ସମୟ ଧରି । ବଡ଼ ହେବାର ମନ୍ତ୍ର ଫୁଙ୍କି ଥିଲା ।

Digitized by PPRACHIN, SOA

ପରିଚୟ ଗଢ଼ିବାର ବାଟ ଦେଖେଇଥିଲା । ରୋଜଗାରର ଲୋଭ ବି ଦେଖେଇଥିଲା - "ତୋ' ଭଳି ଯୁବକର ହିଁ ଆବଶ୍ୟକତା ଅଛି ଆମ ପାର୍ଟିରେ । ତୁ କ'ଣ ଚାହୁଁଛୁ ଏ ଦେଶଟା ଆମର ଉଜୁଡ଼ି ଯାଉ । ସର୍ବହରାଙ୍କ ସଂଖ୍ୟା ବଢ଼ୁ । ଭୋକ ଉପାସରେ, ପୋକମାଛି ଭଳି ମରନ୍ତୁ ସମସ୍ତେ । ଆମର କ'ଣ କିଛି କର୍ତ୍ତବ୍ୟ ନାହିଁ ସେମାନଙ୍କ ପାଇଁ ? ପକେଟରୁ ସିଗାରେଟ୍ କାଢ଼ି ଲାଇଟର ମାରିଲା ବିରାଜ । ଚିକ୍‌ମିକ୍ କରୁ କରୁ ଆଲୁଅ ଜଳିଉଠିଲା ଲାଇଟରରେ । ନିଆଁ ଧରେଇଲା ବିରାଜ ସିଗାରେଟ୍‌ରେ । ଚାହିଁଥିଲା ଅବନୀ ଏକା ଲୟରେ... ବିରାଜ ବି ବୃହତ୍ତର କର୍ତ୍ତବ୍ୟର କଥା କହୁଛି । ସୀମା ବି କହୁଥିଲା ବ୍ୟକ୍ତିଗତ କର୍ତ୍ତବ୍ୟର କଥା... ଲାଇଟର ଲିଭିଲା, ଦି' ଚାରି ପୁଳା ଧୂଆଁ ଶୋଷି ଛାଡୁ ଛାଡୁ ବିରାଜ ପୁଣି କଥାର କ୍ରମ ଧରିଲା... ଜାଣିଛୁ ଅବନୀ, ଏଇ ଲୋକଙ୍କ ପାଇଁ ପିଇବାକୁ ସଫା ପାଣି ଟିକେ ନାହିଁ । ରୋଗ ପାଇଁ ଔଷଧ ନାହିଁ, ଡାକ୍ତରଖାନା ନାହିଁ, ଧାଇଁଯିବାକୁ ରାସ୍ତାଘାଟ ନାହିଁ, ପିଲାଏ ପାଠ ପଢ଼ିବାକୁ ସ୍କୁଲଟିଏ ନାହିଁ । ଅଶିକ୍ଷା, ଦାରିଦ୍ର୍ୟର ଭଉଁରି ଭିତରେ ପେଶିହେଇ ଯାଉଛି ମଣିଷ । କ'ଣ ନା ଆମେ ସ୍ୱାଧୀନ... ଦେଶ ସ୍ୱାଧୀନ... ଥୁଃ... ଥୁଃ... ପାଟିରୁ ମେଞ୍ଚାଏ ପାନଶିଠା କାଢ଼ି ଫୋପାଡ଼ିଲା ବିରାଜ ।

ଚକିତ ହେଇ ଚାହିଁଥିଲା ସେ... ବିଶ୍ୱାସ-ଅବିଶ୍ୱାସର ଦୋଛକିରେ ଠିଆହେଇ ସିଗାରେଟ୍ ଧୂଆଁର କୁହେଳି ଭିତରେ ଧୂଆଁଳିଆ ଦିଶୁଥିଲା ବିରାଜର ମୁହଁ । ବିରାଜ ଭିତରେ ଏତେ ଦେଶପ୍ରେମ... ଭୋକିଲାଙ୍କ ପାଇଁ ଏତେ ଦରଦ !

ବିରାଜ କିନ୍ତୁ କହି ଚାଲିଥିଲା- "ମୋ' ଛାତି ଫାଟିଯାଉଛିରେ ଅବନୀ, ସେମାନଙ୍କ ଦୟନୀୟ ଅବସ୍ଥା ଦେଖିଲେ । ମୁଁ ପଣ କରିଛି ଜୀବନ ଥିବାଯାକେ, ଏଇ ସର୍ବହରାଙ୍କ ପାଇଁ କିଛି କରିବି । ମୁଣ୍ଡ ଗୁଞ୍ଜିବାକୁ ଚାଖଣ୍ଡେ ଚାଳ ନାହିଁ କାହାର । ତୁ ଚାଲ ଦିନେ ମୋ' ସହିତ, ଦେଖିବୁ ସେମାନଙ୍କ ଝୁପୁଡ଼ି ବସ୍ତି ।

ବିରାଜ ଚଂପତି ପ୍ରତ୍ୟୟର ଖୁଣ୍ଟ ପୋତିବାକୁ ଚେଷ୍ଟା କରିଥିଲା ତା' ବକ୍ତବ୍ୟ ଭିତରେ । ତାକୁ ଆମନ୍ତ୍ରଣ ଜଣେଇଥିଲା - "ମୁଁ ଚାହୁଁଛି ତମମାନଙ୍କ ଭଳି ଉତ୍ସାହୀ ଯୁବକମାନେ ଆଗେଇ ଆସିଲେ ମୋ' ସ୍ୱପ୍ନ ଅଧୁରା ରହିବନି । ତୁ କ'ଣ ଭାବୁଛୁ ? ମୋତେ ମୋ' ପାର୍ଟିକୁ ସାହାଯ୍ୟ କରିବୁନି ? ପଢ଼ା ତ ବନ୍ଦ କଲୁ... ସମୟ କିମିତି କଟଉଛୁ - ମୁଁ ସିନା ସ୍ୱପ୍ନ ଦେଖୁଛି ହେଲେ ସାକାର କରିବାକୁ ମୋ' ପାଖରେ ଏତେ ବୁଦ୍ଧି କାହିଁ ? ତମମାନଙ୍କ ଉପରେ ତ ମୋର ଭରସା" - ତା' କାନ୍ଧକୁ ଦି' ହାତରେ ଧରି ଝାଙ୍କି ଦେଇଥିଲା ବଡ଼ିବିଲ୍‌ଡ଼ର ସ୍ୱେଚ୍ଛାସେବୀ 'ସେବାକାରୀ ଅନୁଷ୍ଠାନ'ର ମଉଡ଼ମଣି ବିରାଜ ଚଂପତି ।

ସେଇ ଝାଙ୍କର ଜୋରରେ ତା' ଲୟ ଭାଙ୍ଗିଯାଇଥିଲା । ଚମକିପଡ଼ି ହଠାତ୍

Digitized by PPRACHIN, SOA

କହିପକେଇଲା "ମୁଁ କ'ଣ ସାହାଯ୍ୟ କରିବି ଯେ, ମୋ' ପାଖରେ କ'ଣ ଅଛି ସେମିତି । ସେମାନଙ୍କ କଥା ତ ତମେ ବୁଝୁଛ, ସରକାର ବୁଝୁଛନ୍ତି, ନେତା ରାଜନେତାଏ ଅଛନ୍ତି ବୁଝିବାକୁ, ହାତ ବଢ଼େଇ ଠିଆ ହେଇଛନ୍ତି ସାହାଯ୍ୟ କରିବାକୁ । ଅର୍ଥ, କ୍ଷମତା, ଉଭୟ ଅଛି ସେମାନଙ୍କ ପାଖେ । ଆମେ ତ କାଙ୍ଗାଳ... ଆଉ ମୁଁ । ମୋ' ସ୍ଥାନ କୋଉଠି ?" ରୁଚି ନଥିଲା ଭଳି ଦି' ଚାରିପଦ ଏଣୁତେଣୁ କଥା ଫୋପାଡ଼ି ଦେଇଥିଲା ସେ ବିରାଜ ଉପରକୁ, ତା' କବଳରୁ ରକ୍ଷା ପାଇବ ବୋଲି । ହେଲେ ବିରାଜ କି ଛାଡ଼ିବା ଜନ୍ତୁ । ସିଏ ତ ପଣ କରିଥିଲା, ତା'ଉପରେ ବନିଶକଣ୍ଟା ପକେଇବ ବୋଲି, କହିଲା - "ଆରେ ରଖ ତୋ' ନେତା ରାଜନେତାଙ୍କୁ । ସେମାନେ କ'ଣ କରିପକେଇବେ ଅଧିକା । ଦିଅଁ ଖାଇ ତ ଖଟୁଲି ଖାଇସାରିଲେଣି ଏଇ ଷାଠିଏ ବର୍ଷ ଭିତରେ । ନିଜକଥା, ନିଜ ପରିବାରର ସ୍ୱାର୍ଥ ଦେଖୁ ଦେଖୁ ତ ଦିନ ଅଣ୍ଟୁନି କି ଶୋଷ ମେଣ୍ଟୁନି - ଧୋବ ଧଉଳିଆ ସିନା ଦିଶୁଛନ୍ତି, ଭିତରଟା ଖାଲି ଅଙ୍ଗାର କଳା ଛିଃ ଛିଃ ଛିଃ, କହିବାକୁ ଲାଜ ଲାଗୁଛି ଏମାନଙ୍କ କଥା । ଲୋକେ ଖଟିଖାଇବାକୁ ଚାହିଁଲେ ବି ଏମାନେ କାମ ଯୋଗେଇ ପାରୁନାହାନ୍ତି । ଗାଁ ପଦା ହେଇଗଲାଣି ଦାଦନକୁ ଧାଉଁଛନ୍ତି ସମସ୍ତେ । ତୁ କହୁନୁ କ'ଣ ନା, ତୋ' ପାଖରେ କ'ଣ ଅଛି କରିବାକୁ । ଆରେ ତୁ କ'ଣ ନକରି ପାରିବୁ କହ..." ପାନଖିଲେ କଳରେ ପୂରେଇ ବିରାଜ ଚଂପତି ଭରସାର ମୁଣ୍ଡିମାରି କହିଥିଲା, "ଆମ ପାର୍ଟି କାମିକା ମଣିଷ ଚାହୁଁଛି, ଟଙ୍କା ପଇସାର ଅଭାବ ନାହିଁ । ଅନେକ ସାହାଯ୍ୟ ଆସୁଛି, ଆସିବ ମଧ୍ୟ । ଆମର କେବଳ କର୍ମୀ ଆବଶ୍ୟକ । ତୁ ଭାବ... ଏବେ ତୁରନ୍ତ ନହେଲା... ପରେ କହିବୁ ।

ମୋଟରବାଇକ୍‌ରେ ଷ୍ଟାର୍ଟ ମାରିଲା ବିରାଜ । ଗଲାବେଳକୁ ପୁଣି ଥରେ କଥାକୁ ଦୋହରେଇ ଥିଲା । ତା'ହେଲେ ମୁଁ ଅପେକ୍ଷା କରିଛି ତୋତେ । ବିରାଜ ଚାଲିଗଲା । ପବନବେଗରେ ସାଇଁକରି । ସେ ଚାହିଁଥିଲା ଅବାକ୍ ହେଇ । ସତରେ କ'ଣ ଲୋକଟାର ପ୍ରାଣ କାନ୍ଦୁଛି ଦେଶ ଦଶ ପାଇଁ ନା, ସବୁ ଦିଖାଓ୍ୱା ? ମତଲବୀ ବି ହେଇପାରେ । ଏଗୁଡ଼ାକର ତ ଅନେକ ରୂପ । ଛାଡ଼, ଏତେ ଗୁରୁତ୍ୱ ଦେଇ ଭାବିବ ବି କାହିଁକି ସେ । ଗଲା ତ ଗଲା କଥା ସରିଲା ।

ହେଲେ କଥା ସରି ନଥିଲା । ସେ ଭାବିଥିଲା । ଭାବିବ ବୋଲି ନୁହେଁ । ଭାବି ହେଇଯାଉଥିଲା ବୋଲି, ଭାବିଥିଲା । ବିରାଜର କଥାଗୁଡ଼ାକ ନିରୋଳା ସମୟମାନଙ୍କରେ ମୁହଁକାଢ଼ି ଚାହୁଁଥିଲେ । କୌଣସି ନିଷ୍କର୍ଷରେ ପହଞ୍ଚିପାରୁ ନଥିଲା । ଓଲଟି ସଂଶୟ ଭିତରେ ଝୁଲି ପଡୁଥିଲା । ଏମାନେ ପୁଣି ହେବେ ଦେଶସେବକ, ପୁଣି ବିରାଜ ଚଂପତି । ଦାଦାଗିରି କରି ଧମକଚମକ ଦେଇ ଦି' ପଇସା ହାତସଫେଇ କରୁଥିଲା

Digitized by PPRACHIN, SOA

କିଛିଦିନ ଆଗରୁ ବୋଲି ସେ ଶୁଣିଛି । ଏବେ କିମିତି କେଜାଣି, କୋଉ ପାର୍ଟି ନେତାର ଶିରପା ପିନ୍ଧେଇ ଅର୍ଥାଗମର ବାଟ ଫିଟେଇ ଦେଇଛି କି କ'ଣ । ବେକାର ଥିଲାବେଳେ ତ ସଭିଏଁ ସାମ୍ୟବାଦୀ । ବିରାଜ କାହିଁକି ନ ହେବ ? ତା'ଭଳି କିଛି ଯୁବକଙ୍କୁ ସ୍ୱପ୍ନ ଦେଖାଉ ଦେଖାଉ, ନିଜେ ବି ସ୍ୱପ୍ନ ଦେଖୁଥିବ ବଡ଼ ହେବାର, କି ମନ୍ତ୍ରୀ ହେବାର । ଭାରି ଚତୁର ଲୋକଟିଏ । ତା' କାନରେ ମନ୍ତ୍ର ଫୁଙ୍କୁଛି । ଅବନୀ ପରିଡ଼ା କେବେ କାହା କଥାରେ ବସ୍‌ଉଠ ହେଇଥିଲା ଯେ, ହେବ । ଛାଡ଼, ତା'ର ତ ସ୍ୱପ୍ନ ଦେଖିବାର ନାହିଁ । ତା'ଛଡ଼ା ତା' ପାଖରେ ଏମିତି କି ଗୁଣ ଅଛି ଯେ, ତାକୁ ଏତେ ଖୁସାମତ କରୁଛି ।

ସେ ଦିନେ ବନ୍ଧୁ ସୁଧୀରକୁ କହିଥିଲା ମଧ୍ୟ । "ଯା', କହିଦେବୁ ତୋ' ବସ୍‌କୁ, ଅବନୀକୁ କିଏ ସହଜରେ ହାତେଇ ପାରିନି । ସେ କାହାର ନୁହେଁ । ମୋ' ଦ୍ୱାରା ସେ ଦେଶସେବା, ସମାଜସେବା ହେଇପାରିବନି । ମୋ' ଜାଗାରେ ମୁଁ ଠିକ୍ ଅଛି । ଏତେ ଦୟା ଦେଖେଇବନି । ବୁଝିଲୁ... ।"

ମୁଁ ତ ବୁଝିଲି, ହେଲେ ତୁ ଭୋକରେ ମରିବୁ, ବେକାର ହେଇ ବୁଲିବୁ ପଛକେ... ଗର୍ବ ତୋ'ର କିଛି କମ୍ ନୁହେଁ । ସୁଧୀର କଥା ଲେଉଟେଇ ଫେରିଯାଇଥିଲା ।

କିଛି ଦିନ ମୁହଁ ଲୁଚାଦେଇ ଆଡ଼େଇ ହେଇ ରହିଲା ବିରାଜ ଗୋଷ୍ଠୀଠୁଁ । ତା' ସତ୍ତ୍ୱେ ଲୋକଟା ଏଡ଼େ ଜିଦ୍‌ଖୋର ଯେ ଲୋକ ପଠେଇ ଡକେଇ ନେଇଥିଲା ତାକୁ । "ଏମିତି କାହିଁକି ଅବୁଝା ହେଉଛୁ କହିଲୁ ଭାଇ, ମୋ' ଉପରେ ତୋ'ର ବିଶ୍ୱାସ ହେଉନି ନା, ଭରସା ରଖି ପାରୁନୁ ? ଆରେ ଭାଇ, ଏଇଟା ତୋ' ପାଇଁ ଅସଲ ବେଳ, ଲୋକେ ଆମକୁ ଚାହୁଁଛନ୍ତି । ଆମର ଡିମାଣ୍ଡ ଅଛି । ଏଇ ସୁଯୋଗକୁ କିଏ ହାତଛଡ଼ା କରେ । ଏଇ ତ କାମ କରିବାର ବୟସ । ପାଞ୍ଚଜଣଙ୍କ ସହିତ ମିଶିବୁ, ପାଞ୍ଚକଥା ଶିଖିବୁ । କାମରେ ଥରେ ମନ ଲାଗିଗଲେ ଦେଖିବୁ କିମିତି ନିଶା ଉଠେ । ନାଁ କମେଇବା ପାଇଁ ଏଇ ତ ସୁଯୋଗ । ସୁଦାମ ମାଷ୍ଟ୍ରଙ୍କ ପୁଅ ହେଇ ତୁ ଏମିତି ପଛଘୁଞ୍ଚା ଦେଉଛୁ ଭାବିଲେ ମୋତେ ଆଶ୍ଚର୍ଯ୍ୟ ଲାଗୁଛି । ବିରାଜ ପାଟିରେ ବାପାଙ୍କ ପ୍ରଶଂସା ଭଲ ଶୁଭୁଥିଲା । ଖାଲି ସେତିକି ନୁହେଁ ମନଜାଣିଲା ଭଳି ଲୋକଟା କହିଥିଲା, ମୁଁ ଜାଣିଛି ତୁ ଚାକିରି ପଛରେ ଧାଇଁଛୁ । ହେଲେ, ତୁ, କି ଚାକିରିଟାଏ କରିବୁ ? ମାଷ୍ଟ୍ରଟାଏ କି ଗୁମାସ୍ତାଟାଏ ହେଇ ହେଇ କେତେ ରୋଜଗାର କରିବୁ ଯେ ?"

"ରୋଜଗାର, ଟଙ୍କା- ଏସବୁ ମୋ' ପାଇଁ ବଡ଼ କଥା ନୁହେଁ । ତେବେ ପସନ୍ଦ, ଅପସନ୍ଦର କିଛି ମାନେ ନାହିଁ ?"

"କାମ ତ କାମ । ପସନ୍ଦ ଅପସନ୍ଦ ଆଉ କ'ଣ । ଘରେ ବୁଢ଼ୀ ମା' ଖଟୁଥିବ, ଭଉଣୀ ବାହା ନ ହେଇ ଘରେ ବସିଥିବ - ଏଇଟା ତୋ' ଆଖିକୁ ପସନ୍ଦ ଦିଶୁଛି ନା,

Digitized by PPRACHIN, SOA

ଏଠି ଆଉ ତୋ'ର କିଛି କର୍ତ୍ତବ୍ୟ ନାହିଁ ? ସତରେ ତୁ ହୁଣ୍ଡାଟାଏ", ବିରାଜ ମୁହଁ ଫୁଲେଇ କହିଲା, "ଭାଇଟା ପରା, ଆ' ମିଶିକି କାମ କରିବା । ଆଉ ଗୋଟେ କଥା, ଭାବନା ତୁ ମୋତେ ଦୟା କରୁଛୁ କି ମୁଁ ତୋତେ ଦୟା କରୁଛି । ତୋ'ର ଯଦି ଇଚ୍ଛା ହେବନି... ତ ଫେରିଆସିବୁ । କିଏ ତୋତେ ବାନ୍ଧି ରଖିବ ନା କ'ଣ ?"

ସେ ଆଉ ମନା କରିପାରି ନଥିଲା । ବିରାଜ ଚଂପଟି କଥା ଭିତରେ କୋଉଠି ଯିମିତି ବିଶ୍ୱାସର ଗନ୍ଧ ବାରିହେଲା ଭଳି ଲାଗିଥିଲା କି କ'ଣ, ସେ ଭାସି ଯାଇଥିଲା । ଯଦିଓ ସେ ଜାଣିଥିଲା, ଏ ରାସ୍ତାଟା ତାକୁ ସୁହାଇବ ନାହିଁ । ତଥାପି ଭାସିବା ବ୍ୟତୀତ ତା' ପାଖରେ ଚାରା ଆଉ କ'ଣ ଥିଲା ଯେ ?

ପାଠରେ ମନ ଲାଗୁନଥିଲା । ହାତରେ କିଛି କାମ ନଥିଲା । ଅଥଚ କିଛି ଗୋଟାଏ କରି ଦେଖେଇବାକୁ ମନ ଉଚ୍ଛନ୍ନ ହେଉଥିଲା । ବୟସଟା ବି ତ ସେମିତି ଥିଲା, ପାହାଡ଼ ଭାଙ୍ଗି ପାରିବାର, ସମୁଦ୍ରକୁ ଡେଇଁ ପଡ଼ିଲା ଭଳି ବୟସ । ଏଣେ ବୁଢ଼ୀ ବୋଉର ବୟସ ବଢୁଥିଲା । ସୁରେଖାର ଉଦାସିଆ ଶୂନ୍ୟ ଦୃଷ୍ଟି ମନେପକେଇ ଦେଉଥିଲା ଦାୟଦାୟିତ୍ୱ କଥା, ଆଉ ସମୟ ବୋଝ ହେଇ ମାଡ଼ି ପଡୁଥିଲା । ବୁଝିପାରୁଥିଲା ସେ ଘରର ଅଭାବ ଅସୁବିଧା, ଅରୁଭାଇ ଘରକୁ ନ ଚାହିଁ ତା' କେରିୟର ଗଢୁଥିଲା ସହରରେ । ବେକାର ବସି ବସି ଅନ୍ନ ଧ୍ୱଂସ କରିବା ଅପେକ୍ଷା କିଛି ଗୋଟାଏ କରି ସମୟର ସଦୁପଯୋଗ କରିବା ଉଚିତ ହେବ ଭାବି, ବିରାଜ କଥାରେ ଡେଇଁ ପଡ଼ିଲା ସମୁଦ୍ରକୁ । କିଏ ଜାଣେ ଭାସୁ ଭାସୁ ଯଦି କେତେବେଳେ ଲାଗିଯିବ କୋଉ କୂଳରେ, ଛୁଇଁ ପାରିବ ମାଟିକୁ... ସେଇ ବିଶ୍ୱାସରେ ।

ସେତିକିବେଳେ ମନେପଡ଼ିଥିଲା ସୀମା । ସୀମା ମନେପଡ଼ିବା ମାତ୍ରକେ ତା' ଅନ୍ତଃଚେତନାରେ ଚୁପଚାପ୍ ବଉଳ ଫୁଟି, ମହକି ଉଠିଥିଲା ବାସ୍ନାରେ ।

ସୀମା ସହିତ ଅନେକ ଦିନଧରି ଦେଖାହେଇ ନଥିଲା ତା'ର । ସୀମାକୁ ନ ଜଣେଇ ସେ କୌଣସି କାମ କେବେ କରି ନଥିଲା । କିଏ ଜାଣୁ କି ନ ଜାଣୁ, ସୀମା ନିହାତି ଜାଣିବା ଉଚିତ । ତାକୁ ସେ କହିବ । ଏବଂ ଦିନେ ସୁଯୋଗ ଆସି ଧରାଦେଲା ତା' ହାତରେ । ଦିନେ ରାଧାରମଣଙ୍କ ମନ୍ଦିର ବେଢ଼ାରେ ଦେଖା ହେଇଗଲା ସୀମା ସହିତ । ଚକିତ ହେଲା ସୀମା-ପୂଜା ଦେଇ ଫେରୁଥିଲା । କେତେଦିନ ପରେ ମୁହଁ ଦିଶିଲା । କୁଆଡ଼େ ଥିଲ ? ହସ ବିଞ୍ଚି ଠିଆ ହେଇଗଲା ଅବନୀ ଆଗରେ ।

Digitized by PPRACHIN, SOA

"ତୁ ତ ଆଉ ଆମ ଘରଆଡ଼େ ଆସୁନୁ । ତୁ ଆଜିକାଲି ଆମ ପାଇଁ ସାତ ସପନ... ।" ଅବନୀ କଥାରେ ଭରଭରେଇ ଉଠିଲା ସୀମାର ମନ । ନିଜ ଭାବନାକୁ ଲୁଚେଇ ପଚାରିଲା ଦିଅଁ ଦର୍ଶନ ସରିଲାଣି ? "ନା, ମୋର କିଛି କହିବାର ଥିଲା ତୋତେ । ମନେ ମନେ ଖୋଜୁଥିଲି, କାଳେ ମନ୍ଦିର ଆସିଥିବୁ... ।" ମୁଁ ଜାଣେ ଈଶ୍ୱରଙ୍କ ଉପରେ ତମର ବିଶ୍ୱାସ ନାହିଁ ଅଥଚ ତମେ ମନ୍ଦିର ବେଢ଼ାରେ - ମୋର ତ ବିଶ୍ୱାସ ହେଲାନି ପ୍ରଥମେ । ସୀମା ଘୁଞ୍ଚି ଆସିଲା ପାଚେରୀ କଡ଼ ମଧୁମାଳତୀ ଲତା ଉହାଡକୁ । ବିଶେଷ ଭୂମିକା ନକରି ଅବନୀ ସିଧାସଳଖ କଥା ଆରମ୍ଭ କଲା, "ଜାଣେନା ସୀମା ମୋ' କଥାକୁ ତୁ କିଭଳି ଭାବେ ଗ୍ରହଣ କରିବୁ । ଜାଣେନା ମଧ ମୁଁ ଯାହା ଠିକ୍ କରିଛି ସେଇଟା କେତେ ଯଥାର୍ଥ । ତେବେ ଏ ଭିତରେ ମୁଁ ଗୋଟାଏ ନିଷ୍ପତ୍ତି ନେଇଛି । ସୀମା ଉତ୍କଣ୍ଠାର ସହିତ ଚାହିଁଥିଲା ଅବନୀ ମୁହଁକୁ, କି ନିଷ୍ପତ୍ତିଟିଏ ନେଲା ! ଏଇ ଏକବାଗିଆ ହୁଣ୍ଡାପିଟା ମଣିଷଟା ଯେ... । ଢୋକ ଢୋକିଲା ଅବନୀ, ନିଃଶ୍ୱାସ ନେଇ କହିଲା, "ଖାଲି ଖାଲି ବସିବାକୁ ଆଉ ଭଲ ଲାଗୁନି ସୀମା, ଭାବୁଛି କିଛି କାମ କରିବି ଏଥର... ।" ସୀମା, ମୁଣ୍ଡରୁ ଉତ୍କଣ୍ଠାର ପାହାଡ଼ ଲସିଗଲା । ତା' ଭାବ ଗମ୍ଭୀର ମୁହଁରେ ଫୁଟିଉଠିଲା ବିମଳ ଆଭାର ଝଲକ । ଯା'ହଉ ଏତେ ଦିନକେ ମଣିଷ ପରି କଥା କହିଲା ଅବନୀ ପରିଡ଼ା । ପଚାରିଲା ଆଖିରେ ଚାହିଁଲା, ହୁଏତ ଅବାଗିଆ ଅବନୀ ମୁହଁରେ ଆତ୍ମବିଶ୍ୱାସର ପହିଲି କିରଣକୁ ଖୋଜିବାକୁ ଚେଷ୍ଟା କରୁଥିଲା କି କ'ଣ... । ମନକଥା ପଢ଼ିଲା ଭଳି ଅବନୀ କହିଲା "ଚାକିରି ନୁହେଁ ମ... ।"

"ଆଉ... କି କାମ ?" ସୀମା ମୁହଁରେ ପ୍ରଶ୍ନବାଚୀର ଛାଇ ।

"ଭାବିଛି ବିରାଜ ଚଂପତି ସାଥିରେ ମିଶି କାମ କରିବି, ସୋସିଆଲ ୱର୍କ, ଦୁଃସ୍ଥ ମଣିଷଙ୍କ ପାଇଁ ଗୋଟାଏ ସଂଗଠନ ମାଧମରେ କାମ କରୁଛି ବିରାଜ । ଅନେକଥର ଡାକିଲାଣି, ଯାଉନଥିଲି । ଏବେ ଭାବୁଛି ଯିବି, ଯିବା ଉଚିତ ହେବ ।"

ସୀମା ମୁହଁରେ ଉତୁରି ଆସୁଥିବା ଖୁସିର ଝଲକ ମୁହୂର୍ତ୍ତକରେ ମଉଳିଗଲା, ଅବନୀ ମୁହଁରୁ ବିରାଜ ଚଂପତି ନାଁ ଶୁଣୁ ଶୁଣୁ । ଟପ୍ପେ ନିଆଁ ଯେମିତି ତା' ମୁହଁରେ କିଏ ଅଜାଡ଼ି ଦେଲା । ରାଗରେ ତମତମ ହେଇ କହିଲା- "ତମକୁ ଆଉ କେହି ମଣିଷ ଦିଶିଲେନି ନା, ଶେଷରେ ଅମଣିଷଟା ପାଖରେ ଧରାଦେଲ । ସିଏ ପୁଣି ସର୍ବହରା ଦଳିତଙ୍କ ପାଇଁ କାମ କରୁଛି ? ଲଙ୍କାରେ ହରି ଶବ୍ଦ । ତା'ର ଚଉଦ ପୁରୁଷ ସେବା କାହାକୁ କହନ୍ତି ଜାଣିଥିଲେ ଯେ, ସେ ଜାଣିବ । ତମେ ଏମିତି ଅବାଗିଆ ନିଷ୍ପତ୍ତି କେମିତି ନେଲ ଅବନୀ ? ଭାବିଲନି ଥରେ ତମେ କାହା ପୁଅ କାହା ଆଗରେ ଗୋଡ଼ଭାଙ୍ଗି ଠିଆ ହେବାକୁ ଯାଉଛ ?" ସୀମା ଆଖିରୁ ନିଆଁଝୁଲ ଖସିପଡୁଥିଲା ସତେକି ।

Digitized by PPRACHIN, SOA

ଅବନୀ ସ୍ତମ୍ଭୀଭୂତ ହେଇଯାଇଥିଲା ମୁହୂର୍ତ୍ତକ ପାଇଁ । ସୀମାର ଏଇ ଭୟଙ୍କର ରୂପ ସେ ଦେଖି ନଥିଲା କେବେ । ପ୍ରଚଣ୍ଡ ଭାବେ ପ୍ରତିକ୍ରିୟାଶୀଳ ହେଇ ଉଠୁଥିଲା ସୀମା । ମୁହଁ ନାଲିଚା ପଡ଼ିଯାଇଥିଲା । କିଛି କହି ନପାରି ଫଁ ଫଁ ହେଇ ବସିପଡ଼ିଲା ପାଖରେ ପଡ଼ିଥିବା ପଥରଟା ଉପରେ ।

ସେ ବୁଝେଇବାକୁ ଯାଇ କହିଲା, "ଶାନ୍ତ ହ ସୀମା ଅଯଥା ତୁ ଭୁଲ ବୁଝୁଛୁ । ବିରାଜଟା ଏତେ ଅମଣିଷ ନୁହେଁ । ତା' ବାହାର ଚେହେରାଟା ସିନା ରୁକ୍ଷ, ଦୁର୍ଦ୍ଦାନ୍ତ, ନହେଲେ ସେ ଭଲକାମ କରେ । ଅନନ୍ତ, ସୁଧୀର, ଧରଣୀ ହେରିକା ତା' ସହିତ କାମ କରୁଛନ୍ତି । କୌଣସି ଅଭିଯୋଗ ନାହିଁ ସେମାନଙ୍କର । ମୋର ମଧ୍ୟ ପ୍ରଥମେ ସେଭଳି ଧାରଣା ହେଇଥିଲା... ।"

"ତମ ଧାରଣା ମିଛ ନୁହେଁ । ସେ ଅସାମାଜିକଟାଏ । ଆଶାଳୀନ । ତା' ଖାପଚରେ ଥରେ ଯିଏ ପଡ଼ିଛି, ଜାଣ ତା'ର ମୁକ୍ତି ନାହିଁ । ସେ ବହୁରୂପୀ, ସମସ୍ତେ ଜାଣନ୍ତି ସେ ମାଓବାଦୀଙ୍କ ପାଇଁ କାମ କରେ । ସଂଗଠନ କେବଳ ଗୋଟାଏ ବାହାନା ।"

ସୀମା ଉତ୍ତେଜିତ ହେଇ ହଠାତ୍ ତା'ର ହାତ ଦି'ଟାକୁ ଧରିପକେଇ ନେହୁରା ହେଇ ଅନୁରୋଧ କରିଥିଲା ଲୁହ ଡବଡ଼ବ ଆଖିରେ, "ତମେ ଆଉଥରେ ସ୍ଥିର ମନରେ ଚିନ୍ତାକର ଅବନୀ - ନିଷ୍ପତ୍ତି ବଦଳାଅ । ଏ ରାସ୍ତା ଛାଡ଼, ଇଏ ତମର ନୁହେଁ । କାମର ଅଭାବ ହେବନି ତମେ ଚାହିଁଲେ । ନିଜକୁ ବରବାଦ କରିଦିଅନି ଏମିତି । ସେ ଲୋକଟା ଭଲ ନୁହେଁ, ମୁଁ ଜାଣିଛି ।" ସୀମା ବ୍ୟସ୍ତ ହେଇପଡୁଥିଲା କ୍ରମଶଃ... ତା' ନାଲିଚା ପଡ଼ିଆସୁଥିବା ମୁହଁଟା, କିଛି ଗୋଟାଏ ବିପଦ ଆଶଙ୍କାରେ ହଠାତ୍ କଳା ପଡ଼ିଯିବାକୁ ଲାଗିଲା ।

ସୀମାର ଦୟନୀୟଭରା କଥା, ତା' ଭିତରଟାକୁ ମୁହୂର୍ତ୍ତକ ପାଇଁ ଦୋହଲେଇ ଦେଇଥିଲା । ଝିମାଳିଆ ଧରୁଥିଲା ମନ । ଭିତରେ ସଂଶୟ ପୁଣିଥରେ ଉଖାରି ହେଇଯାଉଥିଲା ସତରେ ଲୋକଟା ଅସାମାଜିକ । ସୀମା ତ ମିଛ କହିବନି । ସେ କୋଉଠୁ ଶୁଣିଲା ? ସେ ତାକୁ ବିରାଜଠୁ ନିବର୍ତ୍ତାଇବାକୁ ଏଇ ବାହାନାର ବାଟ ଧରୁନି ତ ? ସେଦିନ, ଏତେ କଥାକୁ ଗଭୀର ଭାବେ ଚିନ୍ତା କରିବା ଅବସ୍ଥାରେ ନଥିଲା ତା' ଜିଦ୍‌ଖୋର ଅସ୍ଥିର ମନ । ଏତେ ପ୍ରଶ୍ନର ଉତ୍ତର ଖୋଜିବା ପାଇଁ ଧୈର୍ଯ୍ୟ ବି ନଥିଲା । ହଠାତ୍ ଭାବିଲା, ମଣିଷ ଯଦି ସବୁବେଳେ ସମସ୍ତଙ୍କୁ ଅବିଶ୍ୱାସର ଆଖିରେ ଚାହିଁବ, ତାକୁ ତ ସବୁ ମଣିଷ ଖରାପ ହିଁ ଲାଗିବେ । ଦୋଷ ହିଁ ଦିଶିବ । ତା'ଛଡ଼ା ସେ ଯେତେବେଳେ ବିରାଜକୁ କଥା ଦେଇସାରିଛି ଯିବ ବୋଲି, ସେ ନିଶ୍ଚୟ ଯିବ । କଥାଦେଇ କଥା ନ ରଖିଲେ ସେ ଆଉ କି ମରଦ ପୁଅ ? କଥା ଭାଙ୍ଗିବା ତା' ଦେଇ ହେବନି ।

Digitized by PPRACHIN, SOA

ସୀମା ହତାଶ ହେଉଥିଲା, ତା'ର ଏ ପ୍ରକାର ନିଷ୍ପତ୍ତିରେ । କିଛି ସମୟ ଗୁମ୍‌ସୁମ୍ ହେଇ ବସି ରହିଥିଲା । ହଠାତ୍ ଉଠି ମୁହଁବୁଲାଇ ଚାଲିଯାଇଥିଲା । ଗଲାବେଳକୁ ମାତ୍ର ମୁହୂର୍ତ୍ତଟିଏ ଅଟକି ଶୂନ୍ୟ ଦୃଷ୍ଟିରେ ଚାହିଁଥିଲା ଆକାଶ ଆଡ଼କୁ । ଦୀର୍ଘଶ୍ୱାସ ପକେଇ କହିଲା, "ତମେ ମୋଟେ କିଛି ନ କରିଥିଲେ, ମୁଁ ବରଂ ଖୁସି ହେଇଥାନ୍ତି ଅବନୀ । ମୋର ଏତେ ଦିନର ବିଶ୍ୱାସକୁ ତମେ ଭାଙ୍ଗିଦେଲ ।" ବାସ୍ ଏତିକି କହି ଫେରିଯାଇଥିଲା ।

ପ୍ରକାଶ୍ୟରେ ସେ କୌଣସି ଉତ୍ତର ଫେରେଇ ନଥିଲା ସୀମାକୁ । କେବଳ ମନେ ମନେ ଉଚ୍ଚାରଣ କରିଥିଲା, 'ତୋ' ବିଶ୍ୱାସକୁ ମୁଁ ଭାଙ୍ଗିବାକୁ ଚାହୁଁନି କି ସେଇ ଉଦ୍ଦେଶ୍ୟ ବି ମୋର ନାହିଁ । ହେଲେ ମୋ' ନିଜ ଉପରେ ଯେ ମୋର ବିଶ୍ୱାସ ନାହିଁ, ସେ କଥା କ'ଣ ତୁ ଜାଣିନୁ ସୀମା । ମୋ'କଥା ହିଁ ମୋର ପୌରୁଷ ।" ସୀମା ମନ୍ଦିର ବେଢ଼ାରୁ ଲୁଚିଗଲା ପର୍ଯ୍ୟନ୍ତ ସେ ଚାହିଁ ରହିଥିଲା ଅପଲକ ଦୃଷ୍ଟିରେ । କାଳେ ଫେରିଚାହିଁବ, ଆଶା ଥିଲା, କାଳେ ଅନୁରୋଧ କରିବ - ଆଉ ଥରେ ଭାବି ଦେଖ ଅବନୀ ଅଥବା ଏଇଟା କ'ଣ ତମର ଶେଷ କଥା - ଯେମିତି ସେ ଆଗରୁ ଅନେକଥର କରିଛି ତା' ଜିଦ୍‌ପଣ ଭାଙ୍ଗିବାକୁ ଭୁଲ୍ ଦେଖେଇ ଦେବାକୁ ସେ ଭାବିଥିଲା, ସୀମା ସେଭଳି କିଛି କରିବ । ନା, ସେ କିଛି ବି କରି ନ ଥିଲା ସେମିତି । ପଛକୁ ନ ଚାହିଁ ଫେରିଗଲା ଯେ ଗଲା ।

ତା' ଜିଦ୍ ମଧ୍ୟ ଆହୁରି ଟାଣ ହେଇ ଦାନା ବାନ୍ଧିଲା । ଠିକ୍ ଅଛି, ଏତେ ଦୋଦୋ ପାଞ୍ଚ ସେ ହେବ କାହିଁକି ? ସେ ପୁରୁଷ, ତା'ର ସାହସ ଅଛି, ଯେକୌଣସି ପରିସ୍ଥିତିକୁ ସାମ୍‌ନା କରିପାରିବ । ଏତେ ଭୟ କାହିଁକି, କୋଉ ବାଘମୁହଁକୁ ଯାଉଛି କି ନା, ଅକାତକାତ ସମୁଦ୍ରକୁ ଡେଇଁ ପଡୁଛି । ସ୍ୱାଧୀନ ଭାବେ କିଛି କରିବ ବୋଲି ତ ଭାବିଛି । ଇଚ୍ଛା ନହେଲେ ଫେରିଆସିବ । ବିରାଜକୁ ଯେତେବେଳେ କଥା ଦେଇଛି କଥା ରଖିବ ନିଶ୍ଚୟ ।

ସେଦିନର ଏଇ ନିଷ୍ପତ୍ତି ନେବା ମୂଳରେ ତା'ର ଜିଦ୍‌ଖୋର ସ୍ୱଭାବ ଏବଂ ହୁଣ୍ଡାପିଟା ଗୁଣ ହିଁ ବେଶୀ ତାକୁ ଉସୁକେଇ ଥିଲା । ନହେଲେ ଏତେ ଆଲୁଅ ଝକମକ ରାସ୍ତା ଥାଉଣୁ ସେ କାହିଁକି ଏଇ ଅନ୍ଧଗଳିକୁ ବାଛିଲା ? ଗଭୀରତା ନ ମାପି ପାଣି ଭିତରକୁ ଡେଇଁପଡ଼ିଲା, ଏକାବେଳକେ । କ'ଣ କେବଳ କଥା ରଖିବ ବୋଲି । ସେ କୋଉ ମହାପୁରୁଷଟେ ଥିଲା ନା, ବିରାଜ ଜଣେ ମହାତ୍ମା ! କଥା ନ ରଖିଥିଲେ କୋଉ ମହାଭାରତ ଅଶୁଦ୍ଧ ହେଇଯାଇଥାନ୍ତା ! ଭାବୁ ଭାବୁ ଅବନୀ ଦୀର୍ଘଶ୍ୱାସ ଛାଡ଼ିଲା । ବୟସର ଦୋଷ, ସଂକଟର ବୟସ । ଦିଗହୀନ ବାଉଳା ବୟସ କିଛି ପ୍ରସ୍ତୁତ ନୁହେଁ ବୁଝିବାକୁ । ଆଖିରେ

Digitized by PPRACHIN, SOA

ଅନ୍ଧପୁଟୁଳି । ଚେତନାର ସବୁ ଦ୍ୱାର ବନ୍ଦ ଏଇ ବୟସରେ । ଅଥଚ ଏଇ ବାଟଦେଇ ତ ସମସ୍ତେ ଗତି କରନ୍ତି, କିଏ ସିଧା ରାସ୍ତା ଧରେ ତ କିଏ ବାଟ ହୁଡ଼େ । ଏଇ ତ ବିଡ଼ମ୍ବନା । ସମୟ କିନ୍ତୁ ଅଟକେନି ।

କଥା ରଖିବାକୁ ସେଦିନ ସଂଧ୍ୟାରେ ବିରାଜ ଚଂପତିର ଅଫିସ୍ ଆଡ଼େ ଚାଲ ଚାଲ ହେଇ ମାଡ଼ି ଯାଇଥିଲା ସେ । ଅଫିସ୍ ସାମ୍ନାସାମ୍ନି ଚା' ଦୋକାନ ଛୋଟମୋଟର ଭିଡ଼ ଲାଗିଥିଲା ସେଠି । ତା'ଭଳି ଅନେକ ଯୁବକ ଅପେକ୍ଷା କରିଥିଲେ ନିଷ୍ଚୟ ।

ଧରଣୀ, ଦୀନା, ଅନନ୍ତ ତାକୁ ଦୂରରୁ ଦେଖି ପକେଇ ସ୍ୱାଗତ କରିବେ ବୋଲି ଚାଲିଆସିଥିଲେ ପାଖକୁ ତା'ର । "ଖୁବ୍ ଭଲ କଲୁରେ ଅବନୀ । ଏଥର ଆମ ଦଳ ଜମିଯିବ ବିରାଜଭାଇ ବି ଦିଲଦାର ମଣିଷ । ମନ ବୁଝି କାମ ଦେବ, ପଇସା ବି ଦେବ ଦେଖିବୁ ।"

ସେମାନଙ୍କ ବନ୍ଧୁତାର ଆଶ୍ଳେଷ ସେଦିନ ଖୁବ୍ ଅନ୍ତରଙ୍ଗ ମନେ ହେଇଥିଲା । ବିରାଜ ନଥିଲା ତା' ଅଫିସରେ କିନ୍ତୁ । ଅଫିସ ଦ୍ୱାର ମୁହଁରେ ଟୁଲ ଉପରେ ବସିଥିବା ପିଲାଟିକୁ ପଚାରିବାରେ ସେ କହିଲା ରାତି ଆଠଟା ପରେ ବାବୁ ପ୍ରାୟ ଆସିଥା'ନ୍ତି । ଅଫିସ ଭିତରକୁ ଟିକିଏ ଆଖି ପକେଇଥିଲା ସେ । କାନ୍ଥରେ ଝୁଲୁଥିଲା, ନେହେରୁ, ଇନ୍ଦିରାଗାନ୍ଧୀ ଏବଂ ରାଜୀବଗାନ୍ଧୀଙ୍କ ଫଟୋଚିତ୍ର ଧାଡ଼ିହେଇ । କାନ୍ଥଘଣ୍ଟା ଟିକ୍‌ଟିକ୍ ହେଇ ସମୟ ଜଣାଉଥିଲା । ଘର ଭିତରେ ବଡ଼ ଟେବୁଲ । ଟେବୁଲ ଚାରିପଟେ ଚାରି ଛ'ଟା ଚଉକି । ମଝି ଚଉକିଟାର ଗଢ଼ଣ ଟିକିଏ ଭିନ୍ନ । ବୋଧେ ବିରାଜ ଚଂପତିର ସିଂହାସନ ସେଇଟା । ଚଉକି ପିଠିରେ ଟାୱେଲ୍ ପଡ଼ିଛି । ଟେବୁଲର ଗୋଟାଏ କଡ଼କୁ ଫୋନ୍ ପେନ୍‌ଷ୍ଟାଣ୍ଡ କଲିଂବେଲ୍ । କିଛି ଆଲୁରୁବାଲୁରୁ ହେଇ କାଗଜପତ୍ର ପେପରୱେଟ ମଡ଼ା ହେଇଥିଲା ।

ମୋଟାମୋଟି ଅଫିସ୍‌ଟାର ଗୋଟାଏ ଭବ୍ୟ ନହେଲେ ବି ଆଖିଦୁରୁଶିଆ ଚେହେରା ଥିଲା । ମଝିରେ ମଝିରେ କଲିଂବେଲର କ୍ରିଂ...କ୍ରିଂ... ଶବ୍ଦ ସହିତ ଛୋଟମୋଟିଆ ଗହଳି । ସବୁ ମିଶି ବିରାଜ ଚଂପତିର ନେତାପଣର ନିଦା ରୂପକୁ ଜାହିର କରୁଥିଲା । ସମସ୍ତେ ଅପେକ୍ଷା କରିଥିଲେ ବିରାଜ ଚଂପତିକୁ ଉତ୍କଣ୍ଠାର ସହିତ, ଘରୁ ବାହାରକୁ ବାହାରୁ ଭିତରକୁ ହେଇ ।

ତା'ର କିନ୍ତୁ ଧୈର୍ଯ୍ୟଚ୍ୟୁତି ଘଟୁଥିଲା ଧୀରେ ଧୀରେ । ଏତେ ଡେରିର ମାନେ କ'ଣ ? ଧରଣୀ ବୁଝେଇ ଦେଇଥିଲା, ନେତାମାନେ ଏମିତି ବିଳମ୍ବ କରନ୍ତି ନିଜର ଗୁରୁତ୍ୱ ଜଣେଇଦେବା ପାଇଁ । ଏତେ ସହଜରେ ସେମାନେ ଲଭ୍ୟ ନୁହଁନ୍ତି । ତା'ଛଡ଼ା ସେମାନଙ୍କର ଦୁନିଆଯାକର କାମ । ସେମାନେ କ'ଣ ତମ ଆମ ଭଳି ହେଇଛନ୍ତି ?

Digitized by PPRACHIN, SOA

ନିର୍ଦ୍ଧାରିତ ସମୟର ଆହୁରି ଅଧଘଣ୍ଟା ବିଳମ୍ବରେ, ବିରାଜ ଚଂପତ୍ତିର ମୋଟର ବାଇକ୍ ଅଫିସ୍ ସାମ୍ନାରେ ବ୍ରେକ୍ ଦେଲା । ତା' ପଛେ ପଛେ ଆହୁରି ଦି'ଟା ମୋଟରସାଇକେଲ ମଧ୍ୟ ବ୍ରେକ୍ ମାରିଲେ । ଅନନ୍ତ ଠାରରେ ଚିହ୍ନେଇ ଦେଲା ଏ ଦୁହେଁ ହେଉଛନ୍ତି ବିରାଜର ଅସଲ ପାଖ ଲୋକ । ଏଇମାନଙ୍କ ଦ୍ୱାରା ହିଁ ସବୁ କାମ ହୁଏ ।

ଗହଳିର ଐକ୍ୟତାନ ମୁହୂର୍ତ୍ତକ ଲାଗି ନିରବି ଗଲା ବସ୍‌ଙ୍କୁ ଯଥାମାନ୍ୟ ଜଣେଇବା ପାଇଁ ଏବଂ ବିରାଜ ସ୍ୱୟଂ ସିଂହାସନରେ ବସୁ ବସୁ ଭିଡ଼ଟା ଏଥର ଟେବୁଲ୍ ଚାରିପଟେ ଘନହେଇ ଜମିଗଲା । ଜଣେ ଦି'ଜଣଙ୍କ ମୁହଁ ଟେବୁଲ ଉପରକୁ ନଇଁପଡ଼ିଲା ମଧ୍ୟ । ଫିସ୍‌ଫିସ୍ କରି କିଛି ଗୋପନୀୟ କଥା ନିଶ୍ଚୟ, ନେତାଙ୍କ କାନରେ ପହୁଁଞ୍ଚେଇ ଦେବା ପାଇଁ ତା' ପଛକୁ ତା' ପଛ ହେଇ ଆଉ କେତେଟା ମୁହଁ ଆଗକୁ ଆସିବା ପାଇଁ ପ୍ରୟାସ କରୁଥିଲେ ।

ପଛେଇ ଠିଆହେଇ କାନ୍ହୁକୁ ଆଉଜି ନିବିଷ୍ଟ ମନରେ ସେ ଲକ୍ଷ୍ୟ କରୁଥିଲା ବିରାଜ ଚଂପତ୍ତିର ଚଉଖୁଣ୍ଟିଆ ବଳିଷ୍ଠ ଚେହେରାକୁ । ଚକିତ ଲାଗୁଥିଲା ତାକୁ ବିରାଜର କାମ କରିବାର ସ୍ୱତନ୍ତ୍ର ଠାଣି ଦେଖି । ସତେ ଯେମିତି ସମୟ ନାହିଁ ତା'ର । ଓଲଟି ସମୟ ଅପେକ୍ଷା କରିଛି ତାକୁ କାକୁସ୍ଥ ହେଇ । ବିଚିତ୍ର । ବିରାଜର ଏଇ ଚେହେରାଟା ସେ କେବେ ଦେଖି ନଥିଲା । ବିରାଜ ଶରୀର ଚର୍ଚ୍ଚା କରୁଥିଲା । ଜୁଡ଼ୋ କରାଟେ ଶିଖୁଥିଲା, କୁସ୍ତି କସରତ କରୁଥିଲା, ସେ ଜାଣିଥିଲା । କିନ୍ତୁ ଏଇ ନେତାପଣକୁ ସେ ଦେଖି ନଥିଲା ବୋଲି କି କ'ଣ ହଠାତ୍ ବିଶ୍ୱାସ କରିପାରୁ ନଥିଲା । ସଂଶୟ ଭିତରେ ଝୁଲିଝୁଲି ଭାବିଥିଲା କେବଳ । ବିରାଜର କୋଉ ଚେହେରାଟା ସତ ? କାହାକୁ ବିଶ୍ୱାସ କରାଯାଇପାରେ ? ଅସ୍ଥିର ଲାଗୁଥିଲା ତାକୁ । ସେ ଅପେକ୍ଷା କରିଥିଲା, କେତେବେଳେ ଲୋକଟାର ନଜର ତା' ଉପରେ ପଡ଼ିବ । ସେ ପର୍ଯ୍ୟନ୍ତ ବିରାଜ ମୁଣ୍ଡପୋତି କାଗଜ କଲମରେ କ'ଣ ସବୁ ଲେଖୁଥିଲା କି ଗାରଉଥିଲା ।

ସେତିକିବେଳକୁ କିଏ ଜଣେ ବିରାଜ କାନରେ କିଛି କହିଲା ବୋଧେ । ତାକୁ ଉତ୍ତର ଦେବାପାଇଁ ମୁହଁ ଉଠେଇ ଚାହିଁଲା, "ନା, ନା, ଏମିତି ଛୋଟ ଛୋଟ କଥା କାନକୁ ନେଲେ ଆମେ ମୋଟେ ଆଗେଇ ପାରିବାନିରେ । ଆମ ଲକ୍ଷ୍ୟ ହେଲା ବସ୍ତିର ଉନ୍ନତି... ଏବଂ ତା'ର ଦୃଷ୍ଟି ହଠାତ୍ ଅବନୀ ଉପରେ ପଡ଼ିଗଲା । କହୁଥିବା କଥାକୁ ପୁରା ନକରି, କଥାର ମୋଡ଼ ବଦଳେଇ ଅବନୀ ଆଡ଼କୁ ଢଳିଲା । ପ୍ରଥମେ ଖୁସିଟାଏ ହେଇଗଲା । ଯେମିତି ବଡ଼ ମାଛଟାଏ ଜାଲରେ ପଡ଼ିଛି... "ଆରେ ଅବନୀ ତୁ ! କେତେବେଳୁ ଆସିଲୁଣି, ମୁଁ ତ ଦେଖିନି ମୋଟେ । ଆ' ପାଖକୁ ଆ' । ବସ୍ ବସ୍ । ଭଲ କଲୁ ଅବନୀ, ଆସିଲୁ ଭଲ ଲାଗିଲା ମୋତେ । ଅବଶ୍ୟ ସେଦିନ ତୁ ମନା କରିଥିଲୁ ।

Digitized by PPRACHIN, SOA

ମୁଁ କିଛି ଖରାପ ଭାବିବିନି । ହେଲେ ଜାଣିଥିଲି ତୁ ନିଶ୍ଚୟ ଆସିବୁ । ତୋ' ଭିତରେ ଗୋଟାଏ ବଡ଼ ମନ ଅଛି ଅନ୍ୟମାନଙ୍କ ପାଇଁ ଭାବିବାକୁ । ଯୁବକ ମନ ତ, ଅଭିମାନ ସରିଲାଣି କି ନାହିଁ ?" ହସିଥିଲା ବିରାଜ, "ତୋ' କଥାକୁ ମୁଁ କ'ଣ ଧରିଛି ନା ମନେରଖିଛି ।"

ଅବନୀ କୌଣସି ଉତ୍ତର ନ ଦେଇ ମୁଣ୍ଡପୋତି ଦେଇଥିଲା ।

"ଏଥର କିନ୍ତୁ ମନା କରିବୁନି ଅବନୀ । ମୁଁ କାମ ଦେବି । ମନା କଲେ ଦୁଃଖ କରିବି । ଆଗକୁ ଆମର ଅନେକ କାମ ଅଛି ।"

ସତରେ ସେ ଆଉ ମନା କରିପାରି ନଥିଲା । କହିବାକୁ ଗଲେ ସେ ଭାସିଗଲା ବିରାଜ କଥାରେ । ଡେଇଁପଡ଼ିଲା ପାଣି ଭିତରକୁ । ନା ପହଁରା ଜାଣିଥିଲା, ନା, ଗଭୀରତା ମାପିଥିଲା । କେବଳ ଭାବିଥିଲା, ଭାସୁ ଭାସୁ ଯଦି କେତେବେଳେ କୂଳକୁ ଛୁଇଁବ, ମାଟି ଉପରେ ପାଦ ଥାପିବ । ହେଲେ ସେ ମାଟି ଆଉ ଛୁଇଁ ପାରିଲା କୋଉଠି ? ସେଦିନରୁ ଆଜିଯାଏ... ସେ ତ କେବଳ ଭାସିଚାଲିଛି । ଭାସୁ ଭାସୁ କେବଠୁଁ ଯେ ଚିହ୍ନାଜଣା କୂଳ ଛାଡ଼ି ସାରିଲାଣି । ଏବେ ତ ଦିଗନ୍ତ ଦିଶୁନି ଆଉ । ଆଲୁଅର ସୁରାକ ନାହିଁ ଆଉ । ମଝି ଦରିଆ । ଅକାତକାତ ପାଣି । ପାଣିର ଭଉଁରି ଗଣ୍ଡ ଆଡ଼କୁ ମୁହାଁଇଛି । ଜାଣୁଛି, ଆଉ ଦିଶିବନି ଜନପଦ । ମୁଣ୍ଡ ବି ଟେକି ପାରୁନି ନିଃଶ୍ୱାସ ନେବାକୁ । କିଏ ଯେମିତି ଟାଣୁଛି ତା' ଗୋଡ଼ ଦି'ଟାକୁ । ଟାଣି ଧରିଛି ତଳୁ । ଏମିତିକି ବିରାଜ ଚଂପତିର ମୁହଁ ବି ଦିଶୁନି । କେବଳ ତା' କଥା ଶୁଭୁଛି- "ଭାସିଚାଲ ନିର୍ଭୟରେ । ଭୟ ପାଇଲେ କି ଜନତାର ସେବା କରିହୁଏ ବାପ.... ଆମେ ପରା ଜନତା ଜନାର୍ଦ୍ଦନର ସେବକ । ନିଜକଥା ନ ଭାବି ଜୀବନକୁ ପାଣି ଛଡ଼େଇ ଦେବା... ଭୁଲିଗଲୁ କି ତୁ ସେଦିନର ଶପଥ..." ବିରାଜ ହସୁଛି କୂଳରେ ବସି । ହସ ତ ନୁହେଁ, ଅଟ୍ଟହାସ୍ୟ । ଓଃ । କି କଟୁ । କାନ ବନ୍ଦକରି ଦେବାକୁ ମନ ହେଉଥିଲା ଅବନୀର । ହେଲେ ଦି' ହାତକୁ ସେ ଯେ ଟେକି ଦେଇଛି ସମର୍ପଣ ଭଙ୍ଗୀରେ ଉପରକୁ । ତଳକୁ ଆଣିଲେ ବୁଡ଼ିଯିବ । ସେ ନିରୁପାୟ... କ'ଣ କରିବ ।

ଲମ୍ୱା ଦୀର୍ଘଶ୍ୱାସଟିଏ ନେଲା ସୁଦାମ ମାଷ୍ଟ୍ରଙ୍କ ସାନପୁଅ ଅବନୀ ପରିଡ଼ା । ଭାବନା କଡ଼ ଲେଉଟେଇଲା । ଶୁନ୍‌ଶାନ୍ ରାତି । ନିଜ ନିଃଶ୍ୱାସ ପ୍ରଶ୍ୱାସ ନିଜେ ଶୁଣି ପାରୁଥିଲା ସେ । କୃଷ୍ଣପକ୍ଷର ତିଥି । ସମଗ୍ର ଧରପୁର ଉପରେ ଅଶୁଭପକ୍ଷୀର ଡେଣା ମେଲେଇ

Digitized by PPRACHIN, SOA

ଧରିଥିଲା ସତେକି ! ଧରପୁର ସୀମା ଛୁଇଁଲା ବେଳକୁ ମଝିରାତି ଗଡ଼ିଯାଇଥିଲା । ଅଚିହ୍ନା ଅଜଣା ବାଟୋଇ ଭଳି ଗାଁ ଭିତରକୁ ପଶିଲା ଖୁବ୍ ସତର୍କରେ । ବେଳେବେଳେ ନିଜ ପାଦଶବ୍ଦରେ ନିଜେ ଚମକି ପଡୁଥିଲା ଭୟରେ । ପୁଣି ନିଜକୁ ନିଜେ ସାହସ ବି ଦେଉଥିଲା - ଭୟ ଗୋଟାଏ କ'ଣ ନିଜ ଗାଁ ଭିତରେ । ସବୁ ଚିହ୍ନା ।

କୁଆଡ଼କୁ ନିଘା ନକରି, ସନ୍ତର୍ପଣରେ ସିଧା ସିଧା ତା'ର ଅତିପ୍ରିୟ ଖେଳପଡ଼ିଆରେ ପହଞ୍ଚି ସ୍ୱସ୍ତିରେ ନିଃଶ୍ୱାସ ନେଲା । ତାକୁ ତୀର୍ଥସ୍ଥାନ ଭଳି ମନେହେଲା ଖେଳପଡ଼ିଆଟା । ତା'ର ସେଇ ପୁରୁଣା ଜାଗା, ଯୋଉଠି ସେ ସଂଜ ସକାଳେ ଆସି ନିତି ବସେ, ସେଇଠି ବଡ଼ ପଥରଟିଏ ପଡ଼ିଥିଲା ଚଟାଣ ଭଳି । ଏବେ ଆଉ ନାହିଁ । ସେଇଠି ଘାସ ଚରିଯାଇଛି ନରମ ଲାଗୁଛି ପାଦକୁ । ଭଲ ଲାଗିଲା ତାକୁ, ବସିବା ଆଗରୁ ତା' ଧୂଳିମାଟିକୁ ମୁଣ୍ଡରେ ମାରି ପ୍ରଣାମ କଲା । ତୃପ୍ତିରେ ଭୋକଶୋଷ ଭୁଲି ହେଇଗଲା । ଦେଢ଼ ଦିନ ହେଇଯିବ, ସେ କିଛି ଖାଇ ନଥିଲା । ଗଲା ରାତିରେ ଗୋଟାଏ ଗାଉଁଲି ଚା' ଦୋକାନରେ କପେ ଚା' ଆଉ ବାସି ପାଉଁରୁଟି ଦି'ଖଣ୍ଡ ଖାଇଥିଲା ଯାହା । ତଥାପି କେତେ ଶାନ୍ତି ଲାଗିଲା ଗାଁ ମାଟିରେ ପାଦ ରଖୁ ରଖୁ... । ଆଖିବୁଜି ହେଇଗଲା ଖେଳପଡ଼ିଆର ମୁକ୍ତ ପବନ ପିଉ ପିଉ, ତା' କ୍ଳାନ୍ତ ଦେହମନ ଅବଶ ହେଇଆସିଲା, ତନ୍ଦ୍ରା ଘୋଟିଆସିଲା ଆଖିକୁ । କାନ୍ଧଝୁଲା ବ୍ୟାଗ ଖଣ୍ଡିକୁ ମୁଣ୍ଡତଳେ ଥୋଇ ଲମ୍ବ ହେଇ ପଡ଼ିଗଲା ପଡ଼ିଆର ଘାସ ଉପରେ ।

ସେଇ ଆଚ୍ଛନ୍ନ ଛାଇ ନିଦର କାନ୍‌ଭାସ୍ ଉପରେ ବିଗତ ଦିନର ଯେତେକ ଘଟଣା ଦୁର୍ଘଟଣା ଚିତ୍ରଭଳି ଭାସିଉଠିଲେ । ଅଣାୟତ ଭାବନାମାନେ ବଲ୍‌ଭଳି ଗଡ଼ିଯାଉଥିଲେ ପଡ଼ିଆର ଏପାଖରୁ ସେପାଖ ହେଇ । ତା' ସହିତ ଆଉ ଗୋଟିଏ ମୁହଁ- ବଉଳ ଫୁଲର ବାସ୍ନାରେ ଫେଣ୍ଟି ହେଇ ହାତ ହଲାଉଥିଲା ଗମ୍ଭୀର ଭାବେ । ଯେମିତି ଖୁସି ସବୁ କିଏ ଲୁଟି ନେଇଛି ସେଇ ମୁହଁରୁ । ସେ ଚେଷ୍ଟା କଲା ବାରମ୍ବାର ସେଇ ସୁଗନ୍ଧକୁ ମନ ପୂରେଇ ଆଘ୍ରାଣ କରିବାକୁ... ହତାଶ ହେଲା । କିଏ ଉଡ଼େଇ ନେଉଥିଲା ସେଇ ବାସ୍ନାକୁ କେଜାଣି, ଧରିପାରୁ ନଥିଲା କି ଗୋଡ଼େଇପାରୁ ନଥିଲା ପଛରେ ।

ଅନେକ ବର୍ଷ ହେଇଗଲା । କେତେ ବଣପାହାଡ଼, ଗାଁଗଣ୍ଡା ସେ ନ ବୁଲିଛି । ହେଲେ ବଉଳଫୁଲ ସହିତ କେବେ ବି ତା'ର ଭେଟ ହେଇନି । କେମିତି ବି ହେବ ? ବଣୁଆ ଫୁଲର ଅନାବନା ବାସ୍ନା ଆଉ ଗମରା ଆଇଁଷିଣିଆ ଗନ୍ଧ ଭିତରକୁ ବଉଳଫୁଲ ଭଳି ସଂଭ୍ରାନ୍ତ ମନମତାଣିଆ ବାସ୍ନା କିମିତି ପଶିବ ଯେ ? ତା' ସ୍ଥାନ ତ ପବିତ୍ର ମନ୍ଦିର ବେଢ଼ାରେ ନହେଲେ ସ୍କୁଲହତା କି ଘର ଅଗଣାରେ । ସେ ଭେଟିଥାନ୍ତା କିମିତି ? ତା' ପଛକୁ ପଛ ଆଉ ଗୋଟିଏ ମୁହଁ ଦିଶିଲା - ବୋଉର । ମନେ ମନେ ଅନୁମାନ ଲଗେଇଲା ଆହୁରି ବୁଢ଼ୀ ହେଇଯାଇଥିବ ବୋଉ ତା'ର ଏଇ ଆଠ ବର୍ଷ ଭିତରେ । ଆଉ

Digitized by PPRACHIN, SOA

ଚିହ୍ନିପାରିବନି । ଦାଢ଼ି ଭର୍ତ୍ତି ମୁହଁ ଉପରେ ହାତ ବୁଲେଇ ଆଣିଲା ସେ, ନିଜ ଅଜାଣତରେ । ସେ ତ ଅନେକ ବର୍ଷ ହେଲା ଦର୍ପଣ ଦେଖିନି । ଜଙ୍ଗଲ ଭଳି ଦିଶୁଥିବା ମୁହଁଟା । ଆଉ ସୁରେଖା... ? ସୁରେଖା ବାହାସାହା ହେଇ କୋଉଠି ଯାଇ ଘର କରୁଥିବ ହୁଏତ । ତା' ପାଦର ସେଇ ପୋଡ଼ା ଧଳାଚିହ୍ନଟା, ଏବେ ନିଶ୍ଚୟ ଲିଭିଯିବଣି । ଅରୁଭାଇର ସଂସାରଟା ବି ଭରପୂର ହେଇଥିବ । ବଡ଼ ଅଫିସର ହିସାବରେ ବେଶ୍ ନାଁ କରିଥିବ । ସେଇଟା ହିଁ ତ ତା'ର ସ୍ୱପ୍ନ ଥିଲା । ସେଇଥିପାଇଁ ସେ ବାଛିଥିଲା ଅଲଗା ରାସ୍ତା । କଣ୍ଢେଇଭଳି ପୁଅଝିଅମାନେ ଘର ଭିତରେ ଉଛୁଳକୁଦରେ ଖୁସି ଅଜାଡ଼ି ଦେଉଥିବେ । ବୋଉ ଟିକିଏ ଶାନ୍ତିରେ ଥିବ ନିଶ୍ଚୟ ।

ତାକୁ ବି ଜଣେ ସେଇ ରାସ୍ତା ଦେଖେଇଥିଲା । ସେ ନିଜେ ସାହାସ କରି ପାରିଲାନି । ବିଶ୍ୱାସ କରିପାରିଲାନି ନିଜ ଉପରେ ବୋଲି... ହଠାତ୍ ରାତିବିଟ୍‌ର ପୋଲିସ୍ ପେଟ୍ରୋଲିଂ ଗାଡ଼ିଟା ସାଇଁକିନି ଆଲୁଅ ଅଜାଡ଼ି ଦେଇ ଡାହାଣପଟ ରାସ୍ତାଦେଇ ଚାଲିଗଲା । କଡ଼ ବୁଲେଇ ନେଲା ସେ ଚଟାପଟ୍ । ରକ୍ଷା ହେଇଗଲା । ନଚେତ୍ ସେ ଯାଇଥାନ୍ତା ସିଧା... ଈଶ୍ୱରଙ୍କ ଅପାର କରୁଣା... କିଛି ଭଲ ଉଦ୍ଦେଶ୍ୟ ଅଛି ନିଶ୍ଚୟ । ଭାବନାର ଗତି ଅଟକିଗଲା ସତେ ଯେମିତି ସାମ୍ନାରେ ହଠାତ୍ ପାହାଡ଼ କି ନଈକୁ ଭେଟିଲା ଭଳି । 'ଈଶ୍ୱର'... । ତା' ପାଇଁ ନୂଆ ଶବ୍ଦ, ନୂଆ ଚିନ୍ତା, କୁଆଡୁ ଆସିଲେ ଏଇ ଈଶ୍ୱର ? ଚମକିପଡ଼ିଲା ସେ ନିଜ ଭିତରେ । ଭୟରେ ନୁହେଁ, ବିସ୍ମୟରେ । ଜଣେ ଅଚିହ୍ନା ଅଜଣା ବାଟୋଇ ସହିତ ତା'ର ମୁହାଁମୁହିଁ ଧକ୍କା ହେଇଗଲା ସତେକି । ତା' ଚେତନା ହତଭମ୍ବ ହେଇ ଠିଆ ହେଇପଡ଼ିଲା ଅତର୍କିତ ଭାବେ ହାତଟେକି । ଅନେକ ଦିନ ତଳେ ଏମିତି ଥରେ ଅସହାୟ ଲାଗିଥିଲା ତାକୁ ବୋଲି ସେ ହାତଟେକି ଥିଲା ସେଇ ଅଜଣା ଈଶ୍ୱରଙ୍କ ପାଖରେ, ଆଉ କାହା ପାଇଁ । କାରଣ ସେ ମୁକ୍ତିର ବାଟ ଖୋଜୁଥିଲା ଏବଂ ତାକୁ ତ୍ରାଣକର୍ତ୍ତା ଭାବି, ଶରଣ ପଶିଥିଲା । ଆଉ ସେ ଭିନ୍ନ ଗୋଟାଏ ବିଚାରଧାରାକୁ ଆପଣେଇଥିବା ସତ୍ତ୍ୱେ, ଗୋଟାଏ ମଣିଷର ଉପକାର କରିବା ପାଇଁ ମିଳୁଥିବା ସୁଯୋଗକୁ ହାତଛଡ଼ା କରିବନି ବୋଲି ନିରୁପାୟ ହେଇ, ସାଧାରଣ ମଣିଷର ବିଶ୍ୱାସ- ସେଇ ଅଦୃଶ୍ୟ ଶକ୍ତି ଆଗେ ହାତଟେକି ଦେଇଥିଲା । ଅନେକ ଦିନ ହେଇଗଲାଣି ସେ କଥା । ରାଘବ ଥିଲା ତା' ସାଥୀରେ ସେତେବେଳେ । ଗୋଟାଏ ସଂକଟର ବେଳ ସେଇଟା ।

କିନ୍ତୁ ଏବେ ? ଏବେ ବି କ'ଣ ତା' ଭିତରେ ସେଭଳି ସଙ୍କଟ ଦେଖାଦେଇଛି ? ଭାବିଲା, ନା, ସେ ଭୁଲ୍ ରାସ୍ତାକୁ ପଶିଆସିଲା ? କାରଣ ତା' ଚଲା ରାସ୍ତାରେ ତ ଈଶ୍ୱର ଫିଶ୍ୱରଙ୍କ ଗତାଗତ କି ଆତଯାତ ନଥିଲା । କାହା କରୁଣା, ଅନୁକଂପା କି ଦୟାର ଆବଶ୍ୟକ ପଡୁନଥିଲା । ତା' ରାସ୍ତାର ରାଜା ସେ ଥିଲା । ସେ ତା'ର ନିୟନ୍ତା ।

Digitized by PPRACHIN, SOA

ଅବଶ୍ୟ ଦଳ ଥିଲା, ନେତା ଥିଲେ, ତାଙ୍କ ନିର୍ଦ୍ଦେଶ ଥିଲା - ବହୁ ଅଦୃଶ୍ୟ ଭାବେ ଆକାଶବାଣୀ ଭଳି ପୁରାଣର । ଭୟ ନଥିଲା । କାରଣ କୋଉଥିରେ ଅନୁରକ୍ତି କି ସଂପୃକ୍ତ ନ ଥିଲା । କେବଳ କାମକୁ ଚିହ୍ନି ଥିଲା । କାମ ହେଉଥିଲା । ସେ କାମ କ'ଣ, କାହିଁକି, କାହାପାଇଁ, କି ଉଦ୍ଦେଶ୍ୟରେ - ଜାଣିବା ଆବଶ୍ୟକ ବି ନ ଥିଲା ।

ଅବନୀର ଭାବନା ହଠାତ୍ ଅଟକିଗଲା ମଝି ବାଟରେ । ଏବଂ ଖୋଲି ହୋଇଗଲା ଚେତନାର ସବୁ ଦୁଆର ଝରକା । ଝରକାବାଟେ କାହାର ମୁହଁ ଦିଶିଗଲା । ସିଏ ପ୍ରଶ୍ନ କରୁଥିଲା ଦୃପ୍ତ ଠାଣିରେ ତା' ମୁହଁକୁ ଚାହିଁ - "ଭୟ ତ ନଥିଲା, ତା'ହେଲେ ଚମକି ପଡ଼ିଲୁ କାହିଁକି ଏମିତି ? ଭୂତ କି ବାଘକୁ ତ ଭେଟିନୁ । ଛାଇ ଆଲୁଅ ଟିକେ ।" ସତରେ ତ, ସେ ଚମକୁଛି କାହିଁକି ନିଜ ଭିତରେ । କେହି ତ ନାହିଁ ତା' ପାଖରେ ଏମିତିକି ନିଜ ଛାଇ ବି । ତା' ହେଲେ ? ବିରାଜ ଚଂପତିର ଶିବିରକୁ ଯିବା ଦିନୁ ଚେତନାର ସବୁ ଦ୍ୱାରଝର୍କା ବନ୍ଦକରି ସେ କିଳି ଦେଇଥିଲା, ଦଳ ପାଇଁ ନିର୍ଦ୍ଦିଷ୍ଟ ଥିବା ପ୍ରତିଶ୍ରୁତିର ଲୁହାକିଳା ଦେଇ । ସେଠି ତ ଗୋଟାଏ ମନ୍ତ୍ର ଛଡ଼େଇ ଆଣ ନିଜ ଅଧିକାର । ଯୋଉମାନେ ତୁମ ଅଧିକାର ଲୁଣ୍ଠନ କରିଛନ୍ତି - ନିପାତ କର ସେମାନଙ୍କୁ । ବାସ୍ । ଏଇ ମନ୍ତ୍ର ବ୍ୟତୀତ ଆଉ କିଛି ଘୋଷିନି । ଅଥଚ ଏଇ କିଳା ହୋଇଥିବା ଅମୁହାଁ ଦୁର୍ଗ ଭିତରକୁ ଈଶ୍ୱର ପଶିଆସି ତାକୁ ଭୟ ଦେଖଉଛନ୍ତି କିମିତି ? ନା, କିଏ ଡରଉଛି ଆଉ ?

– "ତୋ' ପାପବୋଧ", ଅପରାଧ ବୋଧ, ଝରକା ସେପାଖେ ମୁହଁ ଦେଖଉଥିବା ମଣିଷଟା କହିଲା । "ଏତେ ଦିନଧରି ଯେ ତୁ ନାଚି ଆସୁଛୁ କାଳିସୀ ଭଳି... କିଛି ପାଇଛୁ ? ବଞ୍ଚିବାର ଅଧିକାର, ସୁଖସ୍ୱାଚ୍ଛନ୍ଦ୍ୟ, କି ସେଭଳି କିଛି ? ଶାନ୍ତିରେ ଆଖିବୁଜି ଶୋଇପାରିଛୁ ଘଡ଼ିଏ ?" ଉତ୍ତର ନଥିଲା ତା' ପାଖରେ । ପାଟି ଅଠା ଅଠା ହୋଇଯାଇଥିଲା । ମଣିଷଟା ପୁଣିଥରେ ଆଖିରେ ହସଫୁଟେଇ ବିଦ୍ରୂପ ଗଳାରେ କହିଲା, "ଏବେ କାହିଁକି ନିଜ ଛାଇ ଦେଖି ଡରୁଛୁ । ପିମ୍ପୁଡ଼ିଗାତ ଖୋଜୁଛୁ ଲୁଚିବା ପାଇଁ । ଯୋଉମାନେ ତୋ' କାନରେ ଏଇ ମନ୍ତ୍ରସବୁ ଫୁଙ୍କିଥିଲେ, ଅଛନ୍ତି କି ସେମାନେ ତୋ' ପାଖରେ ?"

ଉତ୍ତର ଖୋଜୁ ଖୋଜୁ ଅବନୀ ଚାରିଆଡ଼କୁ ଚାହିଁଲା । କାହିଁ କେହି ତ ନାହିଁ କୁଆଡ଼େ । କେବଳ ଅନ୍ଧାର । ବହଳ ଅନ୍ଧାରର ଚାଦର ଘୋଡ଼େଇ ଶୋଇଛି ଧରପୁର, ତା' ଜନ୍ମମାଟି । ଅଥଚ ସେ ଏକୁଟିଆ ଅଚିହ୍ନା, ଅପରିଚିତ ଭଳି ଠିଆହୋଇଛି ଶୂନ୍ୟ ପଡ଼ିଆ ଭିତରେ ଆର୍ତ୍ତ ମଣିଷଟିଏ ଭଳି । ବିଶ୍ୱାସ, ପ୍ରତିଶ୍ରୁତି, ଦାୟିତ୍ୱବୋଧ ତଥା ଅନୁଭବହୀନ ଏକ ମିଛର ବଳୟ ଭିତରେ ସେ, ସୁଦାମ ମାଷ୍ଟ୍ରଙ୍କ ପୁଅ ଅବନୀ ପରିଡ଼ା ଏକୁଟିଆ, ଏକଦମ୍ ଏକୁଟିଆ । ମୁହୂର୍ତ୍ତକୁ ସାଥୀକରି ବଞ୍ଚିଚାଲିଛି ।

Digitized by PPRACHIN, SOA

କାହିଁକି ? କାହିଁକି ତା'ର ଏକ କୃଚ୍ଛ୍ର ସାଧନା ? ଏଇଟା କ'ଣ ଦେଶପ୍ରେମ ? କ'ଣ ପାଇବ ବୋଲି । ଦେଶଭାଇଙ୍କୁ ଦେଶକୁ କ'ଣ ଦେବ ବୋଲି ? କାହାର ଏଥିରେ କି ଉପକାର ହେଇଛି, କି ହେଉଛି ? ଜାଣେନା । ଜାଣେନା ସେ । କିଛି ଉତ୍ତର ନାହିଁ ତା' ପାଖରେ । ଲକ୍ଷ୍ୟ କିମ୍ବା ଉଦ୍ଦେଶ୍ୟ ତ କେବେ ତା'ର ନଥିଲା ନିର୍ଦ୍ଦିଷ୍ଟ ଭାବେ । ତେବେ ଦଶଟା ମଣିଷର ମୁହଁରେ ହସ ଫୁଟେଇ ନିଜେ ହସିବ ବୋଲି ହିଁ ବିରାଜ ଶିବିରରେ ଯୋଗ ଦେଇଥିଲା ସେ । କିଛି କାମ କରିବ ମଣିଷ ପାଇଁ, ନିଜେ ବଞ୍ଚିବ ମଣିଷଭଳି । କାମ କରୁଥିଲା ବି । ପ୍ରଥମ ଚାରି ଛ'ମାସ ତା' ପାଇଁ ଖୁବ୍ ଉତ୍ସାହଜନକ ଥିଲା । ବିରାଜର ଶିବିରରେ ସକାଳରୁ ସଂଜ ନିଷ୍ଠାର ସହିତ କାମ ଚାଲିଥିଲା । ପଛୁଆ ଶ୍ରେଣୀର ଖଟିଖିଆ ମଣିଷଙ୍କ ପାଇଁ ବିରାଜ ଗୋଟାଏ ବସ୍ତି ବସେଇବାର ଯୋଜନା କରିଥିଲା । ସେଥିପାଇଁ ମଞ୍ଜୁରି ବି ଆଣିଥିଲା । ସହରତଳି ସନ୍ତସନ୍ତିଆ ପରିତ୍ୟକ୍ତ ଜମିକୁ ବାସୋପଯୋଗୀ କରେଇବା ପାଇଁ ସରକାରୀ ସ୍ତରରେ ମସୁଧା ଚଳେଇଥିଲା । ସହରର ବିଶିଷ୍ଟ ମଦ ବ୍ୟବସାୟୀ ଅମ୍ବିକା ଜହୁରୀ ବି ଥିଲା ତା'ର ଏକ ପ୍ରତିଦ୍ୱନ୍ଦ୍ୱୀ । ସେ ଚାହୁଁଥିଲା ସେଇଠି ଗୋଟାଏ ବଡ଼ ଆପାର୍ଟମେଣ୍ଟ ଠିଆ କରେଇବ । ଦୁହେଁ ଥିଲେ ପ୍ରତିପତ୍ତିଶାଳୀ । ଦୁହିଁଙ୍କ ଭିତରେ ବଳ କଷାକଷି ଚାଲିଥିଲା ଅନେକ ଦିନଧରି ।

ସେତିକିବେଳେ ହିଁ ସେ ଯୋଗ ଦେଇଥିଲା ବିରାଜ ଶିବିରରେ । ବିରାଜ ପ୍ରଥମେ ତାକୁ ସଂଗଠନ ଭିତରର କାମ ବୁଝିବାର ଦାୟିତ୍ୱ ଦେଇ କହିଥିଲା, "ତୁ ହେଲୁ ପାଠ ପଢୁଆ ପିଲା । ଯୁବକ ମନ । ତୁ ବୁଝିପାରିବୁ ଏଇ ହତଭାଗା କାଙ୍ଗାଳ ଅସହାୟ ମଣିଷଙ୍କ ଅଭାବ ଅସୁବିଧା, ଶିକ୍ଷାଦୀକ୍ଷା, ସ୍ୱାସ୍ଥ୍ୟ ଇତ୍ୟାଦିର କଥା । ସଚେତନ କରେଇପାରିବୁ ସେମାନଙ୍କୁ । ଯାହା ଆବଶ୍ୟକ ସେଥିପାଇଁ ଆମେ ଯୋଗେଇଦେବା ସେମାନଙ୍କୁ । ସେ ସବୁର କିନ୍ତୁ ଉପଯୁକ୍ତ ସଦବ୍ୟବହାର ହେବା ଦରକାର । ତୁ ବୁଝିବୁ । ଦାୟିତ୍ୱ ତୋ'ର ।" ଖୁସିରେ ନେଇଥିଲା ସେ ସବୁ ଦାୟିତ୍ୱ । ଭଲ ବି ଲାଗୁଥିଲା କାମ କରିବାକୁ । ସେତିକିବେଳେ ସେ ଅନେକ ଗାଁ ବୁଲିଛି । ଦେଖିଛି ସେସବୁ ଗାଁର ଦୁର୍ଦ୍ଦଶା । ବିଶ୍ୱାସ କରିପାରିନି ନିଜ ଆଖିକୁ । ସ୍ୱାଧୀନ ଭାରତରେ ଏମିତି ବି ଗାଁ ସବୁ ଅଛି, ଯୋଉଠି ମଣିଷମାନେ ପଶୁଭଳି ଜୀବନ କାଟୁଛନ୍ତି । ପେଟକୁ ଦାନା ନାହିଁ କି ଲୁଗା ଖଣ୍ଡେ ନାହିଁ ଶୀତ କାକରରୁ ବଞ୍ଚିବାକୁ । ସଢୁଛନ୍ତି ରୋଗ ବ୍ୟାଧିରେ । ପଚାସଢା ପୋଖରୀପାଣି, ଚାରିଆଡ଼ ଦୁର୍ଗନ୍ଧ । କାଠିଭଳି ହାତଗୋଡ଼ ଫୁଲା ପେଟ । ଦୃଷ୍ଟିଶକ୍ତି ବି କମ୍ । କାମ କରିବାକୁ ଶକ୍ତି ନାହିଁ ଦେହରେ କି କାମ ବି ନାହିଁ ହାତରେ ରୋଜଗାର ଶୂନ୍ୟ । ଦୁଃଖ ଲାଗିଥିଲା ଖୁବ୍ । କ'ଣ କରିପାରିବ ସେ ଏମାନଙ୍କ ପାଇଁ ।

Digitized by PPRACHIN, SOA

ସେତିକିବେଳେ ତା'ର ମନେହେଉଥିଲା, ସତରେ, ସେ ତ ଜୀବନକୁ ଦେଖି ନଥିଲା । ସେ ଦୁଃଖୀ ଥିଲା । ଗରିବ ଥିଲା ଅଭାବ ଅନଟନ ଭିତରେ ବଞ୍ଚୁଥିଲା ମଧ୍ୟ ପେଟ ପୁରୁ ନଥିଲା । ବୋଉ ରୋଗରେ ଛଟପଟ ହେଉଥିଲା । ପାଠ ପଢ଼ିବା ପାଇଁ ବି ପଇସା ନଥିଲା । ଭଉଣୀର ବାହାଘର ହେଇପାରୁ ନଥିଲା । ଅସହ୍ୟ ମନେ ହେଉଥିଲା ଜୀବନ । ବଞ୍ଚିବାର ବାଟ ଖୋଜୁଥିଲା । ତଥାପି... ଏ ମଣିଷମାନଙ୍କ ତୁଳନାରେ ତା' ଦୁଃଖ କମ୍ ଥିଲା । ବଞ୍ଚିବାର ବାଟ ଖୋଜୁ ଖୋଜୁ ଆଜି ସେ ଯୋଉଠି ପହଞ୍ଚିଛି - ସେଠି ଦେଖୁଛି ଅନୁଭବ କରୁଛି ଏମାନଙ୍କ କଷ୍ଟ କେତେ ।

ମନ ଲଗେଇ ଅନ୍ତର ଦେଇ ସେ କାମ କରିଥିଲା । ସେଇ ଦୁଃଖୀ ମଣିଷଙ୍କ ପାଇଁ । ଠିକ୍ ସମୟରେ ଶିବିର ପରିଚାଳନା କରୁଥିଲା । ଶିକ୍ଷା, ସ୍ୱାସ୍ଥ୍ୟ, ମାନବାଧିକାର ସଂପର୍କରେ କିଛି କିଛି ମୌଳିକ ଶିକ୍ଷା ଦାନ ପାଇଁ ସହରର ବିଶିଷ୍ଟ ବ୍ୟକ୍ତିଙ୍କୁ ନିମନ୍ତ୍ରଣ କରିନେଇଥିଲା । ଭାବିଥିଲା, ସମୟର ସଦୁପଯୋଗ ପାଇଁ ତାକୁ ସୁଯୋଗ ମିଳିଲା । କଟିଲା ଏମିତି ତିନି ଚାରି ମାସ । ତା'ପରେ ବିରାଜ ପଡ଼ୋଶୀ ରାଜ୍ୟମାନଙ୍କରୁ ସାମ୍ୟବାଦୀ ନେତାଙ୍କୁ ନିମନ୍ତ୍ରଣ କଲା । ସେମାନଙ୍କର ଜ୍ୱାଳାମୁଖୀ ଭାଷଣ । ବାସ୍ତବରେ ଯୁବରକ୍ତକୁ ତତେଇ ମତେଇ ଦେଇ ପାରୁଥିଲା । ସରକାରଙ୍କ ଦୋଷ ଦୁର୍ବଳତା ପ୍ରତି ଆଙ୍ଗୁଠି ଦେଖେଇ ସେମାନେ ପ୍ରତିଷ୍ଠିତ ବ୍ୟବସ୍ଥାକୁ ନିନ୍ଦା କରୁଥିଲେ । ସେମାନେ କହୁଥିଲେ- ସରକାର ମିଛ । ସେମାନଙ୍କ ପ୍ରତିଶ୍ରୁତି ମିଛ । ଗଣତନ୍ତ୍ର ନାମରେ ପ୍ରତାରଣା କରୁଛନ୍ତି ଏମାନେ । ଏଇ ସରକାର ଥିଲାବାଲାଙ୍କର, ଏଣୁ ତାଙ୍କ ସାମ୍ବିଧାନିକ ବ୍ୟବସ୍ଥା ମିଛ । ଏମାନେ ଶୋଷକ । ବିଗତ ଷାଠିଏ ବର୍ଷ ଭିତରେ କେବଳ ନିଜ ସୁଖ, ସୁବିଧା, ସ୍ୱାର୍ଥ ସାଉଁଟୁ ସାଉଁଟୁ ଏଇ ନେତା ରାଜନେତାଙ୍କ ସମୟ ଯାଇଛି । ବଂଶ ପରମ୍ପରା କ୍ରମେ କ୍ଷମତାରେ ରହିବେ ବୋଲି ସମାଜର ଗୋଟାଏ ବଡ଼ ଅଂଶକୁ ଏମିତି ଅନ୍ଧାର ଭିତରେ ରଖି ଭୋଟ ରାଜନୀତିରେ ମାତିଛନ୍ତି, ତେଣୁ ଏମାନଙ୍କର ମୂଳୋତ୍ପାଟନ ହେବା ଉଚିତ ।

କି ଜ୍ୱାଳାମୟୀ ଭାଷଣ । ହୃଦୟକୁ ଛୁଇଁଲା ଭଳି କିମିଆ କଲାଭଳି ମନ ମାତି ଉଠେ । ଭୁଲି ହେଇଯାଏ ଘର, ବାପାବୋଉ, କୁଟୁମ୍ବ, ବଂଧୁ, ସ୍ୱଜନ । ସେ କୋଉଠୁ ଆସିଥିଲା, କ'ଣ ପାଇଁ, କି ଲକ୍ଷ୍ୟ ନେଇ, ଉଦ୍ଦେଶ୍ୟ କ'ଣ ଥିଲା । କିଛି ମନେପଡ଼େନି । ତା'ର ବି କିଛି ମନେପଡ଼ି ନଥିଲା । ସବୁ ଭୁଲିଯାଇଥିଲା । ଭୁଲି ଯାଇଥିଲା ଜନ୍ମମାଟିର ରାସ୍ତା, ଜନ୍ମ କଲା ବୋଉ, ରକ୍ତର ସଂପର୍କ ସହିତ ଆହୁରି ଅନେକ କିଛି । ପ୍ରଥମ ତିନି ଚାରିମାସ ତ ସେ ଘରୁ ହିଁ ଯିବାଆସିବା କରୁଥିଲା । ବୋଉ କିଛି ବୁଝି ନ ପାରିଲେ ବି ମନେ ମନେ ଖୁସି ଥିଲା, ଭାବୁଥିଲା ହୁଏତ, ଯାହାହେଉ, ମନ ଘର ଧରିଛି ଯେତେବେଳେ ଦିନେ କୂଳରେ ଲାଗିବ । ଦି'ଗୁଣ ଉତ୍ସାହରେ ଠାକୁର ଠାକୁରାଣୀଙ୍କୁ ପୂଜା ଦେଉଥିଲା, ଉପାସ କରୁଥିଲା ହୁଣ୍ଡା ପୁଅର ଦୋଷ କଟିଯାଉ ବୋଲି ।

Digitized by PPRACHIN, SOA

ଆଉ ଯୋଉ ଦିନ ବିରାଜ ଦେଇଥିବା ପାରିଶ୍ରମିକ ଟଙ୍କାରୁ ଚାରିଶହ ଟଙ୍କା ବୋଉ ହାତକୁ ବଢ଼େଇ ଦେଇଥିଲା, ବୋଉ ଆଖିରୁ ଲୁହ ଝରି ପଡ଼ିଥିଲା ଖୁସିରେ । ଦିଅଁଙ୍କ ଠଣାରେ ସେ ଟଙ୍କା ଥୋଇ ଚାରିଦିନ ପର୍ଯ୍ୟନ୍ତ ମୁଣ୍ଡିଆ ମାରିଥିଲା ମଧ୍ୟ । ସବୁ ଠିକ୍‌ଠାକ୍ ଚାଲିଥିଲା ଧାରାବାହିକ ଭାବେ । ତା'ର ବାରବୁଲା ଅଘରୀ ମନ ସଢ଼ାଡ଼ି ହେଇଆସୁଥିଲା କାମର ନିଶାରେ । ଧୀରେ ଧୀରେ ବୁଝି ପାରୁଥିଲା ଯେ ଶିକ୍ଷା ହିଁ ମଣିଷକୁ ଉଚିତ ମାର୍ଗ ଦେଖେଇ ପାରିବ, ସେତିକିବେଳେ ମନେପଡ଼ିଥିଲେ ବାପା, ମନେ ପଡ଼ିଥିଲା ସୀମା । କେତେ ଥର ମନେପକେଇ ଦେଇଛନ୍ତି ସେମାନେ ଏକଥା । ସେମାନଙ୍କ କଥାକୁ ସେ କେବେ ବି ଗୁରୁତ୍ୱ ଦେଇ ଭାବିନି । ଅଭିମାନ କରି ମୁହଁ ଫେରେଇ ନେଇଛି ସୀମା - ଆଉ ଦେଖା ବି କରିନି । ଅବନୀ ଭାବିଥିଲା, ନିଜକୁ କିଛି ଗୋଟାଏ ଯୋଗ୍ୟକରି, ହେଉପଛେ ଛୋଟିଆ ପରିଚୟଟିଏ ନେଇ ଦିନେ ସୀମା ପାଖକୁ ଯାଇ ତାକୁ ଚମକେଇଦେବ । ସେ ଖୁବ୍ ଖୁସି ହେବ । ତେବେ ଯାଉ ଆଉ କିଛି ସମୟ । ସେତିକିବେଳେ ତାଙ୍କ ସଂଗଠନ ଅନେକ ଗଠନମୂଳକ କାର୍ଯ୍ୟକ୍ରମମାନ ହାତକୁ ନେଇଥିଲା । ଦେ' ଗାଁରେ ପଚାଶ ଜଣ ପିଲାଙ୍କୁ ନେଇ ସେମାନେ ସ୍କୁଲଟିଏ ଆରମ୍ଭ କରିଥିଲେ ପିଲାଙ୍କୁ ସାକ୍ଷର କରିବା ଅଭିପ୍ରାୟରେ । ଅବନୀ ଦୀର୍ଘଶ୍ୱାସ ନେଇ କଡ଼ ଲେଉଟେଇଲା । ଭାବନା ଆହୁରି ସତେଜ ହେଲା ।

ସେଇ ବର୍ଷର ଦଶହରା ବେଳ । ଶିକ୍ଷା ସଂପର୍କିତ ସଚେତନତାର ଶିବିର ଚାଲିଥିଲା ସପ୍ତାହ ବ୍ୟାପୀ । ସେ ବ୍ୟସ୍ତ ଥିଲା ସେଥିରେ । ହଠାତ୍ ଦିନେ ସଂଧ୍ୟାରେ ବିରାଜ ଚଂପତି କାଳବୈଶାଖୀ ଭଳି ମାଡ଼ି ଆସିଥିଲା ଶିବିରକୁ । ହଇଚଇ ଖେଳିଯାଇଥିଲା ସମସ୍ତିଙ୍କ ଭିତରେ । କାରଣ କ'ଣ ହେଇପାରେ । ବିରାଜ ତ କେବେ କ୍ୟାମ୍ପ ଚାଲୁଥିଲା ବେଳେ ଆସେନା । ତା'ର ମଗଜ ନାହିଁ ଏସବୁ ବୁଝି ସମଝିବାକୁ । ଯାହା ପାଖରେ କାମ ଥାଏ, କିମ୍ବା ଯାହାଦ୍ୱାରା କାମ କରେଇବାକୁ ଚାହେଁ, ତାକୁ ସେ ଡାକିନିଏ ନିଜ ଅଫିସକୁ । ଏଥର କିନ୍ତୁ ସେ ନିଜେ ଆସିଛି । ନିଶ୍ଚୟ କିଛି ବିଶେଷ କାର୍ଯ୍ୟ । ଶକୁନ କିଛି ଶୁଭଙ୍କର ନୁହେଁ, କହିଥିଲା ବିଜୟ । ବିଜୟର ଅନୁମାନ ବି ମିଛ ନଥିଲା । କ୍ୟାମ୍ପ ପରିଚାଳନା ସଂପର୍କରେ ସାମାନ୍ୟ କିଛି ଆଲୋଚନା ପରେ ବିରାଜର ଆଖି ତାକୁ ଖୋଜିଥିଲା । ଖୁବ୍ ପ୍ରଶଂସା ମଧ୍ୟ କରିଥିଲା ସମସ୍ତଙ୍କ ଆଗରେ, ଖୋଲା ମନରେ । ଏମିତି ସମର୍ପିତ କର୍ମୀ ଥିଲେ ଦେଶଦଶର ବିକାଶ ଦ୍ରୁତ ଗତିରେ ଆଗେଇବ - ଆତ୍ମସନ୍ତୋଷ ପ୍ରକାଶ କରିବା ସହିତ ଆହୁରି କିଛି ଗୁରୁ ଦାୟିତ୍ୱ ତା' ଉପରେ ଦେବାପାଇଁ ସେ ସ୍ଥିର କରିଥିବା ଜଣେଇଲା । ଧରଣୀ, ଅନନ୍ତ, ଦୀନା, ରବି ସହିତ ଅନ୍ୟ ସଭ୍ୟମାନେ ବି ଥିଲେ ।

Digitized by PPRACHIN, SOA

ସେ ଟିକିଏ ସଂକୁଚିତ ହେଇ ପ୍ରଶ୍ନ କରିଥିଲା - "କି ପ୍ରକାର ଦାୟିତ୍ୱ । ଏଇ କାମ ତ ଖୁବ୍ ଭଲ ଲାଗୁଛି । ସଭ୍ୟ ସଂଖ୍ୟା ବି ବଢ଼ିଛି ଆମର... ।"

– "ସଭ୍ୟ ସଂଖ୍ୟା ବଢ଼ିଛି ସତ, ସେଥିରେ ସଂଗଠନ ମଜଭୁତ ହେଉଛି, ଏଥିରେ ସନ୍ଦେହ ନାହିଁ । ହେଲେ ସଂଗଠନ ତ ପାଣିରେ ଚାଲିବନି, ତା' ସହିତ ଆର୍ଥିକ ଅବସ୍ଥାକୁ ବି ବଢ଼େଇବା ଦରକାର । ଆମ ସମ୍ବଳ ବଢ଼ିଲେ ଆହୁରି ସଭ୍ୟ ଆସିବେ... । ତା'ଛଡ଼ା 'ଆଦର୍ଶ ବସ୍ତି' ଯୋଜନାରେ ଅମ୍ବିକା ଜହୁରୀ ନାକ ଗଳେଇଛି । ଆମ ହାତରୁ ଛଡ଼େଇ ନେବ ସେଇ ଜାଗା ବୋଲି । ତା'ର ତ କିଛି ଗୋଟାଏ ଦଫାରଫା କରିବାକୁ ପଡ଼ିବ... କ'ଣ କହୁଛ ? ଧରଣୀ, ଅନନ୍ତ, ଦୀନା ଆଡ଼କୁ ଲକ୍ଷ୍ୟକରି କିମ୍ଭୂତ ହସଟିଏ ହସିଥିଲା ବିରାଜ - ତାକୁ କିମିତି ଅସ୍ୱାଭାବିକ ଲାଗିଥିଲା - କାରଣ ବିରାଜ ମୁହଁଟା ବୀଭତ୍ସ ଦିଶିଥିଲା ସେତେବେଳେ । ବିରାଜ ସେଦିନ ଠିକେ ଠିକେ ବୁଝାଇ ଦେଇଥିଲା ଚାନ୍ଦା କିମିତି ଆଦାୟ କରିବାକୁ ହେବ । କିଭଳି ମୁଷ୍ଟିଭିକ୍ଷା କରାଯିବ । ଲୋକଙ୍କ ପାଖକୁ କି ପ୍ରକାର ଆବେଦନ ନେଇ ଯିବାକୁ ହେବ ତା'ର କୌଶଳ ଓ ପ୍ରକାରଭେଦ, ସଂପର୍କରେ ସବିଶେଷ ଜ୍ଞାନ ମଧ୍ୟ ଦେଇଥିଲା । ଧରଣୀକୁ ଦାୟିତ୍ୱ ଦେଇ କହିଥିଲା- "ତୋ' ଦାୟିତ୍ୱ ପିଲାଙ୍କୁ ବୁଝେଇବା, ହେଲା... ଯେମିତି ଗଣ୍ଡଗୋଳ ନ ହୁଏ ।" ଧରଣୀ ଉତ୍ତର ଦେଇଥିଲା- "ଠିକ୍ ଅଛି । କାମହେଲା ଜାଣ ।" ବିରାଜ ଚାଲିଯିବା ପରେ, ତାକୁ କିମିତି ଅତୁଆ ଲାଗିଥିଲା, ସେ ବିସ୍ମୟ ପ୍ରକାଶ କରି ପଚାରିଥିଲା ବି ଧରଣୀକୁ - "ଏଯାଏ ତ କାମ ଆରମ୍ଭ ହେଇନି, ଯୋଜନା ଚାଲିଛି, ତୁ କିମିତି କହିଲୁ କାମ ହେଇଗଲା ବୋଲି ?" ଧରଣୀ ମୁହଁରେ ଫୁଟି ଉଠିଥିଲା ଆଉ ପ୍ରକାରେ ରହସ୍ୟଜନକ ହସ - କହିଲା, "ଦେଖିବୁ ଚାଲ, କାମ କେମିତି ଆଦାୟ ହୁଏ ।"

ସେଇ ରାତିର କଥା ମନେପକେଇବାକୁ ଯାଇ ଅବନୀ ଝାଳେଇଗଲା ବିଶେଷ ଉତ୍ତେଜନାବଶତଃ । ଉଠି ବସିପଡ଼ିଲା ଶୋଇବା ଜାଗାରୁ । ରାତିର ଅନ୍ଧାର ସେମିତି ଜମାଟ ବାନ୍ଧିଥିଲା ଘନହେଇ ତା' ଚାରିପଟେ । କିନ୍ତୁ ସେଦିନର ସେଇ କାଳରାତିଟା, ଆଜି ରାତିଠୁ ବି ଆହୁରି ଭୟଙ୍କର ଭାବେ ଅନ୍ଧାର ଥିଲା । ଆହୁରି କଳା । କହିବାକୁ ଗଲେ ତା' ଜୀବନର କଳାରାତି । ସବୁ କିଛି ଓଲଟପାଲଟ କରିଦେଇଥିଲା । କ'ଣ କିମିତି ସବୁ ଯେ ଘଟିଗଲା... ଏତେ ବର୍ଷ ଭିତରେ ସେ ସବୁ ଘଟଣାକୁ କେବେ ସେ ଅନୁଧ୍ୟାନ କରିବାକୁ ଚେଷ୍ଟା ବି କରିନି । ଭାସି ଚାଲିଛି ତ ଭାସି ଚାଲିଛି । ଆଜି ଭାବିଲା ବେଳକୁ ରୋମମୂଳ ଟାଙ୍କୁରି ଉଠୁଛି ।

ସମୟ, ପରିବେଶ, ପରିସ୍ଥିତି କିଛି ବି ତା' ନିୟନ୍ତ୍ରଣରେ ନ ଥିଲା । ତା' ସହିତ ତା'ର ଜନ୍ମଗତ ଅପରିଣାମଦର୍ଶୀ ଆଗତଚଲା ସ୍ୱଭାବ - ଏସବୁ ମିଶି ତାକୁ ଏକ ଭିନ୍ନ

Digitized by PPRACHIN, SOA

ମଣିଷରେ ପରିଣତ କରିଦେଲେ । ଗରିବ ସ୍କୁଲମାଷ୍ଟର ସୁଦାମ ପରିଡ଼ାଙ୍କ ସାନପୁଅ, ଅବନୀ ପରିଡ଼ାର ନିଜ ସତ ପରିଚୟଟା ଲିଭିଗଲା । କେହି ତାକୁ ମନେ ରଖିଲେନି । ଜୀବନରେ କେବେ ସ୍ୱପ୍ନ ଦେଖି ନଥିବା ଅପଦାର୍ଥ ଅବନୀ ଜୀବନ-ବଞ୍ଚିବାର ରାହା ଖୋଜୁ ଖୋଜୁ, ଆପଣା ଖିଆଲରେ ଆଉ ପାଞ୍ଚ ଦଶଟା ମଣିଷଙ୍କ ଜୀବନକୁ ସଜାଡ଼ିବାକୁ ଯାଇ ସାଧାରଣ ମଣିଷରୁ ପଶୁ ସ୍ତରକୁ ଖସିଗଲା ରାତାରାତି । ବାଛିଥିବା ନାଲି କଟାସଡ଼କରୁ ଛିଟିକି ପଡ଼ି ସିଧାଯାଇ ପହଞ୍ଚିଗଲା ଲାଲ କରିଡୋରରେ । ଯୋଉ ରାସ୍ତାଟା ତା'ର ନଥିଲା କି ସେ ଚିହ୍ନି ନଥିଲା ମଧ । ଗଭୀର ଅନ୍ତର୍ଦାହ ଭିତରେ ଅବନୀ ଦୀର୍ଘଶ୍ୱାସଟିଏ ଛାଡ଼ି ଶୂନ୍ୟ ଆକାଶକୁ ଚାହିଁଲା । ତାରାଟିଏ ବି ଦିଶିଲାନି - ଖାଲି ଅନ୍ଧାର । ଏହି ଅନ୍ଧାର ହିଁ ସେଦିନର ସବୁ ଘଟଣାକୁ ନିଜ କଳା ପଣତରେ ଲୁଚେଇ ରଖିଛି । ସେ ହିଁ ଚାହିଁଲେ ଖୋଲିବ ତା'ର ଗଣ୍ଠି ।

ମନେପଡ଼ିଲା, ବିରାଜ ଚାହିଁବା ମୁତାବକ, ସେଦିନ ରାତିରେ ଧରଣୀ, ଅନନ୍ତ, ରବି ଆଉ ସେ ନିଜେ, ଏକାନ୍ତରେ ବସି ମସୁଧା କଲେ । କାର୍ଯ୍ୟକ୍ରମ ସଂପର୍କରେ ଯୋଜନା ତିଆରି ହେଲା । ସେ ପ୍ରକାର ଦୁର୍ଦାନ୍ତ ଯୋଜନା ଓ ପଦକ୍ଷେପ ତା' ପାଇଁ ନୂଆ ଥିଲା । ସତ କହିବାକୁ ଗଲେ ତା'ର ପସନ୍ଦ ନଥିଲା । ସେ ଯୁକ୍ତି କରିଥିଲା, "କୌଣସି କାରଣ ନଥାଇ ଗୁଣ୍ଡାଗିରି ଆରମ୍ଭ କରିବା କ'ଣ ଉଚିତ ହେବ ଆମର । ଆମ କାମ ହାସଲ କରିବା ପାଇଁ ଅନ୍ୟ କିଛି ଉପାୟ ଗ୍ରହଣ କରାଯାଇପାରେ ।" ସେମାନେ କିନ୍ତୁ ପ୍ରସ୍ତୁତ ନଥିଲେ ତା' କଥା ଶୁଣିବାକୁ । ଜବାବ ଥିଲା "ଯୋଉଠି ବିରାଜ ଚଂପତି ପାରିନାହିଁ, ତ ଆମ ପାଖରେ ଉପାୟ କାହିଁ ? ଲକ୍ଷ୍ୟ ହାସଲ ପାଇଁ ଆମକୁ ଶେଷ ଖେଳ ଖେଳିବାକୁ ହିଁ ପଡ଼ିବ । ତୁ ଯଦି ବିରାଜ କଥା ଭାଙ୍ଗିବାକୁ ଯିବୁ - ତୋ'ର ହିଁ ବିପଦ ।" କି ବିପଦ ଆଉ କ'ଣ ଶେଷ ଖେଳ ବୁଝିବା ସମ୍ଭବ ନ ଥିଲା ତା' ପାଇଁ ସେତେବେଳେ । ସମୟ ବି ନଥିଲା । ଅଗତ୍ୟା ବନ୍ଧୁମାନଙ୍କ ସହିତ ତା'ପର ଦିନ ସଂଧ୍ୟା ସୁଦ୍ଧା ସେ ପହଞ୍ଚି ଯାଇଥିଲା ସହରରେ ।

ଚାନ୍ଦା ଆଦାୟ କାର୍ଯ୍ୟକ୍ରମ ଆରମ୍ଭ ହେଇଥିଲା । କିଛି ବ୍ୟବସାୟୀ ସ୍ୱଇଚ୍ଛାରେ ଚାନ୍ଦା ଦେଇଥିଲେ । ଆଉ କିଛି ଭୟରେ ବାଧ ହେଇ । ଆଉ କିଛି ବ୍ୟବସାୟୀ ପ୍ରତିବାଦ କରିଥିଲେ । ବିଶେଷକରି, ଅମ୍ବିକା ଜହୁରୀର ଦୋକାନଦାରମାନଙ୍କ ତରଫରୁ ପ୍ରବଳ ପ୍ରତିରୋଧ ହେଇଥିଲା । ସାଧାରଣ ବଚସା, କଥା କଟାକଟିରୁ ଆରମ୍ଭ ହେଇଥିଲା ଗଣ୍ଡଗୋଳ । ସେଇଥିରୁ ଧମକ ଏବଂ ମାରପିଟର ସୂତ୍ରପାତ । ସମସ୍ତ ମଦବ୍ୟବସାୟୀ ଏକଜୁଟ ହୋଇଯାଇଥିଲେ । ଜହୁରୀର ସାନପୁଅ କେଶବ ହଠାତ୍ ମାଡ଼ି ଆସିଥିଲା ତା' ଉପରକୁ । ପରିସ୍ଥିତି ଅଣାୟତ୍ତ । କେଶବ ହାତରେ ଛୁରି ଥିଲା । ସେ ନିରସ୍ତ୍ର । ହାତରେ

Digitized by PPRACHIN, SOA

ତା'ର କିଛି ନଥିଲା । ନିରୁପାୟ ସେ କ'ଣ କରିବ ଭାବିବା ପୂର୍ବରୁ, କିଏ ଜଣେ ତା' ହାତକୁ ବଢ଼େଇ ଦେଇଥିଲା ଭଙ୍ଗା କାଚ ବୋତଲ - "ଲଗେଇ ଦେ'ରେ ଅବନୀ ବେକରେ, ଡେରି କାହିଁକି... ?" ବାସ୍ । ତା'ପରେ ଯାହାକିଛି ଦୁର୍ଘଟଣା ଘଟିଲା - ସେ ଆଉ କିଛି ଭାବିନି ପରିଣାମ ସଂପର୍କରେ । ପିଚ୍ ପିଚ୍ ରକ୍ତର ଛିଟା ତା' ଦେହମୁହଁକୁ ଲାଲ କରି ଦେଇଥିଲା । ଟଳି ପଡ଼ିଥିଲା କେଶବ । ଖସି ପଡ଼ିଥିଲା ତା' ହାତରୁ ଛୁରୀ । ପଲକ ମାତ୍ରକେ ଦଳ ଭାଙ୍ଗି ଛିନ୍‌ଛତର ହେଇଗଲା । କେହି ନଥିଲେ ସଟ୍‌ରେ । ସେ ନିଜେ ବୋକାଙ୍କ ଭଳି ଠିଆ ହେଇଥିଲା । କ'ଣ ହେଇଗଲା । ଏବେ ସେ କ'ଣ କରିବ... ।

ପୋଲିସ୍ ଆସିବା ପୂର୍ବରୁ ତାକୁ କିଏ ଜଣେ ଟାଣି ଟାଣି ନେଇଯାଇଥିଲା ମୋଟରସାଇକଲ୍‌ରେ ବସାଇ, ଅନ୍ଧାରୁଆ କିଆବଣ ଭିତରକୁ ଉପସ୍ଥିତ ବୁଦ୍ଧି ଖଟାଇ । ସେଠି ଅନନ୍ତ ଅପେକ୍ଷା କରିଥିଲା । ତରବରରେ ତା'ର ରକ୍ତଲଗା ପ୍ୟାଣ୍ଟ ସାର୍ଟକୁ ଅନନ୍ତ କିଆବୁଦାମୂଳେ ଗାତକରି ପୋତି ପକେଇଥିଲା । ଆଉ ହଳେ ଜାମା ପିନ୍ଧି, ରାତାରାତି ଦୁହେଁ ଷ୍ଟେସନ ଆସି ଟ୍ରେନ୍ ଧରିଥିଲେ, ଆନ୍ଧ୍ର ଓଡ଼ିଶା ସୀମାନ୍ତ ଉଦ୍ଦେଶ୍ୟରେ । ଦୁହିଁଙ୍କ ମୁହଁରେ ଭାଷା ନଥିଲା । ସେ ତ କାଠକଣ୍ଢେଇ ଭଳି ଅନନ୍ତ ଯୁଆଡ଼େ ନେଉଥିଲା, ଯାଇଥିଲା । ବାଟସାରା ସେ ନିଜକୁ ବିପନ୍ନ ଓ ଅସହାୟ ମନେକରିଥିଲା ।

କୋରାପୁଟ ପହଞ୍ଚିବା ପୂର୍ବରୁ ଟ୍ରେନରେ ଜଣେ ହୃଷ୍ଟପୁଷ୍ଟ ପୁରୁଷ ସହିତ ତା'ର ସାକ୍ଷାତ ହେଇଥିଲା । ଅନନ୍ତ ହାତରେ ବିରାଜ ଚିଠିଟିଏ ଦେଇଥିଲା, ସେଇ ଅଜଣା ଲୋକକୁ ଦେବାପାଇଁ । ଅନନ୍ତ ବଢ଼େଇ ଦେଇଥିଲା ଚିଠିଟି ତା' ହାତରେ ଏବଂ ଲୋକଟି ତା' ହାତଧରି ଡାକି ନେଇଥିଲା ଏବଂ ଓହ୍ଲେଇ ଯାଇଥିଲା ଗୋଟିଏ ନିକାଞ୍ଚନ ପ୍ରାୟ ଜଙ୍ଗଲିଆ ଷ୍ଟେସନରେ । ତା' ପଛରେ ଅନନ୍ତ ଆସୁଥିଲା । ହେଲେ ପଛକୁ ବୁଲି ଖୋଜିଲାବେଳକୁ ସେ ନଥିଲା । କୁଆଡ଼େ ଗଲା ସେ ଜାଣିପାରିଲାନି କି ଏଯାଏ ତା'ର ଖୋଜଖବର ନାହିଁ । ସେ କାହାର ବି ଖୋଜଖବର ନେଇନି, କି ପଛକୁ ଆଉ ଫେରି ଚାହିଁନି । ଚାହିଁବାର ଉପାୟ ନଥିଲା ଆଉ ।

ସେତେବେଳକୁ ତା'ର ପରିଚୟ ହଜିଯାଇଥିଲା ଏବଂ ସେ ଆଗ୍ନେୟଗିରିର ଛାତି ଉପରେ ଯାଇ ଠିଆହେଇ ସାରିଥିଲା । ସେଠି ଅନେକ ଲୋକ ଥିଲେ । ବହୁ ଭାଷାଭାଷୀ । ତେବେ ଅଧିକାଂଶ ଆଦିବାସୀ, ମୂଳିଆ ଶ୍ରେଣୀର । ସମସ୍ତଙ୍କୁ ଭେଟିଥିଲା ସତ, ହେଲେ କାହାର ନିଜସ୍ୱ ପରିଚୟ ନଥିଲା । ଦଳର ସଂକେତ ଓ ପରିଚୟ ନେଇ ସେମାନେ ସମସ୍ତେ ନିଜ କାମ କରୁଥିଲେ ଦଳପତିଙ୍କ ନିର୍ଦ୍ଦେଶରେ । ବଡ଼ ଅଭିଶପ୍ତ ଜୀବନ, ଭାବିଲେ । ସ୍ନେହ, ଶ୍ରଦ୍ଧା, ସଂପର୍କଶୂନ୍ୟ ଜୀବନ- ମୁକ୍ତ ବନ୍ଧନହୀନ ହେଇ

Digitized by PPRACHIN, SOA

ମଧ କାହାର ଅନୁଶାସନରେ ବନ୍ଧା । ନିଜ ଇଚ୍ଛାରେ ଇଞ୍ଚେ ମଧ ଚାଲିପାରିବନି । କେବଳ କର୍ତ୍ତବ୍ୟ, ଦଳର ନିର୍ଦ୍ଦେଶ ବ୍ୟତୀତ ଆଉ କିଛି ମାନିବାକୁ କି ଭାବିବାକୁ ମନା । ଖାଇବା ପିନ୍ଧିବାର ସଉକି ନାହିଁ ଯାହା ମିଳିଲା ଯେତେବେଳେ । ବେଳେବେଳେ ଖାଦ୍ୟ ଯୋଗାଡ଼ କରିବାର ଦାୟିତ୍ୱ ବି ଦିଆଯାଉଥିଲା କାହା କାହାକୁ - ଆଖପାଖ ଆଦିବାସୀ ଗାଁକୁ ଯାଇ ଯୋଗାଡ଼ କରିବାକୁ ପଡ଼େ ବିଭିନ୍ନ ଉପାୟରେ, ଧମକଚମକ ଦେଇ, ଭୟ ଦେଖେଇ ଲୁଟପାଟ କରି ବି ଆଣିବାକୁ ପଡ଼େ । ଦୁଃଖ ଲାଗେ ଭାବିଲେ ।

କିନ୍ତୁ ଶିକ୍ଷା ଦିଆଯାଏ, କିଛି ନ ଭାବିବାକୁ, ସେଠି କୌଣସି ଭାବପ୍ରବଣତାର ସ୍ଥାନ ନାହିଁ । ଯୁଦ୍ଧକ୍ଷେତ୍ର, କେବଳ ଯୁଦ୍ଧ ପାଇଁ । ସଂଗଠନର ନିୟମାବଳୀ, ଦଳର ସାଂକେତିକ ଭାଷା, ଗରିଲା ଯୁଦ୍ଧାଭ୍ୟାସ, ବନ୍ଧୁକ ଚାଳନା ଇତ୍ୟାଦି ସାମରିକ ଟ୍ରେନିଂ ନିୟମିତ ଭାବେ ଦିଆଯାଉଥିଲା । ଏସବୁ ଶିଖିବା ପାଇଁ କିଛି ସମୟ ଲାଗିଥିଲା ତାକୁ । ଏହାଛଡ଼ା ସେ ଆହୁରି ଅନେକ କିଛି, ଏମିତିକି ଲ୍ୟାଣ୍ଡମାଇନ ଭଳି ବହୁପ୍ରକାର ବିସ୍ଫୋରକ ଦ୍ରବ୍ୟର ବ୍ୟବହାର ସଂପର୍କରେ ବି କିଛି ଜ୍ଞାନ ଅର୍ଜନ କରିଥିଲା ।

ସବୁଠୁ କଠୋର ଥିଲା ଦଳର ନିର୍ଦ୍ଦେଶ । ନିର୍ଦ୍ଦେଶ ଅମାନ୍ୟ କଲେ ସାମାନ୍ୟ ଦଣ୍ଡ ତ ନୁହେଁ, ଭୟଙ୍କର ପ୍ରଜାକୋର୍ଟର ସାମନା କରିବାକୁ ପଡୁଥିଲା । ସେ ଥିଲା ମୃତ୍ୟୁଦଣ୍ଡ । ଏ ନିର୍ଦ୍ଦେଶ କିଏ ଦେଉଥିଲା କୋଉଠୁ ଆସୁଥିଲା ତା'ର ଜାଣିବା ଉପାୟ ନଥିଲା । କିନ୍ତୁ ନୂଆ ପ୍ରଶିକ୍ଷଣ କାଳରେ ପ୍ରଶିକ୍ଷଣାର୍ଥୀମାନଙ୍କ ଦ୍ୱାରା ଏହି ଭୟଙ୍କର ଦଣ୍ଡ ସଂପାଦିତ ହେଉଥିଲା । ଇଏ ଥିଲା ସବୁଠାରୁ ମରଣାନ୍ତକ ଯନ୍ତ୍ରଣା ।

ଦିନେ ସେ ନିଜେ ବି ଏଇ କାର୍ଯ୍ୟ ସଂପାଦନ କରିଥିଲା । ବିଶ୍ୱାସଘାତୀ କାର୍ଯ୍ୟକଳାପ ପାଇଁ ଦିବୂରୁନାଏକକୁ ମୃତ୍ୟୁଦଣ୍ଡ ଦିଆଯାଇଥିଲା ତା'ରି ଦ୍ୱାରା । ଭାବିଲାବେଳକୁ ଝାଳେଇଗଲା ଧରପୁର ମାଟିର ସେଦିନର ହୁଣ୍ଡା ଅପଦାର୍ଥ ପୁଅ ଅବନୀ ଓରଫ ମନିଷ ଓରଫ କୁମାର । କି ନିଷ୍ଠୁର ଲୋମହର୍ଷଣକାରୀ ଦୃଶ୍ୟ ସିଏ । ନିରପରାଧ କଞ୍ଚା ମଣିଷଟାକୁ ସିଧାସଳଖ ଆଖି ଆଗରେ ଗୋଡ଼ ହାତ ବାନ୍ଧି ଠିଆକରି ଗୁଳି ମାରିଥିଲା ସେ । ହାତ ଥରିଯାଇଥିଲା, ରୋକି ହେଇଯାଇଥିଲା ନିଃଶ୍ୱାସ ସେଇଦିନ ହିଁ ତ ସେ ପ୍ରଥମକରି ହତ୍ୟାକାରୀ ସାଜିଥିଲା । ଦଳର ନିର୍ଦ୍ଦେଶ ଆଣିଥିବା ଲୋକଟା ତା' ପିଠିରେ ସାବାସି ଦେଇ ଚାଲିଯାଇଥିଲା ଏବଂ ସେ ଆଞ୍ଚଳିକ ସ୍ତରରେ କ୍ୟାଡ଼ର ଶ୍ରେଣୀଭୁକ୍ତ ହେଲା ବୋଲି ଜଣେଇ ଦେଇଥିଲା ସେଇ ଦୁର୍ଦ୍ଦାନ୍ତ ଲୋକଟା । ସେ ଆଶ୍ଚର୍ଯ୍ୟ ହେଇ ଚାହିଁଥିଲା ସେଇ ମଣିଷଟାକୁ କିଛି ସମୟଧରି । ସେଇ ମୁହୂର୍ତ୍ତରେ କିମିତି ତା'ର ଭିନ୍ନ ଗୋଟିଏ ଭାବାନ୍ତର ସୃଷ୍ଟି ହେଉଥିଲା ମନ ଭିତରେ । ସେଇ ପର୍ଯ୍ୟନ୍ତ ତା'ର ଧାରଣା ଥିଲା ଯେ, କିଛି ଭଲ [illegible] କଲେ ନାଁ ମିଳେ, ବାହାଦୁରି ମିଳେ, ପୁରସ୍କାର ମିଳେ,

Digitized by PPRACHIN, SOA

ଦରମା ବଢ଼େ- ପ୍ରଶଂସା କରନ୍ତି ସମସ୍ତେ । ଏଇ କିଛି ସମୟ ପୂର୍ବରୁ ସେ ଯୋଉ ନାରକୀୟ କର୍ମ ସଂପାଦନ କଲା, ସେଥିରେ ସାବାସି ପାଇବାର କ'ଣ ଥିଲା ବରଂ ସେ ନିଜକୁ ନର୍କ ଭିତରକୁ ଠେଲିଦେଲା ସିନା, ତା'ର କି ଅଧିକାର ଥିଲା ଗୋଟାଏ ଜିଅନ୍ତା ମଣିଷକୁ ମାରିବା ପାଇଁ ? ଅନ୍ୟ ପ୍ରକାରେ କହିଲେ ସେ ବଡ଼ ହେଲା କି ଛୋଟ ହେଲା, ପଶୁ ହେଲା କି କଂସେଇ ହେଲା, ତା'ର ଫରକ ସେ ଅନୁଭବ କରିପାରି ନଥିଲା ସେଇ ମୁହୂର୍ତ୍ତରେ - ତା' ଚେତନା ବରଫ ପାଲଟି ଯାଇଥିଲା, ଝିମାଧରି ଯାଇଥିଲା । କିଛି ଅନୁଭବ ହିଁ ନଥିଲା ବରଂ କିଛି ସମୟ ପରେ ତାର ସେଇ ଭାବନା ପୁଷ୍କଳ ହେଇ ଅବଚେତନରେ ଭିନ୍ନ ଏକ ସ୍ପନ୍ଦନ ସୃଷ୍ଟି କରିବା ପୂର୍ବରୁ ହିଁ କରିଡୋରରେ ଆଇଁଷିଣିଆ ପବନ ଆଖି ପିଛୁଳାକେ କୁଆଡ଼େ ଉଡ଼େଇନେଲା ସେଇ ଚିନ୍ତା ଚେତନାକୁ ଏବଂ ସେ ପୁଣି ଫେରି ଆସିଲା ନିଜ ସ୍ଥିତାବସ୍ଥାକୁ । ପାଖରେ ଠିଆ ହେଇଥିବା ଲାଲବନ୍ଧୁମାନଙ୍କ ଭିତରେ କିଛି ମୁହୂର୍ତ୍ତ ପାଇଁ ଗୁଞ୍ଜରଣ ସୃଷ୍ଟି ହେଇଥିଲା । କିଏ ଜଣେ କହିଥିଲା ମଧ୍ୟ, "ଏଣିକି ଦଳପତିଙ୍କ ହାତବାରିସି ହେଲ ତୁମେ । ତାଙ୍କ ଆଦେଶ ନିର୍ଦ୍ଦେଶ ଏଣିକି ତମ ପାଖକୁ ଆସିବ - ଦାୟିତ୍ୱ ବଢ଼ିଗଲା । ସତକୁ ସତ ନିର୍ଦ୍ଦେଶ ମଧ୍ୟ ଆସିବାକୁ ଲାଗିଲା । ହେଲେ ସେ ସବୁ ନିର୍ଦ୍ଦେଶ ଭିତରେ ଆଉ ପଚିଶ ପଚାଶ ଅଭାଗା ମଣିଷଙ୍କର କୌଣସି ଉପକାରରେ ଲାଗିଲା ଭଳି ନିର୍ଯାସ ନଥିଲା - ସେ ରାସ୍ତା ଅବରୋଧ ହେଉ କି ଅପହରଣ ହେଉ, ହତ୍ୟା ହେଉ କି ଲୁଣ୍ଠନ, ଏଥିରେ ତ ଗରିବ ଆଦିବାସୀଙ୍କ ମୂଳିଆଟିର ମୂଳ ଦାବି, ମୂଳ ସମସ୍ୟାର ସମାଧାନ ନଥିଲା । ଉଭୟ ପକ୍ଷ ପରସ୍ପରକୁ ପ୍ରତିହତ କରିବାକୁ ହିଁ ଚେଷ୍ଟିତ ଥିଲେ । ହେଲେ ସେ କାହା ଆଗରେ ନିଜ ମୁକ୍ତ ବିଚାରକୁ ବ୍ୟକ୍ତ କରନ୍ତା ? ପ୍ରତିବାଦର ତ ଉପାୟ ନଥିଲା । ତା' ଦେହମୁହଁରେ ସେତେବେଳକୁ ରକ୍ତର ଛିଟା ଲାଗିସାରିଥିଲା ହତ୍ୟାକାରୀର ତାଲିକାଭୁକ୍ତ ହେଇ ତା' ନାଁ ଲିପିବଦ୍ଧ ଥିଲା ପୋଲିସ୍ ଖାତାରେ । ପୋଲିସ୍ ତାକୁ ଖୋଜୁଥିଲା ।

ଅବନୀର ଭାବନା ଅଟକିଗଲା ମୁହୂର୍ତ୍ତେ କିଛି ଗୋଟେ ଭାବୁ ଭାବୁ । ମନେପଡ଼ିଲା ସେଦିନର କଥା । ହେଉପଛେ ମୁହୂର୍ତ୍ତକ ପାଇଁ ସେ ଭାବିଥିଲା । ଆଜିଭଳି ଚିନ୍ତା କରିଥିଲା । ଅନେକ ପ୍ରଶ୍ନ ଆସି ଠିଆ ହେଇଥିଲା ତା' ଆଗରେ ।

ଏଇ ଦଳରେ ଯୋଗଦେବା ପଛରେ ତା'ର ଯୋଉ ମହତ୍ ଲକ୍ଷ୍ୟ ଥିଲା - ଦଳିତ ତଳିଆ ବର୍ଗର ମଣିଷଙ୍କ ପାଇଁ କିଛି କାମ କରିବା ସେମାନଙ୍କର ଅବଦମିତ ଭାବଭାବନା ଦାବି ଆଉ ଅଧିକାରକୁ ଠିକ୍ ଭାବେ ଉପସ୍ଥାପିତ କରିବାରେ ସାହାଯ୍ୟ କରିବ, ଅନ୍ତତଃ କାହିଁ, ଏ ଯାଏ ତ ସେ କିଛି କରିବାର ବାଟ ପାଇନି କି ସେଭଳି କିଛି ସୁଯୋଗ ସହିତ ଭେଟ ହେଇନି । ଅଥଚ ସେଇ ସୁଯୋଗର ଅପେକ୍ଷାରେ ଏତେ ଗୁଡ଼ାଏ ବର୍ଷ ନଷ୍ଟ ହିଁ

Digitized by PPRACHIN, SOA

ହୋଇଗଲା । ଓଲଟି ନିଜପାଇଁ ଏକ ସୁରକ୍ଷାର ବଳୟ ଗଢ଼ିବାକୁ ଯାଇ ଆତଙ୍କରାଜର ଆଶ୍ରା ନେଇ, ତା' ଭିତରେ ନିଜ ଅପରାଧ ସହିତ ନିଜକୁ ଓ ନିଜ ଦଳକୁ ପୋଲିସ୍ ଆଖିରୁ ବଞ୍ଚେଇ ରଖିବା ହିଁ ଏବେ ଏକମାତ୍ର ଉଦ୍ଦେଶ୍ୟ ହୋଇଯାଇଛି । ପ୍ରତିଟି ମୂଲ୍ୟବାନ ମୁହୂର୍ତ୍ତକୁ ସେ ଏଇଥିପାଇଁ କେବଳ ବିନିଯୋଗ କରୁଛି ଓ କରିଆସିଛି । ଆଉ କ'ଣ କରିଛି କି ସେ ?

ନିଜକୁ ନିଜେ ପ୍ରଶ୍ନକରି ହଡ଼ବଡ଼େଇ ଯାଇଥିଲା ଅବନୀ ଠିକ୍ ଆଜିଭଳି ସଂସାରର ସ୍ୱାଭାବିକ ରାସ୍ତା ଛାଡ଼ି ବଣଜଙ୍ଗଲ ଭିତରେ ହଜାରେ ପ୍ରତିବନ୍ଧକ ଦେଇ ବିପଦଆପଦକୁ ସାଥିକରି, ଗୋଟାଏ ନୂଆ ରାସ୍ତା ତିଆରି କରିବାର ଯୋଉ ପାଗଳପଣ ଥିଲା ତା' ଭିତରେ, ହଠାତ୍ ଯେମିତି ବେଲୁନ୍ ଭଳି ଫସ୍‌କିଯାଇ ଲୋଚାକୋଚା ହୋଇଯାଇଥିଲା । ଏବଂ ସେତିକିବେଳେ, ଚିନ୍ତା ଜଗତର ସେଇ ସଂକଟ ମୁହୂର୍ତ୍ତରେ ମନେପଡ଼ିଥିଲା ଦୁଇଟି ଦୃପ୍ତଆଖି- ଯିଏ ତାକୁ ବାରମ୍ବାର ଚେତେଇ ଦେଇଥିଲା ଏ ରାସ୍ତା ତମ ପାଇଁ ନୁହେଁ । ସେଦିନ ସେଇ ରାତିର ଅନ୍ଧାର ଭିତରେ କିଛି ମୁହୂର୍ତ୍ତ ପାଇଁ ସେ ପାଗଳ ଭଳି ଖୋଜି ହୋଇଥିଲା ସେଇ ବଉଳଫୁଲର ବାସ୍ନାକୁ । ହେଲେ ଭାବନା ପୁଷ୍କଳ ହୋଇ ତା' ଅବଚେତନରେ ଗଭୀର ପ୍ରତିକ୍ରିୟା ସୃଷ୍ଟି କରିବା ପୂର୍ବରୁ ପାହାଡ଼ି ପବନ ତାକୁ ଉଡ଼େଇ ନେଇଥିଲା ଶୂନ୍ୟରୁ ଶୂନ୍ୟକୁ ଏବଂ ସେ ଫେରିଆସିଥିଲା ନିଜ ସ୍ଥିତିକୁ । ସେଇ ଲାଲମାଟି ଉପରକୁ । ସମୟ ଓ ପରିସ୍ଥିତି ସାଥୀ ଦେଇ ନ ଥିଲା ସେଦିନ ।

ଉପରୁ ଦଳପତିଙ୍କ ନିର୍ଦ୍ଦେଶ ନେଇ ଆସିଥିଲା ଜଣେ ଲୋକ । ସେଇ ଛତିଶ ଘଣ୍ଟା ଭିତରେ ସେମାନେ ଛତିଶଗଡ଼ର ଅଠର ନମ୍ବର ଥାନା ଆକ୍ରମଣ କରି ଅସ୍ତ୍ରଶସ୍ତ୍ର ଲୁଣ୍ଠନ କରିଥିଲେ । ତା' ସହିତ ମାଓବାଦୀଙ୍କ ପରମଶତ୍ରୁ ଥାନା ଇନଚାର୍ଯ୍ୟ ଦେବୀଦାସଙ୍କୁ ହତ୍ୟା ମଧ୍ୟ କରିଥିଲେ । ଅଭିଯାନ ସଫଳ ହୋଇଥିଲା । ଦଳ ଭିତରେ ଖୁସିର ଢେଉ ଖେଳି ଯାଇଥିଲା । ଫେରିବା ରାସ୍ତାରେ ଟାୱାର ମଧ୍ୟ ଉଡ଼େଇ ଦେଇଥିଲେ । ହେଲେ ସେ ନିଜେ ଅସନ୍ତୋଷର ନିଆଁରେ କୁହୁଳି ଥିଲା । କାହିଁକି କେଜାଣି ଦେବୀଦାସ ଛାତିରେ ଗୁଳିବିଦ୍ଧ କଲାବେଳକୁ ତା' ହାତ ଥରିଯାଇଥିଲା । କିଏ ଯେମିତି ତା' ଭିତରୁ ପ୍ରଶ୍ନ କରିଥିଲା, ଇଏ କ'ଣ ତୋ'ର ଦେଶସେବା ? ଯୋଉମାନଙ୍କ ପାଇଁ ନିଷ୍ଠା ଆଉ ସମର୍ପଣ ଭାବ ନେଇ ତୁ ଲଢୁଛୁ, ଏଇ ଅଫିସର ଦେବୀ ଦାସ ମଧ୍ୟ ସେଇ ନିଷ୍ଠା ଆଉ ସଚ୍ଚୋଟତାକୁ ନେଇ ତାକୁ ପ୍ରତିହତ କରୁଛି, ଲଢୁଛି । ତୁ ଦଳ ପାଇଁ ସମର୍ପିତ, ସେ ସରକାର ଏବଂ ସାଧାରଣ ଜନତା ପାଇଁ ସମର୍ପିତ । ଦେଶରକ୍ଷା ପାଇଁ ସେ ଅଙ୍ଗୀକାରବଦ୍ଧ । ମାତ୍ର ତିରିଶ ବତିଶ ବର୍ଷର ଯୁବକ । ବଞ୍ଚିଥିଲେ ଦେଶ ଅନେକ ଉପକୃତ ହୋଇଥାନ୍ତା । ତା' ଭଳି କମିଟେଡ୍ ଅଫିସରମାନଙ୍କୁ ହିଁ ତ ଦେଶ ଚାହେଁ । ଅଥଚ ତୁ ଗୋଟାଏ ଆତଙ୍କବାଦୀ

Digitized by PPRACHIN, SOA

ଦଳ ପାଇଁ ତାକୁ ମାରିଦେଲୁ । ମାରିଦେଲୁ ତାକୁ କାହିଁକି ? ଏଥିରେ କାହାର କେତେ ଲାଭ ହେଲା ? ମଣିଷଗୁଡ଼ାକ କ'ଣ କୁକୁଡ଼ା ନା ଛେଳି ? ଦଳ କହିଲା, ତୁ ମାନିନେଲୁ । ତୋ' ନିଜ ବିବେକ ବିଚାର କିଛି ନାହିଁ ? କିଏ ଦଳ ? ତମେମାନେ ଯାହାକୁ ନିରୀହ ପ୍ରଜା ବୋଲି କହୁଛ ସେମାନଙ୍କର ନିଜ ବିଚାର ଶକ୍ତି ଅଛି ? ପଦେ କଥା କହିବାକୁ ଯୋଉମାନଙ୍କର ଭୟ, ସେମାନେ ବିଚାର କରି ମୃତ୍ୟୁଦଣ୍ଡ ଦେଇପାରିବେ - ଇଏତ ଏକାବେଳକେ ଅବାସ୍ତବ । ସେମାନେ କେବେହେଲେ ମଣିଷର ରକ୍ତରେ ହୋରି ଖେଳନ୍ତିନି, ନାଚି ଉଠନ୍ତିନି । ତମେମାନେ ତ ସେମାନଙ୍କୁ ନଚଉଛ । ତା'ଛଡ଼ା ଏଠି କିଏ ରାଜା ଯେ ? ଏବଂ ସେ ନିଜେ, ସୁଦାମ ମାଷ୍ଟ୍ରଙ୍କ ସାନପୁଅ ଅବନୀ ପରିଡ଼ା, ଦେଶଦଶର କାମ କରିବ ବୋଲି ଗାଁମାଟି, ଭାଇଭଉଣୀ, ବିଧବା ମା'କୁ ତ୍ୟାଗ କରି ଆସି କୋଉ ମହତ୍ କାମଟିଏ ଅବା କରି ପକେଇଲା ? ନା, ଦେଶର ମୁଖ ଉଜ୍ଜ୍ୱଳ କଲା, ନା ବିଡ଼ମ୍ବିତ ମଣିଷର କିଛି ଉପକାର କଲା ? ନା, ନିଜେ କିଛି କରିପାରିଲା ବୋଲି ଆତ୍ମସନ୍ତୋଷ ପାଇଲା ? କୋଉ ସୁନାର ମୁକୁଟଟା ପିନ୍ଧେଇ ଦେବ କିଏ ତାକୁ ?

ଏତେ ପ୍ରଶ୍ନର ଉତ୍ତର ସେ କେବେଳ ଖୋଜି ପାଉଥିଲା 'କିଛି ନାହିଁ'ରେ ।

ସେଦିନ କ୍ୟାମ୍ପକୁ ଫେରିବା ପରେ, ମହିଆ, ଶିବୁ ଫିରିକା, ରାମୁ କେର୍କେଟୀ, ସୂର୍ଯ୍ୟ ସିଂ, ଧନିମୁଣ୍ଡା, ରାଘବ ସୁଲ୍ଲୁ ସହିତ ଏକାଠି ବସି ଆଲୋଚନା କରିଥିଲା ଏକାନ୍ତରେ । ସମସ୍ତଙ୍କ ମନ ଏକ ଥିଲା । ସୂର୍ଯ୍ୟ କହିଥିଲା, ଠିକ୍ କଥା, ଆମେ ଯୋଉ ଆଦର୍ଶ ଆଉ ଲକ୍ଷ୍ୟ ନେଇ ମାଓ ସଂଗଠନରେ ଯୋଗ ଦେଇଥିଲେ, ସେଇ ଲକ୍ଷ୍ୟ ତ ଆମଠୁ ଦୂରେଇ ଯାଉଛି । ମନେହେଉଛି ସଂଗଠନ ଓଲଟା ବାଟରେ କାମ କରୁଛି । ବିପ୍ଳବୀମାନେ କ'ଣ ନିହାତି ଲୁଚି ଲୁଚି କାମ କରନ୍ତି ? ପ୍ରାଣକୁ ତାଙ୍କର ଏତେ ଭୟ ? ସାମନାକୁ ଆସି ଦାବି କରିପାରିବେନି ଗାନ୍ଧୀ ମହାତ୍ମା ଭଳି ? ବିପ୍ଳବୀ ନାଁରେ ଆମେ ସବୁ ତ ଅପରାଧୀ । ଆହୁରି ଅପରାଧ ହିଁ କରୁଛୁ । କିଏ ଆମକୁ କ୍ଷମା ଦେବ ? ଧନିମୁଣ୍ଡା କହିଲା- ଆମେ ସେଦିନ ଶୁକ୍ରୁ ଗୁଡୁଙ୍ଗାରଝିଅ ବାହାଘରରେ ରନ୍ଧା ଯାଉଥିବା ସବୁ ଖାଦି ଲୁଟି ଆଣିଲୁ ଦଳପାଇଁ । କେତେ କାନ୍ଦିଲା ଲୁକଟା । ଜମିବନ୍ଧା ପକେଇ ଟଙ୍କା ଆଣିଥିଲା ସାଉକାରଠୁ - ଦି' ମୁଠା ଜାତିଭାଇଙ୍କୁ ଖୁଆଇବ ବୋଲି । ହେଲେ ଆମେ କିଛି ଭଲକାମ କଲୁନି । ତା'ର ଭାତ ଖାଇ ସେଦିନ ରାତିରେ ଇସ୍କୁଲ ଘର ଉଡ଼େଇଲୁ, ଲ୍ୟାଣ୍ଡମାଇନ୍ ଲଗେଇ ପୋଲିସ୍ ଜିପ୍ ପୋଡ଼ି ପୋଲିସ ଲୋକଙ୍କୁ ମାରିଲୁ । ଭଲକାମ ତ ହେଲାନି । ଆହୁରି ମନଶାନ୍ତି ହେଲାନି ବୋଲି ବରପିଲାକୁ ଗୁଳି ମାରିଦେଲୁ ଗୁଡୁଙ୍ଗାର ଝିଅ କେତେ ମୁଣ୍ଡପିଟି କାନ୍ଦୁଥିଲା । ଭାଇରେ, ମୋ' ପାଟିକୁ ଗୁଣ୍ଡେ ଭାତ ମଧ ଗଲାନି । ମୋ' ଭଉଣୀର ମୁହଁଟା ଦିଶିଯାଉଥିଲା । ତା'ର ଲାଗି ପଇସା ଯୁଗାଡ଼ କରିବାକୁ ତ ମୁଁ ଗୋଡ଼ କାଢ଼ିଥିଲି ଘରୁ ।

Digitized by PPRACHIN, SOA

ସେ ଟଟସ୍ଥ ହେଇଯାଇଥିଲା ସେଇ ଅନ୍ଧାର ଭିତରେ । ସଚେତ । ସୁରେଖା ପାଇଁ ସେ ତ ଆଉ କେବେ ଭାବିନି । ସେ କ'ଣ କରୁଥିବ, ବାହା ହେଲାଣି କି ନାହିଁ ? ବୋଉ କୋଉଠୁ ଯୋଗାଡ଼ କରିଥିବ ବରଘର ? ତା' ଗୋଡ଼ର ସେଇ ପୋଡ଼ା ଦାଗଟା ? ଅନେକ ଅନେକ ପ୍ରଶ୍ନ ଉଠିଥିଲା ମନ ଭିତରେ ସେଦିନ । ଭାବନା ଇଲିବିଲି ହେଇଯାଇଥିଲା । ଜୀବନ ସମସ୍ୟାର କୌଣସି ଗୋଟିଏ ହେଲେ ଅଙ୍କ ସେ ସହଜ ଧାରାରେ କଷିପାରୁ ନଥିଲା ସ୍କୁଲଦିନ ଭଳି । ସବୁ ଭୁଲ୍ ହେଇଯାଉଥିଲା ।

ଏବେ ତ ସେ ନୀଳବର୍ଣ୍ଣ ଶୃଗାଳ । ତାକୁ କିଏ ଚିହ୍ନିପାରିବେନି । ପାଖରେ ଠା' ଦେବେନି । କାରଣ ତା' ମୁହଁରେ ରକ୍ତର ଛିଟା, ଅପରାଧର କାଳି ବୋଳି ହେଇଯାଇଛି । ଏଇ କାଳିର ଦାଗ ତା' ପରିବାର ମୁହଁରେ ଲାଗିଯାଇଥିବ ହୁଏତ । ଆଙ୍ଗୁଠି ଦେଖାଉଥିବେ ସମସ୍ତେ ସୁଦାମ ମାଷ୍ଟ୍ରଙ୍କ ପରିବାରକୁ - ଏଇ ହେଉଛି ଦାଗୀ ପରିବାର । ଛିଃ ଛିଃ ଲଜ୍ଜାରେ ଦୁହିଁ ହେଇଯାଉଥିବ ବୋଉର ଅନ୍ତରଟା ଭାବୁ ଭାବୁ ତା' ହାତ ମୁଠା ମୁଠା ହେଇଯାଇଥିଲା । କାହିଁକି ସେ ବଞ୍ଚିଛି ଯେ ? କାହାପାଇଁ , କ'ଣ କରିବ ବୋଲି ? ଆଖି ନାଲି ପଡ଼ିଯାଇଥିଲା । ଘନ ଘନ ଦୀର୍ଘଶ୍ୱାସ ଛାଡ଼ିଥିଲା ସେ । ସାଥୀମାନେ ବ୍ୟସ୍ତ ହେଇଉଠିଥିଲେ ତା'ର ପ୍ରତିକ୍ରିୟା ଦେଖି । ସେ କିନ୍ତୁ ମନେ ମନେ ସ୍ୱଗତୋକ୍ତି କରିଥିଲା- ଏତେ ବିସ୍ଫୋରଣ, ଏନ୍‌କାଉଣ୍ଟର, କମ୍ବିଂ ଅପରେସନ ଭିତରେ ବି ତା' ଜୀବନ ଯାଇନି, କିମିତି କେଜାଣି ଇଚ୍ଛା ନାହିଁ ଆଉ ବଞ୍ଚିବା ପାଇଁ । ଆହୁରି କେତେ କ୍ଷତି କରିବ ସେ ଆପଣା ଦେଶର ମଣିଷମାନଙ୍କର । ମା' ଭଉଣୀଙ୍କୁ କେତେ କଷ୍ଟ ଦେବ... ସମ୍ଭାଳି ପାରିନଥିଲା ନିଜ କୋହକୁ । ତା' ଆଖି ଲୁହରେ ଲୁହ ମିଶେଇ ସେଦିନର କଳାଘୁମର ଆକାଶ ବି କାନ୍ଦିଥିଲା ହଠାତ୍ ଟୁପ୍ ଟୁପ୍ ହେଇ ।

ରାତିର ଅନ୍ଧାର ଆହୁରି ଘନୀଭୂତ ହେଇ ପ୍ରସରି ଯାଉଥିଲା ତା' ଭଳି ବିଡ଼ମ୍ବିତ ଜୀବନମାନଙ୍କ ଚେତନ ଓ ଅବଚେତନ ଭିତରକୁ କ୍ରମଶଃ । ସେଇ ପାହାଡ଼ର ପଥର ଶେଯ ଉପରେ ଆକାଶ ତଳେ ଶୋଇ ପଶ୍ଚାତାପର ପାଉଁଶ ନିଆଁରେ କୁହୁଳୁ ଥିଲେ ଆହୁରି କେତେ ଶିବୁ, ରାମୁ, ଅବନୀମାନେ କେଜାଣି କହି ନପାରିବା ଓ ସହି ନପାରିବାର ଯନ୍ତ୍ରଣାକୁ ଅନ୍ଧାର ବ୍ୟତୀତ ଆଉ ଅଧିକା କିଏ ବୁଝିପାରିବ । ହଠାତ୍ ଭୂତ ଲାଗିଲା ଭଳି ଅନ୍ଧାର ଭିତରକୁ ଚାହିଁ ପ୍ରଶ୍ନ କରିଥିଲା ସେ - ଏମିତି କିମିତି ଭୁଲ ହେଇଗଲା ତା'ର ରାସ୍ତା ବାଛିବାରେ ଯେ, ଫେରିବାର କିମ୍ବା ସୁଧାରିବା ପାଇଁ ବାଟ ହିଁ ରହିଲାନି ? ସୂର୍ଯ୍ୟ ଚମକି ପଡ଼ିଲା, ତୁ କ'ଣ ପାଗଳ ହେଇଗଲୁ କି ଅବନୀ, ଅନ୍ଧାରର ବି କାନ ଅଛି ଆଖି ଅଛି, ଭୁଲିଯାଉଛୁ ତୁ । ପ୍ରତିକ୍ରିୟାଶୀଳ ହେବାର ଆଉ କିଛି ମାନେ ନାହିଁ ଏବେ କି ଭୁଲ ଠିକ୍ ବାଛିବାର ବେଳ ନାହିଁ ଆଉ । ଯେଉଁ ରାସ୍ତାରେ ପାଦ ରଖିଛେ, ସେଇଟା ସବୁବେଳେ

Digitized by PPRACHIN, SOA

ବିପଦପୂର୍ଣ୍ଣ । ଆମକୁ ଖୁବ ସତର୍କତାର ସହିତ ଏଇ ରାସ୍ତା ଅତିକ୍ରମ କରିବାକୁ ପଡ଼ିବ । ନିଜକୁ ସ୍ଥିର କର । ମନେ ଅଛି ନା, ରାତି ପାହିଲେ ରାସ୍ତା ଅବରୋଧ ହେବ, ଡାକରା ଦିଆଯାଇଛି । ଅନ୍ଧାର କଟିବା ପୂର୍ବରୁ ବ୍ୟାନର ପୋଷ୍ଟରଗୁଡ଼ାକୁ ସେଇ ଜାଗାମାନଙ୍କରେ ପହୁଞ୍ଚେଇବାକୁ ହେବ । ହୁଏତ ଗଛକଟା ସରିଥିବ । ଏଥର ଟିକିଏ ବିଶ୍ରାମ ନେବା ଚାଲ ।

ସେ ଆହୁରି ବିରକ୍ତ ହୋଇଯାଇଥିଲା । ଅବରୋଧ ! କ'ଣ ମାନେ ଏଇ ଅବରୋଧର ? କାହାର ଏଥିରେ ଉପକାର ହେଉଛି କହିଲୁ ଭାଇ ? ଆମ ଗରିବ ଆଦିବାସୀ ଭାଇ ହିଁ ମରୁଛି ଭୋକ ଉପାସରେ । ଆମେ ଉଦ୍ଦେଶ୍ୟହୀନ ଭାବେ ଦେଶର ପୋଲ, ରାସ୍ତାଘାଟ, ଥାନା, ସ୍କୁଲଘର, ରେଳଲାଇନ୍, ଡାକ୍ତରଖାନା ଉଡ଼େଇ ଦେଉଛୁ । ଯୋଉ ଟିକିଏ ଉନ୍ନତି ହେଉଥିଲା ବିଚରା ଜଙ୍ଗଲ ମଣିଷର ଜୀବନଯାତ୍ରାରେ ସେତକ ବି ଠପ୍ । କୋଉଥିପାଇଁ ଆମର ଏଇ ବିଦ୍ରୋହ ? ଜମିର ଫସଲ ତ ଆମେ ଲୁଟିଆଣୁଛୁ ବିଭିନ୍ନ ବାଟରେ, ଗରିବ ଚାଷୀ କ'ଣ ଖାଇ ବଞ୍ଚିବ ? ଜଙ୍ଗଲ ପାହାଡ଼ର ମଣିଷ ଏକାଠି ମିଳିମିଶି ଚଳୁଥିଲେ । ସେମାନଙ୍କର ଜୀବନଧାରା ଝରଣା ଭଳି ସହଜ ଓ ସ୍ୱଚ୍ଛ ଥିଲା । ଆମେ ହିଁ ବିଦ୍ରୋହ, ବିପ୍ଳବ ନାଁ ଦେଇ ସେମାନଙ୍କ ଭିତରେ ଫାଟ ସୃଷ୍ଟି କଲୁ- ବିଚରା ନିରୀହ ଆଦିବାସୀର ମଗଜ କାହିଁ ସଭ୍ୟ ଚତୁର ମଣିଷର କୂଟନୀତିକୁ ବୁଝିପାରିବ । ଆମେ ସୁବିଧାବାଦୀ । ଆମର କୌଣସି ଦାୟିତ୍ୱ ନାହିଁ ସେମାନଙ୍କ ପାଇଁ । କେବଳ ଆତଙ୍କରାଜ ହିଁ ସୃଷ୍ଟି କରି, ସେମାନଙ୍କୁ ଅବଦମିତ କରି ରଖିଛୁ । ଯୋଉମାନଙ୍କ ହାତରେ ଶାସନ କ୍ଷମତା, ସେଠି ଏମାନଙ୍କ ଦାବି ଠିକ୍ ପହଞ୍ଚି ପାରୁନି... ଅଥବା ଆମେ ଲକ୍ଷ୍ୟଭ୍ରଷ୍ଟ ହେଇଛୁ ନିଜ ସ୍ୱାର୍ଥ ପାଇଁ । ଆମର କିଛି ସଂକଳ୍ପ ନାହିଁ, ନା ବର୍ତ୍ତମାନ ପାଇଁ ନା ଭବିଷ୍ୟତ ପାଇଁ । ଏ ବ୍ୟବସ୍ଥାକୁ ମୁଁ ସ୍ୱୀକାର କରିପାରୁନିରେ ଭାଇ ଭାରି କଷ୍ଟ ହେଉଛି ମନରେ ଏଇସବୁ କ୍ରୂର ଆଦେଶକୁ କାର୍ଯ୍ୟକାରୀ କଲାବେଳକୁ... । ରାଘବ ହାତଠାରି ସଂକେତ କଲା... ହଠାତ୍ ଆଲୋଚନା ବନ୍ଦ ହେଇଗଲା, ବାହାରେ କିଛି ଗୋଟାଏ ଶବ୍ଦ । ଚାପା ଧ୍ୱନି ଗୁଞ୍ଜରଣ... କିମ୍ବା ପାଦଶବ୍ଦ । ରାତିର ନିରବତା ଭିତରେ ବି ବାରି ହେଇଯାଉଥିଲା ସେ ଓ ତା'ର ସହଯୋଗୀମାନେ ସଚେତନ ହେଇଉଠିଥିଲେ । କିଏ ସେମାନଙ୍କ କାର୍ଯ୍ୟକଳାପ ଉପରେ ନଜର ରଖୁଛି କି ଆଉ ? ହେ ଭଗବାନ, ଅଜଣା ଭୟରେ ଶିହରି ଉଠିଥିଲେ ସମସ୍ତେ । କୋଉ ସଂଜପହରେ ରୋଟାମୋଟା ଅଧାପେଟ ଭାତଡାଲି ଗଣ୍ଡେ ଗଣ୍ଡେ ଖାଇଥିଲେ । ହଜମ ହେଇଯାଇଥିଲା ରାତିଅଧ ବେଳକୁ । ଭୋକିଲା ପେଟ ଗର୍ଜୁଥିଲା, ତା' ସହିତ ମନର ଅସନ୍ତୋଷ ଏବେ ଭୟ । ଠିକ୍ ଅନ୍ଧାର ରାତିରେ ବାଘ ମାଡିଲା ଭଳି ଭୟ ଆଉ ବାଘର ହିଂସ୍ରତା - ଉଭୟେ ସମାନ ଏଇ ତ

Digitized by PPRACHIN, SOA

ଜୀବନ ସେମାନଙ୍କର । ମୁହୂର୍ତ୍ତ ମୁହୂର୍ତ୍ତ ହେଇ ଜୀବନ ବଞ୍ଚିବା । ବଞ୍ଚିବା ପାଇଁ ସମୟ କିଣିବା । କିଣୁ କିଣୁ ସମୟ ସରିଯିବା ।

କିଛି ସମୟ ତଟସ୍ଥ ରହିଲା ପରେ, ରାଘବ ବାହାନା କରି ଉଠିଗଲା ବାହାରକୁ । ଅନ୍ଧାର ବିଲିବିଲି । କିଛି ସ୍ପଷ୍ଟ ଦିଶୁନଥିଲା କିଛି ସମୟ ଆଗରୁ ବର୍ଷା ହେଇଯାଇଥିଲା ଟିକିଏ, ଭିଜା ମାଟିର ଗନ୍ଧ ସହିତ ପବନରେ ବଣୁଆ ଫୁଲର ତୀବ୍ର ବାସ୍ନା । ଦୂରରେ ଝଙ୍କାଳିଆ ବରଗଛ ମୂଳେ କିଛି ଗୋଟାଏ ହଲଚଲ ହେଲାଭଳି ମନେହେଲା । ଛାଇ ? ରାଘବ ଆଖି କାନକୁ ନିବିଷ୍ଟ କଲା । କିଛି କଥାବାର୍ତ୍ତା ନିଶ୍ଚୟ... ନା, କାନ୍ଦୁଥିଲା କିଏ କେଜାଣି, ଠିକ୍ ବୁଝିପାରିଲାନି । ପାଖକୁ ଯିବା ଉଚିତ ହେବ କି ନ ହେବ ଭାବୁ ଭାବୁ ସେ ବରଗଛର ନିକଟବର୍ତ୍ତୀ ହେଇଯାଇଥିଲା ସତର୍କତାର ସହିତ । କାନ ଡେରିଲା ସୁଁ ସୁଁ କାନ୍ଦଣାର ଶବ୍ଦ । ନିଶ୍ଚୟ କୌଣସି ଅଶରୀରୀ ନୁହେଁ । ଝିଅଟିଏ କାନ୍ଦୁଛି । ଅନ୍ଧାର ରାତିର ପରିବେଶକୁ କରୁଣତର କରି କାନ୍ଦୁଛି ଅଭାଗୀ । କାହିଁକି ? କିଏ ଏଇ ଝିଅ ? ନିଜ ଦଳର... ନା... ତା' ନିଜ ଭିତରେ ଅନେକ କାଳଧରି ନିର୍ଜୀବ କାଠ ପାଲଟି ଯାଇଥିବା ସତ୍ତାଟା ହଠାତ୍ ଚେତନା ପାଇ ଚହଲି ଉଠିଲା । ଚକିତ ହେଲା ରାଘବ । କୋଉଠୁ ଧରାହେଇ ପଶିଆସିଛି କି ନୂଆ ଝିଅଟି । ଆହା ! ଏଠି ତ ଭାବାବେଗର କିଛି ମାନେ ନାହିଁ । ମଣିଷ ରକ୍ତରେ ଯେଉଁଠି ହୋରି ଖେଳା ହୁଏ ସେଠି ଲୁଣିଆ ଲୁହର ସ୍ଥାନ ନାହିଁ । ତଥାପି ପଥର ଫାଟି ପାଣି ଝରୁଛି । କିଛି ଗୋଟାଏ ଅଘଟନ ଘଟିଛି ନିଶ୍ଚୟ । ଆକାଶରେ ଜହ୍ନ ନଥିଲା । ତାରାର କ୍ଷୀଣ ଆଲୁଅରେ ଅନୁମାନ କଲା ଦୁଇଟି ଛାଇ । ନାରୀର । ଇଚ୍ଛା ହେଉଥିଲା, ପାଖକୁ ଯାଇ ଘଟଣା କ'ଣ ଜାଣିବାକୁ । ହେଲେ ସାହସ ହେଉନଥିଲା । ଦଳର ବିଶେଷ ନିଷେଧାଦେଶ ରହିଛି । ତଥାପି କୌତୂହଳ ଦାନା ବାନ୍ଧୁଥିଲା । କିଛି ସମୟ ସତର୍କତାର ସହିତ ଗୋଟିଏ ବଣୁଆଗଛ ଉହାଡ଼ରେ ଠିଆହେଇ ଛାଇ ଦୁଇଟି ଉପରେ ଦୃଷ୍ଟି ନିବଦ୍ଧ କଲା । ପୋଲିସର ଚାଲ୍ ବି ତ ହେଇପାରେ । ନିଶା ଗର୍ଜୁଥିଲା ସାଇଁ ସାଇଁ ହେଇ । ପାହାଡ଼ୀ ପବନରେ ବଣୁଆ ଫୁଲର ବାସ୍ନା ଘ୍ରାଣେନ୍ଦ୍ରିୟକୁ ଉତ୍ତେଜିତ ବି କରୁଥିଲା ।

ଏପଟେ ଅବନୀ ଆଖିରେ ପଲକ ପଡୁନଥିଲା – ନିଦର ବାହାନା କରି ପଡ଼ିରହିଥିଲା ପଥର ଚଟାଣ ଉପରେ । ଶୀତ ବର୍ଷାଋତୁରେ ସେମାନେ ତମ୍ବୁ ବ୍ୟବହାର କରନ୍ତି ସୁବିଧା ଥିଲେ ନଚେତ୍ ଖୋଲା ଆକାଶ ଆଉ ପଥର ଚଟାଣ । ଏକାଠି କେହି ରହନ୍ତିନି । ଦଳର ନିର୍ଦ୍ଦେଶରେ ଏମିତି କେତେ ରାତି ଆଖିରେ ପଲକ ନପକାଇ ପହରା ଦେଇଛି ଘନ ଜଙ୍ଗଲ ଭିତରେ ଦଳର ନେତାମାନଙ୍କୁ ସୁରକ୍ଷା ଦେବାପାଇଁ ନିଜ ଜୀବନକୁ ପାଣିଛଡ଼େଇ । ନିଜକୁ ନିଜେ ଟିପ୍ପଣୀ କଲା ଅବନୀ, ସୁଦାମ ମାଷ୍ଟର ପୁଅର ଜୀବନଟା କ'ଣ ଗୋଟାଏ ଜୀବନ । ଛାଡ଼ ସୁଖ ନିଦ ତ ସେ ଭୁଲିଯାଇଛି ଅନେକ ଦିନରୁ ।

Digitized by PPRACHIN, SOA

ତେବେ ନିଦର ବାହାନା ଭିତରେ ସେ ଲକ୍ଷ୍ୟ କରିଥିଲା, ରାଘବ ବାହାରକୁ ଯିବା ଫେରିବା ବିଳମ୍ବ ହେବା ଦେଖି ମନ ସନ୍ଦିଗ୍ଧ ହେଉଉଠିଲା କିଛି ଅଘଟନ ଘଟିଲା କି ? ଅଜଣା ବିପଦ ତ ପଥର ସନ୍ଧିରେ ଲୁଚି ରହିଥାଏ । ଯଥେଷ୍ଟ ସତର୍କତା ଅବଲମ୍ବନ କରି ସେ ରାଘବକୁ ଅନୁସରଣ କରୁ କରୁ ଗଛମୂଳେ ଭେଟିଲା ।

ରାଘବ ନିରବ ରହିବାକୁ ସଂକେତ କରି, ବରଗଛମୂଳକୁ ଅଙ୍ଗୁଳି ନିର୍ଦ୍ଦେଶ କଲା । ଚକିତ ହେଲା ଅବନୀ- ଆଶ୍ଚର୍ଯ୍ୟ କରିଦେଇଥିଲା ଘଟନାଟା ତାକୁ । ଦୁହେଁ କଥାବାର୍ତ୍ତା ହେଇ ନିଷ୍ପତ୍ତି ନେଇଥିଲେ ସେମାନଙ୍କ ନିକଟକୁ ଯିବାକୁ । ଏବଂ ଯାଇଥିଲେ ମଧ୍ୟ ।

ସେଇ ରାତିର ଘଟଣା । ଦିନବାର ତାରିଖ କିଛି ମନେ ନାହିଁ । କାରଣ ଜଙ୍ଗଲରୁ ଜଙ୍ଗଲ, ପାହାଡ଼ରୁ ପାହାଡ଼ ଘୂରିବୁଲୁଥିବା, ଅଥବା ଆତ୍ମଗୋପନ କରିଥିବା ପରିଚୟ ହୀନ ଅପରାଧୀ ପାଇଁ ଦିନବାର ତାରିଖର ମାନେ ଥାଏ ନା । ସେମାନେ କେବଳ ଚିହ୍ନନ୍ତି ଦିନର ଆଲୁଅ ଏବଂ ରାତିର ଅନ୍ଧାରକୁ । ଦିନର ଆଲୁଅକୁ ସାମ୍ନା କରିବାର ସତ୍‌ସାହସ ସେମାନଙ୍କର ନାହିଁ ବୋଲି ରାତିର ଅନ୍ଧାରକୁ ଆପଣେଇ ନିଅନ୍ତି ଅନ୍ତରଙ୍ଗ ଭାବେ । ତାଙ୍କର ନିଜ ପରିଚୟ ହିଁ ନାହିଁ । ସେଇ ରାତି ବି ଆଜିଭଳି ଅନ୍ଧାର କଳା ଶାଢ଼ି ପିନ୍ଧିଥିଲା । ମନେପଡ଼ିଲେ ଏବେ ବି ରୋମମୂଳ ଟାଙ୍କୁରି ଉଠେ । ଛାତି ଥରିଯାଏ । ସେଇ ରାତିର ଅନ୍ଧାର ଆହୁରି ଅନେକ ଅଜଣା ରହସ୍ୟକୁ ଉନ୍ମୋଚିତ କରିଥିଲା ।

ପଙ୍କଜିନୀ ଓ ସରଳାର ଆଖିଲୁହରେ ଓଦା ହେଇଯାଇଥିଲା ରାତିର ଲମ୍ବା ପଣତ । ସେମାନଙ୍କ ସତ୍ୟପାଠ ତା'ର ଏତେ ଦିନର ସଂଚିତ ଧାରଣା ମୂଳରେ କୁଠାରଘାତ କରିଥିଲା । ଅନେକ ବର୍ଷ ତଳେ ଦିନେ ସୀମା ତାକୁ ଏଇ ଅନ୍ଧାରର ସୂଚନା ଦେଇଥିଲା ତା'ର ବିଶ୍ୱାସ ହେଇନଥିଲା । ଗୋଟାଏ ଜିଦ୍- ଗୋଟାଏ ଭ୍ରାନ୍ତଧାରଣାର ବଶବର୍ତ୍ତୀ ହେଇ ସେ ପାଦ ବଢ଼େଇଥିଲା ଏଇ ଅଜଣା ରାସ୍ତାକୁ । ସେ କେଡ଼େ ବୋକା ଥିଲା । ଝିଅଟିଏ ହେଇ ମଧ୍ୟ ସୀମା ଆଗପଛ ଦେଖିପାରୁଥିଲା, ପରିଣାମ କଥା ଭାବିପାରୁଥିଲା । ଅଥଚ ତା'ର ବୁଦ୍ଧିବୃତ୍ତି ସବୁ ଲୋପ ପାଇଯାଇଥିଲା । କେବଳ ଜିଦ୍ ପାଇଁ । ବାପା ଠିକ୍ କହୁଥିଲେ, ସେ ମୂର୍ଖ ଗଣ୍ଡମୂର୍ଖ । ତା' ଦ୍ୱାରା କିଛି ହେଇପାରିବନି । ଜୀବନରେ କିଛି କରିପାରିବନି । ଉତ୍ତରଣ ନାହିଁ ।

ସତରେ ବି ତ, କିଛି ସେ କରିପାରିଲାନି । ବୃଥା ହେଇଗଲା ଜୀବନଟା । ଆଲୁଅର ମଣିଷଟା ପଶିଆସିଲା ଅନ୍ଧାର ଭିତରକୁ । ଅନ୍ଧାରକୁ ସାଥିକରି ଅନ୍ଧାର ସହିତ

Digitized by PPRACHIN, SOA

ଖେଳିଲା । ଏବେ ଚାରିପଟେ କେବଳ ଅନ୍ଧାର ହିଁ ଅନ୍ଧାର । ସେଇ ଅନ୍ଧାର ପଙ୍କଜିନୀ, ସରଳାର ରୂପ ପରିଗ୍ରହ କରି ସେ ଦିନରାତିରେ ତା' ସାମ୍ନାରେ ଠିଆହେଇ ଅନ୍ଧାରି ଇତିହାସର ପୃଷ୍ଠା ଖୋଲି ପଢ଼ିଥିଲେ, ଖୋଜିଥିଲେ ମୁକ୍ତିର ମାର୍ଗ, ଟେନାଏ ଆଲୁଅ, ଗୋଟାଏ ସୁସ୍ଥ ପାରିବାରିକ ଜୀବନ, ଶିଶୁର ଦରୋଟି ହସ ଆଉ ସଂପର୍କର ଅନ୍ତରଙ୍ଗ ଡୋରି । ଅନୁରୋଧ କରିଥିଲେ- "ଦେଖେଇପାରିବ ଭାଇ ଆମକୁ ସେଇ ଆଲୁଅର ରାସ୍ତା ? ଆମେ ଅନ୍ଧାରରୁ ଆଲୁଅକୁ ଯିବାକୁ ଚାହୁଁ ଅନ୍ଧାର ଆମକୁ ତଣ୍ଟିଚିପି ଧରିଛି ବୁଢ଼ୀ ଅସୁରୁଣୀ ଭଳି", ପଙ୍କଜିନୀ ବିକଳ ହେଇ ତା' ପାଦଧରି ପକେଇଥିଲା । "ତମେ ଆମ ତ୍ରାଣକର୍ତ୍ତା ସାଜିବ ? ମୁକ୍ତି ଦେଇପାରିବ ଏଇ ନର୍କରୁ ?"

କିଂକର୍ତ୍ତବ୍ୟବିମୂଢ଼ ଅବନୀ, ସେଦିନ ଜୀବନର ପ୍ରଥମଥରପାଇଁ ସତେ ଯେମିତି ଅଗ୍ନିପରୀକ୍ଷାର ସମ୍ମୁଖୀନ ହେଇଥିଲା । ଦେହମନରେ ଶୋଷିତ ହେଇଥିବା ଅସହାୟ ଦୁଇ କିଶୋରୀ ଜୀବନ- ଭିକ୍ଷା ମାଗୁଛନ୍ତି । ତାକୁ ତ୍ରାଣକର୍ତ୍ତା, ଈଶ୍ୱର ମନେକରି ହାତଯୋଡ଼ି ଠିଆହେଇଛନ୍ତି ତା' ଆଗରେ । ଦୁହେଁ ବିପନ୍ନ, ବିପର୍ଯ୍ୟସ୍ତ । ଏଇ ପଙ୍କଜିନୀ, ସରଳା, ଲକ୍ଷ୍ମୀ, ବାସନ୍ତୀ ଭଳି କିଶୋରୀମାନେ ପୂରାପୂରି ଅଶିକ୍ଷିତା ନୁହନ୍ତି, ଗ୍ରାମାଞ୍ଚଳର ହେଲେ ବି ପାଠ ପଢ଼ିଛନ୍ତି, କିଛି କିଛି ଗୁଣର ଅଧିକାରୀ ମଧ୍ୟ । ଅଥଚ ଏଇ ଗୁଣର ପରିପ୍ରକାଶ ପାଇଁ କେବେ କିମିତି ସଭା, ସମିତି, ମଞ୍ଚ ସହିତ ସଂପର୍କ ଯୋଡୁ ଯୋଡୁ ସଂଯୋଗବଶତଃ ସାକ୍ଷାତ ହେଇଯାଏ ମାଓ / ସାମ୍ୟବାଦୀ ସଂଗଠକମାନଙ୍କ ସହିତ । କୈଶୋର ଓ ଯୌବନ ତ ସବୁବେଳେ ଉଦ୍ଦାମ, ବାଟ ଭୁଲେ ଟିକିଏ ପ୍ରଶଂସାରେ, ସ୍ୱପ୍ନ ଦେଖୁ ଦେଖୁ ବାଟଭୁଲି ପହଞ୍ଚିଯା'ନ୍ତି ଏଇ ଲାଲ କରିଡୋରରେ । ଜାଣିଲାବେଳକୁ ଅନେକ ଡେରି ହେଇଯାଇଥାଏ । ବିପ୍ଳବ ନାମରେ ପ୍ରତାରିତ ଏମାନେ । ହେଲେ ଅନେକ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱକୁ କ୍ୟାମ୍ପ ଭିତରେ ତୁଲାଇଥାନ୍ତି ଏମାନେ ।

ଠିକ୍ ସେମିତି ପଙ୍କଜିନୀ ଆଉ ସରଳା ଠିଆ ହେଇଥିଲେ ତା' ସାମ୍ନାରେ ସେଇ ରାତିରେ କିଛି ମାଗୁଣି ନେଇ । ଅଥଚ ଏଇ ମାଗୁଣି ସାଧାରଣ ନଥିଲା । ଯଦି ତାକୁ ଏଇ ଅବଳା ଦୁହେଁ ମଣିଷର ତାଜା ରକ୍ତ ମାଗିଥାନ୍ତେ ଦ୍ରୌପଦୀ ଭଳି କେଶ ପ୍ରକ୍ଷାଳନ କରିବାକୁ ତ, ମୁହୂର୍ତ୍ତଟିଏ ଲାଗିନଥାନ୍ତା ତାକୁ ଆଣିଦେବା ପାଇଁ କିନ୍ତୁ ସେମାନେ ଯେ, ତା' ଭିତରର ଦେବତ୍ୱକୁ ଜାଗ୍ରତ କରିବାକୁ ପରୋକ୍ଷରେ ଚାହୁଁଥିଲେ, ଈଶ୍ୱରଙ୍କ ନିଦ ଭାଙ୍ଗିବାର ପ୍ରୟାସ କରିଥିଲେ । ତା' ଭିତରେ ଈଶ୍ୱରଙ୍କୁ ଖୋଜୁଥିଲେ; ସେ କ'ଣ କରିଥାନ୍ତା ? ତା' ଭିତରେ ଦ୍ୱନ୍ଦ୍ୱର ସୂତ୍ରପାତ ହେଇଥିଲା ସେଇ ରାତିରେ । ହିଂସ୍ର ପଶୁ ଆଉ ଦେବତା ଭିତରେ ଦ୍ୱନ୍ଦ୍ୱଯୁଦ୍ଧ । ପିଲାଦିନେ ଶୁଣିଥିଲା କୋଉଠୁ ଅସୁର ନିଧନ ପାଇଁ ଈଶ୍ୱରଙ୍କୁ ଉଗ୍ରପଶୁ ରୂପ ଧାରଣ କରିବାକୁ ପଡ଼ିଥିଲା । କିନ୍ତୁ ଏବେ ପଶୁରୁ... ଦେବତା ।

Digitized by PPRACHIN, SOA

ବିଚିତ୍ର । ସମୟ ଆଉ ପରିସ୍ଥିତି ମିଶି ବିଚିତ୍ର ଖେଳ ସବୁ ଖେଳନ୍ତି ସତରେ । ଏଠି ଠିକ୍ ଭୁଲ୍ର ପ୍ରଶ୍ନ ନାହିଁ । ଆବଶ୍ୟକତା, ଅପରିହାର୍ଯ୍ୟତାକୁ ନେଇ ରୂପାନ୍ତର୍ଜ । କେବେ ଦେବତାରୁ ପଶୁ ତ କେବେ ପଶୁରୁ ଦେବତା, ଏ ପ୍ରକ୍ରିୟାର ଅନ୍ତ ନାହିଁ ଚାଲିଆସିଛି କାଳାନ୍ତର ଧରି । ହେଲେ ତା'ର ଏଇ ରୂପାନ୍ତରକୁ କେହି ମନେରଖିବେନି । ଅନ୍ଧାର ଭିତରେ ଲୁଚିଯିବ ସବୁ । କାରଣ ସେ ଅନ୍ଧାରକୁ ସାଥି କରିଛି ।

ରାଘବ କହିଥିଲା, "ସମ୍ଭବ ନୁହେଁ ଅବନୀ, ସାପ ଗାତରେ ହାତଦେବୁ, ବାଘ ଗୁମ୍ଫାରେ ପଶିବୁ ଜାଣୁ ଜାଣୁ । ଆମେ ନିଆଁ ସାଙ୍ଗେ ଖେଳୁଛେ । ପରିଣାମ ଜାଣିଛୁ ତ ? ରାଘବ ମିଛ କହୁନଥିଲା । ଅବନୀ ଜାଣିଥିଲା ପରିଣାମ ଭୟଙ୍କର ହେବ । କିନ୍ତୁ ମନା ବି ତ କରିପାରୁ ନଥିଲା । ଅନେକ ଦିନପରେ ସୁଯୋଗ ଆସିଛି କାହାର ଉପକାର କରିବା ପାଇଁ । ଆରତ ମୃଗୁଣୀ ଭଳି ହାତଟେକି ଠିଆ ହେଇଥିଲେ ଦୁଇଟି ଅସହାୟା ନାରୀ । ସେ କ'ଣ ଫେରେଇ ଦେବ ସେମାନଙ୍କୁ ? କିଛି ମୁହୂର୍ତ୍ତ ସେମିତି କଟିଯାଇଥିଲା ନିରବରେ । ଜଙ୍ଗଲ, ଆକାଶ, ଗଛପତ୍ର ସବୁ ଯିମିତି ନିଥର ନିଶ୍ଚଳ, ରାତିର ନିଶୁନତା ଭଳି । କିଛି ଯିମିତି ଘଟିବ ଅଥବା ଘଟିବାର ପୂର୍ବ ପ୍ରସ୍ତୁତି ପର୍ବ । ଅବନୀ ନିଜେ ଅନୁଭବ କରିଥିଲା କିଛି ଗୋଟାଏ ଭଙ୍ଗାଗଢ଼ା ଚାଲିଛି ତା' ଭିତରେ । ସେଦିନ ଅନନ୍ୟୋପାୟ ହେଇ ସେ ଭୁଲିଯାଇଥିବା ଈଶ୍ୱରଙ୍କୁ ଖୋଜିଥିଲା ବିକଳ ହେଇ । "ଆଲୁଅ ଦେଖାଅ ପ୍ରଭୁ । କୋଉଠି ଅଛ ତୁମେ" ଏବଂ ହଠାତ୍ ତା' ଭିତରର ହିଂସ୍ରପଶୁତା ବେକମୋଡ଼ି ଦେଇ ଶୋଇପଡ଼ିଲା ମାଟି ଉପରେ । ଏକ ଦିବ୍ୟଚେତନାର ଆଲୁଅ ଝଲସି ଉଠିଲା ତା' ମନର ଅନ୍ଧାରୀ ମୁଲକରେ । ଜାଗ୍ରତ ହେଲା ଅଦମ୍ୟ ସାହସ । ସେ ପାରିବ, ମୁକ୍ତ କରିପାରିବ ଏ ଦୁହିଁଙ୍କୁ ।

ରାଘବ ଚମକି ଉଠିଲା ଅବନୀର ମୁହଁକୁ ଚାହିଁ । ଦୀପ୍ତ ଆଖିରେ ଆଲୁଅ ଚମକି ଉଠୁଛି ସତେକି । ଈଶ୍ୱରଙ୍କ ଭଳି ପ୍ରତୀୟମାନ ହେଉଥିଲା ଅବନୀ ପଙ୍କଜିନୀ ଓ ସରଳାଙ୍କ ଆଖିରେ । ରାତିର ସେଇ ଶେଷ ପ୍ରହରରେ ଈଶ୍ୱରଙ୍କ ଭଳି ଅଭୟ ଦେଇଥିଲା ସେମାନଙ୍କୁ । ଆଜିତ ସେଭଳି କିଛି ସୁଯୋଗ ନାହିଁ । ପୁରୁଷ ଶିବିର ସଜାଗ ହେଲେଣି । କେହି କିଛି ସନ୍ଦେହ କରିବା ଆଗରୁ ଚାଲିଯାଅ ତମେ ଦୁହେଁ କ୍ୟାମ୍ପକୁ । ଆଗାମୀକାଲି ତୁମକୁ ମୁକ୍ତି ମିଳିବ ।

ରାଘବ ଚକିତ ହେଇଥିଲା ଅବନୀର ନିର୍ଭର ପ୍ରତିଶ୍ରୁତିରେ । ରାତ୍ରିଚର ପକ୍ଷୀ କୋଉଠି ବସି ହୁଁ ହାଁ କରି ଅନ୍ଧାର ସହିତ କଥା କହୁଥିଲା । ତା' ପରଦିନ ତ ମୁକ୍ତି ପ୍ରକ୍ରିୟା ସମ୍ଭବ ହେଇପାରି ନଥିଲା, ସମୟ ଓ ସୁଯୋଗକୁ ଅପେକ୍ଷା କରୁ କରୁ ଆହୁରି ସପ୍ତାହେ କଟିଯାଇଥିଲା ଅସ୍ଥିରତା ଏବଂ ମାନସିକ ଚାପ ଭିତରେ ।

Digitized by PPRACHIN, SOA

ହଠାତ୍ ଦିନେ ନିର୍ଦ୍ଦେଶ ଆସିଲା, ନିର୍ଦ୍ଦେଶ ସବୁ ଏମିତି ଶୂନ୍ୟରୁ ଆସିଲା ଭଳି ହିଁ ଆସେ । ଶୁଣିଲା ପରେ କେବଳ ଅକ୍ଷରେ ଅକ୍ଷରେ ପାଳନ କରିବା କଥା । କରାଯାଏ ମଧ୍ୟ । ନକଲେ ସିଧାସଳଖ ମୃତ୍ୟୁଦଣ୍ଡକୁ ସାମ୍ନା କରିବାକୁ ପଡ଼େ- ଶକ୍ତିଶାଳୀ ପ୍ରଜାକୋର୍ଟ, ଅମାନ୍ୟ କରିବାର ବାଟ ନଥାଏ ।

ନିର୍ଦ୍ଦେଶ ଥିଲା - ଏଇ ଜଙ୍ଗଲରୁ ଶିବିର ଉଠିବ ପୋଲିସ ଖବର ପାଇ କମ୍ବିଂ ଅପରେସନ ଆରମ୍ଭ କରିଛି । ଆଗରେ ବିପଦ । ବାସ୍ । ଲାଲବାହିନୀକୁ ମୁହୂର୍ତ୍ତେ ଲାଗିଲାନି ରାତାରାତି ଶିବିର ଭାଙ୍ଗିବାକୁ । କିଏ କୁଆଡ଼େ ଯିବେ, ସେ କଥା ବି ନିର୍ଦ୍ଦେଶ ଥିଲା ।

ସେଇ ଥିଲା ସୁବର୍ଣ୍ଣ ସୁଯୋଗ ପଙ୍କଜିନୀ ଓ ସରଳା ପାଇଁ । ଦୁହେଁ ଖସିଆସି ପାରିଥିଲେ କ୍ୟାମ୍ପରୁ । ଜଙ୍ଗଲ ସୀମା ପାର କରେଇବା ଦାୟିତ୍ୱ ସେ ନିଜେ ନେଇଥିଲା ଏବଂ ଫେରନ୍ତା ରାସ୍ତାରେ ଅପେକ୍ଷା କରିଥିଲା ରାଘବ । ତାକୁ ସାଙ୍ଗରେ ନେଇ ଯାଇଥିଲା ସାଗରିପଲ୍ଲୀର ରାମୁଡୁ ମୁଣ୍ଡା ଓ ତା' ପୁଅ ବିରଶୁକୁ ହତ୍ୟା କରିବାକୁ । ସେମାନେ ପୋଲିସ୍ ଇନ୍‌ଫରମର ଥିଲେ ବୋଲି ଖବର ମିଳିଥିଲା । ଗଳାକାଟି ନୃଶଂସ ଭାବେ ହତ୍ୟା କରିଥିଲେ ରାଘବ ଓ ତା'ର ଦୁଇ ସହଯୋଗୀ ।

ସେଦିନ ତା' ଭିତରର ଦିବ୍ୟସତ୍ତାଟି ଛଟପଟ ହେଇ ଅକଥନୀୟ ଯନ୍ତ୍ରଣା ଭୋଗ କରିଥିଲା । କିଛି କରିପାରିବାର ଅସହାୟତା ଭିତରେ । ତା'ପରଠୁ ଏଇ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ମଣିଷ ରକ୍ତରେ ଆଉ ହୋରି ଖେଳିନି । ଅନ୍ୟପ୍ରକାରେ କହିଲେ, ତା' ଉପରେ ଅନ୍ୟ ପ୍ରକାର ଦାୟିତ୍ୱ ଲଦି ଦିଆଯାଇଛି ବୋଲି, ସେ ବର୍ତ୍ତିଯାଇଛି ।

ତା'ର ଦି'ତିନି ଦିନପରେ ଦିନେ କିଏ ଜଣେ ଆସି ତାକୁ ଖବର ଦେଲା ଯେ, ଦୁଇଜଣ ମହିଳା ମାଓବାଦୀ ପୋଲିସ ନିକଟରେ ଆତ୍ମସମର୍ପଣ କରିଛନ୍ତି- ଏବଂ ମାଓ ଶିବିରରେ ମହିଳାମାନଙ୍କୁ ନିର୍ଯାତନା- ଖବରଟି ରାୟଗଡ଼ା ସମ୍ବାଦଦାତା ଦେଇଥିବା ଖବରକାଗଜରେ ପ୍ରକାଶ ପାଇଥିଲା । ତା' ସହିତ ଆହୁରି ଅନେକ ଚାଞ୍ଚଲ୍ୟକର ସମ୍ବାଦ ମଧ୍ୟ ପ୍ରକାଶ ପାଇଥିଲା । ଯାହା ସଂଗଠନ ଭିତରେ ନୈତିକ ଅଧଃପତନର ସୂଚନା ଦେଉଥିଲା ।

ଏକଥା ସତ ଯେ, ଦଳ ଭିତରେ ଅନେକ ନାବାଳକ ନାବାଳିକାଙ୍କୁ ସଭ୍ୟ ଭାବରେ ଗ୍ରହଣ କରାଯାଏ । ସେମାନଙ୍କୁ ଆରମ୍ଭରୁ ଅସ୍ତ୍ରଶିକ୍ଷା ଦିଆଯାଇଥାଏ ଏହା ବ୍ୟତୀତ ସେମାନଙ୍କ ମନସ୍ତତ୍ତ୍ୱକୁ ଏଭଳି ଭାବରେ ଧୋଇପୋଛି ତିଆରି କରାଯାଏ ଯେ, ସେଇ ଚପଳ ବୟସରୁ ହିଁ ସେମାନେ ନିଷ୍ଠୁର ନିର୍ମମ ହେଇ ଗଢ଼ିଉଠନ୍ତି । ଆବେଗ ସହିତ ସେମାନଙ୍କର ପରିଚୟ ନଥାଏ ।

Digitized by PPRACHIN, SOA

ଅବନୀ ଏକଥା ଭାବିଲା ବେଳକୁ ହିଁ ପ୍ରତିକ୍ରିୟାଶୀଳ ହେଉଉଠେ । ଏଇ ନୃଶଂଶତା ମଣିଷ ସମାଜକୁ ତଳିତଳାନ୍ତ କରିଦେବ । ଏହା କେବେ ବିପ୍ଳବ ହେଇପାରେନା । ମଣିଷକୁ ତା' ନିଜଭଳି ନିଜ ବିଚାରରେ ଗଢ଼ି ହେବାକୁ ଦିଆଯିବା ଉଚିତ । ତା'ପରେ ସେ ବାଛିନେଉ ନିଜ ରାସ୍ତା । ନହେଲେ ଦେଶ ଆଉ ଜାତିର ପ୍ରଗତି ଅସମ୍ଭବ ହେଇଯିବ– ଏଇ ବିଚାରକୁ ସେ କେବେ କିମିତି ସହଯୋଗୀଙ୍କ ଗହଣରେ ବ୍ୟକ୍ତ ବି କରିଛି । ତା'ର ପ୍ରତିକ୍ରିୟାରେ, ଯୋଉ ଚେତାବନୀ ତା' ପାଖରେ ଆସି ପରୋକ୍ଷରେ ପହଞ୍ଚି ଥିଲା, ସେ କଥା ଭାବିଲେ ତା' ଚେତନା ବରଫ ପାଲଟି ଯାଏ ଏବେବି । ଭାବେ ରାସ୍ତାଟା ହିଁ ଯେତେବେଳେ ଭୁଲ୍ ଭଲ ଫଳ ଆଶା କରିବା ବୃଥା । ବଂଧୁମାନେ ବୁଝାନ୍ତି, ପାଣି ଭିତରେ ଘରକରି ମଗର ସହିତ ବୈରୀଭାବ ପୋଷିଲେ କିମିତି ହେବରେ ଅବନୀ । ଏମାନେ ଯେ ଗଣତନ୍ତ୍ରର ସ୍ୱାଧୀନ ବିଚାରଧାରାକୁ ସ୍ୱୀକାର କରନ୍ତି ନାହିଁ ।

ଦୀର୍ଘଶ୍ୱାସ ନେଲା ଅବନୀ ପରିଡ଼ା । ଏସବୁ ପ୍ରଥମ ପ୍ରଥମ ଦଳରେ ଯୋଗ ଦେବା ବେଳର କଥା । ତା'ପରେ ସେ କେବେ ନିରୋଳାରେ ବସି ନିଜ ଜୀବନ ପୃଷ୍ଠାକୁ ଓଲଟେଇବାକୁ ସମୟ ପାଇନି ଆଜିଭଳି । କାରଣ ସେ ଅଶାନ୍ତ ଉଲ୍କା ଭଳି ଘୂରିବୁଲୁଛି ଅନ୍ଧାରୀ ଆକାଶରେ ଜଙ୍ଗଲରୁ ଜଙ୍ଗଲ । ମା' କୋଳର ଶାନ୍ତି ନାହିଁ ନିଶ୍ଚିନ୍ତରେ ଭାବିବାକୁ । ଆଜି ତାକୁ ସେଇ ସୁଯୋଗ ମିଳିଛି । ମା' କୋଳ ନହେଲା, ଜନ୍ମମାଟିର କୋଳ ତ ମିଳିଛି ଭାବିବାକୁ ।

ଅବନୀ ଭାବନା ସଳିତାକୁ ଆଉ ଟିକିଏ ତେଜି ଦେଲା । ଭାବନାମାନେ ଆଗପଛ ହେଇ ରୁଣ୍ଡ ହେବାକୁ ଲାଗିଲେ । ଏ ଭିତରେ କେତେ ଘଟଣା, ଦୁର୍ଘଟଣା, ଗୁଳିଗୋଳାବାରୁଦ ବିସ୍ଫୋରଣର ଛାତିଥରା ଆର୍ତ୍ତଚିତ୍କାର, ଗ୍ରେନେଡ୍‌ମାଡ଼, ଲୁଟତରାଜ, ଆତଙ୍କର ସଜବାଜ ସହିତ ଲୁହକୋହ ଦୀର୍ଘଶ୍ୱାସ ଆଉ ଅଭିସଂପାତକୁ ମିଶାଇ ଏକ ଅଭିଶପ୍ତ ଘୃଣ୍ୟ ବିସ୍ୱାଦିତ ଜୀବନଯାତ୍ରା ଓ ଭ୍ରାନ୍ତ ଆଦର୍ଶ ପଛରେ ଗୋଡ଼େଇ, କେବେ ଦିନେ ଗଭୀର ଭାବେ ଚିନ୍ତା କରିବାକୁ ସମୟ ପାଇନଥିଲା । ଏତେ ବର୍ଷର ଅଭିଯାନରେ ସେ ପାଇଛି କେତେ, ଜିତିଛି କ'ଣ । ଦେଶ ଆଉ ଜାତିକୁ ଦେଇଛି କ'ଣ ?

ସେଦିନର ଅନ୍ଧାର ରାତି ଯଦି ପଙ୍କଜିନୀ ଆଉ ସରଳା ସହିତ ସାକ୍ଷାତର ସୁଯୋଗ ଦେଇନଥାନ୍ତା, ତ ତା'ର ଏଇ ରୂପାନ୍ତର ସମ୍ଭବ ହେଇନଥାନ୍ତା । ଜାଗ୍ରତ ହେଇନଥାନ୍ତା ଚେତନା । ସେଇ ଦୁହେଁ ହିଁ ମୁକ୍ତିର ମାର୍ଗ ଖୋଜି, ତାକୁ ଏ ଦିଗରେ ଚିନ୍ତା କରିବାକୁ ବାଟ ଫିଟେଇ ଦେଲେ । ଏଇ କିଛି ମାସ ତଳେ ରାଘବ କେଉଁଝର ଡି.ଜି.ଙ୍କ ନିକଟରେ ଆତ୍ମସମର୍ପଣ କରିଛି ବୋଲି ଖବରକାଗଜରୁ ପଢ଼ି ସେ ଖୁସିରେ ଆତ୍ମହରା ହେଇପଡ଼ିଥିଲା । ବିଭିନ୍ନ ଶିବିରରୁ ଅନେକ ବନ୍ଧୁ ଆତ୍ମସମର୍ପଣ କରି ଦେଶର ମୁଖ୍ୟ ସ୍ରୋତରେ ମିଶିଲେଣି ।

Digitized by PPRACHIN, SOA

ଦଳରେ ଅସନ୍ତୋଷ ଜୁହୁଳୁଛି । ଅଥଚ ସଂକଟ ଟାଳିବା ପାଇଁ ନେତାମାନେ ଘନ ଘନ ବୈଠକ ଡାକି ଚେତାବନୀ ଦେଇଚାଲିଛନ୍ତି ସତର୍କତା ଅବଲମ୍ବନ କରିବା ପାଇଁ । ବିଭିନ୍ନ କରିଡୋରରେ ପୋଲିସ୍ ସହିତ ସାମ୍ନାସାମନି ମଧ୍ୟ ହେଉଛି । ଅବରୋଧ, ବନ୍ଦ ଡାକରା, ଗିରଫ, ଅପହରଣ, ମୁକ୍ତି ଜାମିନ୍ ବି ଚାଲିଛି - ଏଇ ଯୁଦ୍ଧର ଶେଷ ନାହିଁ କି ଫଳ ବି କିଛି ନାହିଁ । ଅସଂଖ୍ୟ ଜବାନ ବି ଟଳିପଡ଼ିଲେଣି ସାମ୍ନା ଯୁଦ୍ଧରେ ।

ଜବାନ୍ ଟଳିଲେ ଦେଶବାସୀ ଅନ୍ତତଃ ସହିଦର ସମ୍ମାନ ଦେଉଛନ୍ତି, ଜୀବନର ଅନ୍ତଟା ସମ୍ମାନଜନକ ହେଉଛି । ହେଲେ ସେମାନଙ୍କର ଅନ୍ତ...କେଡ଼େ ଦୟନୀୟ ଯେ କୌଣସି ଗୃହପାଳିତ ପଶୁଠାରୁ ବି ନ୍ୟୁନ । କେହି ଚାହିଁବେନି, କିଛି ଅଟକିବନି, ଲୁହ ଟୋପାଏ ବି ମିଳିବନି । ସେ ଦେଖିଛି ତା'ର ଲାଲବନ୍ଧୁମାନଙ୍କର ଅନ୍ତିମଯାତ୍ରା, କେଡ଼େ ଅସହାୟ କରୁଣ... ସତରେ । ତମେ ଥିଲ ତ ଥିଲ । ତମ ନିଃଶ୍ୱାସ ଟିକକ ମିଶିଗଲା ପବନରେ ତ, ତମ ନିଷ୍ପ୍ରାଣ ଶରୀରର କିଛି ଅର୍ଥ ନାହିଁ । ପଶୁ କୁକୁରଙ୍କ ଖାଦ୍ୟ ହୁଅ କି ମାଟିରେ ପୋକଜୋକ ହେଇ ମିଶ, ବଡ଼ ନିଷ୍ଠୁର, ନିର୍ମମ ଦର୍ଶନ । ପାଶବିକତା ବି ବେଳେ ବେଳେ ଓଲଟା ବାଟରେ ଭାବିହୁଏ । ଭାବୁ ଭାବୁ ତ ଭାବୁକକୁ ଦାର୍ଶନିକ କରିଦୋଳେ ।

ସେଇ ମୁହୂର୍ତ୍ତରେ ଅବନୀ ବି ଏକପ୍ରକାର ଦାର୍ଶନିକ ପାଲଟି ଯାଇଥିଲା ମା'ମାଟିର ପବିତ୍ର ସ୍ପର୍ଶରେ । ପାହାନ୍ତି ପବନର ହିଲ୍ଲୋଳରେ ସତେ ଯେମିତି ବୈରାଗ୍ୟର ଗୀତ କିଏ ଗାଉଥିଲା, ସୂଚେଇ ଦେଉଥିଲା ଜୀବନର ନକାରାତ୍ମକ ଦିଗକୁ । ଦୂରରୁ ଶୁଭିଲା ପୋଲିସ୍‌ର ହୁଇସିଲ । ସତର୍କ ହେଲା ଅବନୀର ଚେତନା ।

ରାତ୍ରିର ଶେଷପ୍ରହର । ଡ୍ୟୁଟିସାରି ଫେରୁଛି ପୋଲିସ୍ ଗାଡ଼ି ନିଷ୍ଚୟ ଥାନାରେ ରିପୋର୍ଟିଂ ଦେବ । ବାହାରକୁ ତ ସବୁ ଠିକ୍‌ଠାକ୍ ଚାଲିଛି ବ୍ୟବସ୍ଥା । ଗଲା ରାତିରେ କୌଣସି ଅଘଟଣ ଘଟିନି ବୋଧେ ।

ମନେ ମନେ ହସିଲା ସେ । କାଗଜ କଲମରେ ସବୁ ଏମିତି ଠିକ୍‌ଠାକ୍ ଚାଲେ । ଅଥଚ ଗଲା ରାତିରେ ଏଇ ଶହେ କିଲୋମିଟର ପଛରେ ହାଇୱେ ଉପରୁ ବିସ୍ଫୋରକ ନେଇ ଯାଉଥିବା ଟ୍ରକକୁ ସେ ଓ ତା'ର ସହଯୋଗୀମାନେ ଉଡ଼େଇ ଦେଇଥିଲେ । ସକାଳର ଖବରକାଗଜରେ ବଡ଼ ବଡ଼ ଅକ୍ଷରରେ ବାହାରିବ ସେ କଥା ନିଷ୍ଚୟ । ଆଉ ଦଳେ ଆଗରୁ ଯାଇ ଅପେକ୍ଷା କରିଛନ୍ତି ଦେଢ଼ଶହ କିଲୋମିଟର ଆଗରେ ଗୋଟାଏ ଜଙ୍ଗଲି ଷ୍ଟେସନରେ, ସାପ୍ତାହିକ ଏକ୍ସପ୍ରେସ୍‌ଟାକୁ ଉଡ଼େଇ ଦେବାପାଇଁ । ସେଥିରେ ଗୋଟାଏ ବାଟାଲିଅନ ଅର୍ଦ୍ଧସାମରିକ ସୁରକ୍ଷା ବାହିନୀ ଆସୁଛନ୍ତି କେନ୍ଦ୍ରରୁ ତାଙ୍କ ସହିତ ମୁକାବିଲା କରିବାକୁ । ସେଇ ଦଳରେ ଠିକ୍ ସମୟରେ ଯାଇ ତାକୁ ଯୋଉ ଦେବାକୁ ପଡ଼ିବ, କାମର ତଦାରଖ ପାଇଁ । ଲ୍ୟାଣ୍ଡମାଇନ୍ ସଂଯୋଗ କରିବା ଦାୟିତ୍ୱ ତା'ଉପରେ ।

Digitized by PPRACHIN, SOA

ଅଥଚ...ସେ ।

ଭୁଲିଯାଇଛି ତା'ର ପରିଚୟ । ସେ ଯେ ଜଣେ କ୍ୟାଡ଼ର ମାଓବାଦୀ । ଥାନାରେ ତା' ନାଁରେ ଗିରଫ ପରୱାନା ଝୁଲୁଛି । ଆଗରେ ଗୁରୁଦାୟିତ୍ୱ । ଦଳରେ ଅଖଣ୍ଡ ବିଶ୍ୱାସ ତା' ଉପରେ ଯେ, ସେ ନିଶ୍ଚିତ ଭାବେ ଦାୟିତ୍ୱ ସଂପାଦନ କରିବ । ଅଥଚ ସେ... ଜନ୍ମମାଟିର କୋଳରେ ଶୋଇ ନିଜକୁ ନିଜ ଜୀବନକୁ ତର୍ଜମା କରିଚାଲିଛି । ହିସାବ କରି ଚାଲିଛି କେତେ ଦେଲା, କେତେ ପାଇଲା, ଆଉ ବାକି ଅଛି କେତେ । ବାକି ଅଛି ବି ଆଉ କେତେଟା ନିଃଶ୍ୱାସ । କେତେବେଳେ ଦାର୍ଶନିକ ଭଳି ତ କେତେବେଳେ ଭାବୁକ ସାଜି । ଧରପୁରର ପାହାନ୍ତି ପବନ ଧୋ'ରେ ବାଇଆ ଧୋ" - ଗୀତ ଗାଇ ତା' ଜୀବନଯାକର କ୍ଳାନ୍ତିକୁ ଶୋଷି ନେଉଛି, ଯେତେବେଳେ ସେ ମନାକରିବ କାହିଁକି ? ହେଉପଛେ ମୁହୂର୍ତ୍ତକ ଲାଗି, ବଞ୍ଚିଛି ବୋଲି ତ ତା'ର ବିଶ୍ୱାସ ହେଉଛି, ଯୋଉଟା ଏତେ ବର୍ଷ ଭିତରେ କେବେ ହେଇନଥିଲା ଏ ଦିବ୍ୟ ଅନୁଭବ । ଆଜି, ଏଇ ମୁହୂର୍ତ୍ତରେ ସେଇ ସୁଯୋଗ ଯେତେବେଳେ ପାଇଛି, ମନ ପୁରେଇ ନିଃଶ୍ୱାସ ଟିକେ ନେଇଯିବନି କାହିଁକି ? କିଏ କହୁପଛେ ସ୍ୱାର୍ଥପର, କିଏ ଜାଣେ, ଆର ମୁହୂର୍ତ୍ତରେ କ'ଣ ଅପେକ୍ଷା କରିଛି ତା' ପାଇଁ । ଯେମିତି, ସେ କ'ଣ ଜାଣିଥିଲା, ଏଇଠି ଆସି ପହଞ୍ଚିଯିବ ବୋଲି । ନା ଜାଣିନଥିଲା କି ଭାବିନଥିଲା ସେଇ ମୁହୂର୍ତ୍ତରେ । କାରଣ ସବୁ ଇଚ୍ଛା ଗଛରେ ଫଳ ଧରେନି । ଧରିଥିଲେ ବି ଭାଗ୍ୟ ନଥିଲେ ଭୋଗ ହୁଏନି । ସବୁପାଇଁ ଏକ ଦିବ୍ୟ ମୁହୂର୍ତ୍ତର ଅପେକ୍ଷାରେ ମଣିଷ ଥାଏ । ବିଶେଷକରି ସେ । ଯୋଉଦିନ ସେ ସିଧାରାସ୍ତା ଛାଡ଼ି, ନାଲି ସଡ଼କରେ ବାଟ ଚାଲିଲା, ସେଇ ଦିନରୁ... ଏଇ ବିଶ୍ୱାସଟା ତା'ର ବଳବତ୍ତର ହେଇଯାଇଛି । ତେଣୁ ତା'ର ନିର୍ଦ୍ଦିଷ୍ଟ ଭାବେ କିଛି ଚାହିଁବାର ନାହିଁ । ଯଦି ଚାହିଁବ ତ ସମୟ ହିଁ ଚାହିଁବ । ଆଣିଦେବ ସେଇ ସେ ସୁଯୋଗ ।

ବାସ୍, ସେଇ ସମୟ ହିଁ ଆଣିଦେଲା ଏଇ ସୁଯୋଗ । ଆଉ ସେ ସେଇ ଦିବ୍ୟ ମୁହୂର୍ତ୍ତର ସୁଯୋଗକୁ ସଦୁପଯୋଗ କରିଥିଲା କାଳବିଳମ୍ବ ନକରି । ଅନ୍ଧାର ଗଳି ଛାଡ଼ି ଆଲୁଅ ଆଡ଼କୁ ମୁହାଁଇଲା, ବାଟଭାଙ୍ଗି, ରାସ୍ତା ବଦଳେଇ । କିଛି ଭୁଲ୍ କଲା କି ? ଏଥର ଅବନୀ ଓହ୍ଲେଇଗଲା ନିଜ ଅବଚେତନ ଭିତରକୁ । ନିରେଖି ଚାହିଁଲା, ଚକିତ ହେଲା, ସେଠି କିଏ ଜଣେ ଯୁବକ, ଠିକ୍ ତା'ରି ଭଳି ଦିଶୁଛି ତା ଭିନ୍ନ ଚେହେରା କିନ୍ତୁ ଶାନ୍ତ, ଭଦ୍ର, କିଛିଟା ବୋକା ବୋକା । କିଛି ଭାବୁଛି ବୋଧେ ଅଥବା ଯୋଜନା କରୁଛି ମନେ ମନେ ନିଜ ଭିତରେ ମଗ୍ନ ନା, ନିଜ ଆଡ଼କୁ ନଜର ନାହିଁ । ଚାହୁଁନି ମୋଟେ । କେମିତି ପଚାରିବ, ତା' ମଗ୍ନତାକୁ ଭାଙ୍ଗିଦେଇ ପଚାରିବ ? ଯଦି ସେ କହିବ, ତୁ ବିଶ୍ୱାସଘାତୀ, କାହା ବିଶ୍ୱାସକୁ କେବେ ସମ୍ମାନ ଦେଇନୁ । ଓଲଟି ଧୋକା ଦେଇଛୁ ।

Digitized by PPRACHIN, SOA

ଏମିତିକି ନିଜକୁ ବି । ଆଉ ଏବେ...ଦଳକୁ... । ଏକଥା ଭାବିବାକୁ ଯାଇ ଅବନୀ ସତର୍କ ହେଇ ଚାରିଆଡ଼କୁ ଚାହିଁଲା । କିଏ ଶୁଣିପକେଇଲା କି ତା' ମନର କଥାକୁ ଏବଂ ନିଜ ଭିତରେ ବିତର୍କ କଲା, ସେ କ'ଣ କରିବା ଉଚିତ । ଯାହା କରୁଛି ସେ ଠିକ୍ ନା ଭୁଲ୍ ? କୌଣସି ବିନ୍ଦୁରେ ପହଞ୍ଚିପାରୁ ନଥିଲା । ଶେଷରେ ଠିକ୍‌କଲା ସେ କାହାକୁ କିଛି ପଚାରିବନି । ଯାହା ଉଚିତ ବୋଲି ଭାବିବ ତାହା ହିଁ କରିବ ଏବଂ ସେ ତାହା ହିଁ କରିଛି । ଆଦର୍ଶ ଫାଦର୍ଶ କିଛି ନାହିଁ । ନିଜକୁ ନିଜ ବିଚାରଧାରାକୁ, ଏଥର ବଦଳେଇବା ଆବଶ୍ୟକ । ଅତଏବ ବର୍ତ୍ତମାନ ପର୍ଯ୍ୟନ୍ତ ସେ ଯାହା କରିଆସିଛି ଠିକ୍ ହିଁ କରିଛି । ଏଥିପାଇଁ ସେ ନିଜକୁ ଅପରାଧୀ ବୋଲି ଭାବିବ କାହିଁକି ?

ବିସ୍ଫୋରକ ଦ୍ରବ୍ୟ ନେଇ ଯାଉଥିବା ଟ୍ରକ ଡ୍ରାଇଭର ଓ ତା'ର ସାଥିକୁ ହତ୍ୟା କରିବା ପରେ ତା'ର ଅନ୍ୟ ପାଞ୍ଚଜଣ ସହଯୋଗୀ କାଳବିଳମ୍ବ ନକରି ଟ୍ରକରେ ଉଠିଗଲେ ଏବଂ ଷ୍ଟିଅରିଂ ମୋଡ଼ିଲେ ଜଙ୍ଗଲଆଡ଼କୁ । ସଫଳତାର ଉଲ୍ଲାସରେ ଆଉ କାହାର ତା'ଆଡ଼ିକି ନଜର ନଥିଲା । ହୁଇସ୍କିର ନିଶା ଭଲ କାମ ଦେଖେଇଥିଲା । ଏଭଳି ଅସ୍ୱାଭାବିକ ଆଚରଣ ଅବଶ୍ୟ କେବେ ଘଟେ ନାହିଁ । ତଥାପି ସମୟ ସେଇ ସୁଯୋଗ ଦେଲା । ସେତେବେଳକୁ ସେ ଟ୍ରକଠାରୁ ଟିକିଏ ଦୂରରେ ପଥର ଉପରେ ବସି ପରବର୍ତ୍ତୀ ପଦକ୍ଷେପ କଥା ଚିନ୍ତା କରୁଥିଲା । ଚାରିଆଡ଼ ଅନ୍ଧାର ଲେସିହେଇ ରହିଥିଲା ମୁହଁ ଦିଶୁଥିଲା, ଗାଡ଼ି ଷ୍ଟାର୍ଟ ହେବା ଶବ୍ଦରେ ଚମକି ଉଠି ଚାହିଁଲା ବେଳକୁ ଆଗକୁ ମାଡ଼ିଗଲାଣି ଟ୍ରକ୍ । ଡେଡ୍‌ବଡ଼ି ଦି'ଟା ରାସ୍ତାକଡ଼ ବୁଦ୍‌ବୁଦ୍‌କିଆ ଜଙ୍ଗଲ ଭିତରେ ମୁହଁମାଡ଼ି ପଡ଼ିଥିଲା । ପରିସ୍ଥିତି ଦୃଷ୍ଟିରୁ ତା'ର ସେଠି ମୁହୂର୍ତ୍ତିଟିଏ ମଧ୍ୟ ରହିବା ଉଚିତ ନଥିଲା । ଆଗରେ ପଛରେ ବିପଦ । ଏଇ ସୁଯୋଗ ସମୟ ଆଣିଦେଇଛି ତାକୁ ସେ ତା'ର ବିନିଯୋଗ କରିବ ଉଚିତ ବାଟରେ ।

ଆକାଶକୁ ଚାହିଁଲା- ଆଲୁଅ ନାହିଁ-ଉପଯୁକ୍ତ ସମୟ ଆତ୍ମଗୋପନ ପାଇଁ । ତା'ପରେ ସେ କିଛି ଆଉ ଭାବିନି । ଅଣନିଃଶ୍ୱାସୀ ହେଇ ଧାଇଁଛି ଜଙ୍ଗଲ ରାସ୍ତାରେ ଦେଢ଼ଘଣ୍ଟା ଦି'ଘଣ୍ଟା ପର୍ଯ୍ୟନ୍ତ । ମୁଖ୍ୟ ରାସ୍ତାରେ ପାଦ ଦେଇସାରି ମୁହୂର୍ତ୍ତେ ଠିଆହେଲା, ଚାହିଁଲା- କୁଆଡ଼କୁ ଯାଇଛି ରାସ୍ତାଟା - ଆଶ୍ୱସ୍ତ ଲାଗିଲା ଯେ, ରାସ୍ତାଟା ଚିହ୍ନା ଚିହ୍ନା ଲାଗୁଛି । ପହଞ୍ଚି ପାରିବ କୌଣସି ପ୍ରକାରେ ଲକ୍ଷ୍ୟ ସ୍ଥଳରେ ଏବଂ ସେ ଚାଲିଲା ବଡ଼ ବଡ଼ ପାହୁଣ୍ଡ ପକାଇ ନିର୍ବିକାର ହେଇ ।

ଚାଲୁ ଚାଲୁ ଭାବିଲା, ଉଲ୍ଲାସର ଜୋସ୍ ଆଉ ନିଶାର ଦମ୍ ଖସିଲା ପରେ ଟ୍ରକର ବନ୍ଧୁମାନେ ତାକୁ ଖୋଜିବେ - ଅନେକ ଡେରି ହେଇଯାଇଥିବ ସେତେବେଳକୁ ତେଣୁ ସେ ଜଣେଇଦେବ ଯେ, ଦୁର୍ଘଟଣାବଶତଃ ଅଟକି ଯାଇଛି, ଠିକ୍ ସମୟରେ ସେ ସୁନ୍ଦରଗଡ଼ ସୀମାନ୍ତ ଜଙ୍ଗଲରେ ସେମାନଙ୍କୁ ସାକ୍ଷାତ କରିବ । ସେଲ ଫୋନରୁ ସାଙ୍କେତିକ ଭାଷାରେ

Digitized by PPRACHIN, SOA

ଜଣେଇ ଦେଇଥିଲା ମଧ୍ୟ । ହିସାବ କଲା, ହାତରେ ବେଶୀ ସମୟ ନାହିଁ ସୀମିତ ସମୟସୀମା ମଧ୍ୟରେ ତାକୁ ଯାହା କରିବା କଥା କରିବାକୁ ହେବ । ଚାଲୁ ଚାଲୁ ହଠାତ୍ ଗୋଟିଏ ମୋଡ଼ରେ ଅଟକି ଗଲା । ଏପାଖ ସେପାଖ ଚାହିଁ ଦେଖେ ତ, ଏଇଟା ସିଧା ଯାଇଛି ଧରପୁରକୁ । ତା'ର ଜନ୍ମମାଟି... ମନ ନାଚିଉଠିଲା ସେଇ ଅନ୍ଧାର ଭିତରେ । ତା'ର ଅତିପ୍ରିୟ ଧରପୁର । କେତେ ସହସ୍ର ଥର ସେ ଏଇ ରାସ୍ତାରେ ଯାଇଥିବ । ଅଥଚ ଆଜି ସେ ସତେକି ଅଚିହ୍ନା ପଥିକ । ଲାଗୁଛି, କେତେ ଯୁଗ ହେଲାଣି ସେ ଦେଖିନି କାହାକୁ... । ମନେପଡ଼ିଲା ବୋଉ... ସୁରେଖା... ଅରୁଭାଇ... ବଉଳୀ... ଡେଙ୍ଗା ଡେଙ୍ଗା ନଡ଼ିଆଗଛ । ଆଉ ତା' ସହିତ ମନେପଡ଼ିଲା ଆଉ ଗୋଟିଏ ମୁହଁ.... ବଉଳଫୁଲର ଉଛାଟିଆ ବାସ୍ନା... ତା' ଚିନ୍ତାଚେତନାକୁ ସତେ ଯେମିତି ଘାରି ପକେଇଲା ଏକ ଅଦ୍ଭୁତ ନିଶାରେ ଏବଂ ସେଇ ନିଶା ତାକୁ ଘରମୁହାଁ କରେଇଲା । ବାଟ ଭାଙ୍ଗିବା ପୂର୍ବରୁ ମନେ ମନେ ମାପିଲା ସମୟକୁ ଛତିଶ ଘଣ୍ଟା ହାତରେ ଅଛି । ପହଞ୍ଚି ପାରିବ ଇଚ୍ଛାକଲେ ନିର୍ଦ୍ଦିଷ୍ଟ ସ୍ଥାନରେ ଏବଂ ପହଞ୍ଚିଥିଲା ବି ତା'ର ଅତିପ୍ରିୟ ପିଲାଦିନର ଖେଳପଡ଼ିଆରେ । ଖେଳପଡ଼ିଆ ତ ନୁହେଁ, ତା' ପାଇଁ ନୀଳନିରଞ୍ଜନା - ମୁକ୍ତିର ମାର୍ଗ... ।

ଅବନୀକୁ ଲାଗିଲା, ତା' ଭିତରର ସେଦିନର ସେଇ ଉଦ୍ଦାମ ଯୁବକ ଜଣକ ହଠାତ୍ ସନ୍ୟାସୀ ପାଲଟିଯାଇଛି । ଗୈରିକ ବସନ, ଜଟାଜୁଟ, ନିମିଳିତ ଚକ୍ଷୁ, ଧ୍ୟାନମଗ୍ନ ଥିବା ତା' ପିଲାଦିନ ଇତିହାସର ବହି ପୃଷ୍ଠାରେ ଥିବା ଗୌତମବୁଦ୍ଧ ଭଳି ଏବଂ ଖେଳପଡ଼ିଆଟା ଯେମିତି ନୀଳନିରଞ୍ଜନା, ଆଉ ଏହି ଆମ୍ବଗଛଟା, ଯିଏ ପିଲାଦିନେ ତାକୁ ଛାଇ ଦେଉଥିଲା, ସେଇ ଛାଇରେ ବସି ସେ ତା' ମନର ରୁଦ୍ଧଦ୍ୱାରକୁ ଖୋଲି ଦେଉଥିଲା... ଆଉ ଆଜି, ଏଇ ମୁହୂର୍ତ୍ତରେ ତାକୁ କୋଳେଇ ନେଇ ଆଶ୍ରା ଦେଇଛି, ତା' ଭିତରର ଦେବଶିଶୁକୁ ଜାଗ୍ରତ ବି କରିଛି - ଏଇ ତା'ର ବୋଧିଦ୍ରୁମ ।

କି ବିଚିତ୍ର ଅନୁଭବ, କି ଅଦ୍ଭୁତ ସଂଯୋଗ । ରୋମାଞ୍ଚିତ ହେଲା ଅବନୀ । ବୁଦ୍ଧତ୍ୱ ପ୍ରାପ୍ତି ପରେ ରାଜପୁତ୍ର ସିଦ୍ଧାର୍ଥ ଥରେ ଭିକ୍ଷୁ ବେଶରେ ଯାଇଥିଲେ ରାଜପ୍ରାସାଦକୁ ମା'ଙ୍କୁ ଶେଷ ପ୍ରଣାମ ଜଣାଇ ଭିକ୍ଷା ମାଗି ନେବେ ବୋଲି । ଆଉ ସେ... ? ଆଜି ଯେତେବେଳେ ବୋଉ କୋଳକୁ ଫେରିଆସିଛି... ଶେଷ ବିଦାୟ ନ ନେଇ ଫେରିବ କେମିତି । ସେ ନିଶ୍ଚୟ ଯିବ ବୋଉ ପାଖକୁ । ପରିସ୍ଥିତି ଯାହା ବି ହେଉ, ତା'ର ଆଉ ଭୟ ନାହିଁ । ଆଗରେ ଆଲୁଅ ଦିଶୁଛି... ପାଦ ତା'ର କୂଳ ଛୁଉଁଛି ।

ଆକାଶକୁ ଚାହିଁଲା ସୁଦାମ ମାଷ୍ଟ୍ରଙ୍କ ସାନପୁଅ, ଅବନୀ ପରିଡ଼ା । ରାତି ସରି ସରି ଆସୁଛି । ଡେରି କରିବା ଉଚିତ ହେବନି, ଏଥର ସେ ଉଠିବ ଘର ଉଦ୍ଦେଶ୍ୟରେ । ପାହାନ୍ତି ପକ୍ଷୀର ଡେଣାଝଡ଼ା ଶବ୍ଦ ଶୁଭିଲାଣି, ନିଦ ଭାଙ୍ଗିଲାଣି ସେମାନଙ୍କର । କୋଉଠି

Digitized by PPRACHIN, SOA

କଢ଼ଲପାତିଟିଏ ଡାକ ଦେଲା । ଶୁଭ ମୁହୂର୍ତ୍ତ । ବୋଉ ନିଦ ବି ପାତଳା ହେଇଆସିବଣି । ଆଜିକାଲି ଆଉ କିଛି ସ୍ୱପ୍ନ ଦେଖୁନଥିବ ସେ ।

ଘର ଏଠୁ ବେଶୀବାଟ ନୁହେଁ । ବେଶି ହେଲେ ପନ୍ଦର କୋଡ଼ିଏ ମିନିଟ୍ ଲାଗିବ ଯିବାକୁ । ଅବନୀ ଉଠିବସିଲା ଘାସଶେଯ ଉପରୁ । ଠିଆହେଇ ନିଜକୁ ସଜାଡ଼ିଲା । କାନ୍ଧ ଝୁଲା ବ୍ୟାଗ ଖଣ୍ଡିକୁ କାନ୍ଧରେ ପକାଇ ଚାଲିବା ଆରମ୍ଭ କଲା ତରତର ହେଇ । ଯେମିତି ସେ କାହା ହାବୁଡ଼େ ନ ପଡ଼େ । ଆଖିର ଦୃଷ୍ଟି ଭୂଇଁ ଉପରେ ହିଁ ନିବଦ୍ଧ ଥିଲା ।

ଏଇ ଟିକକ ବାଟ ଚାଲୁ ଚାଲୁ ଝାଳରେ ବୁଡ଼ିଯାଇଥିଲା ସେ । ଅଥଚ କେତେ କେତେ ଜଙ୍ଗଲିଆ ରାସ୍ତାକୁ ସେ ପାର କରିଛି ଅକ୍ଲେଶରେ । ଆଜି କାହିଁକି ତାକୁ ଖୁବ୍ ଲମ୍ବା ମନେହେଉଥିଲା ରାସ୍ତାଟା... ଯେମିତି ବାଟ ହିଁ ସରୁନି- ସମୟ ସରିଯାଉଛି । ଭୟ ଲାଗୁଛି ବୋଧେ । ପିଲାଦିନେ ବାପାଙ୍କ ସାମ୍ନାକୁ ଗଲାବେଳେ ଠିକ୍ ଏମିତି ସେ ଝାଳେଇଯାଏ । ପରୀକ୍ଷାକୁ ଗଲାବେଳେ ବି । ଏକମୁହାଁ ହେଇ ଚାଲୁ ଚାଲୁ ଦୋଛକିରେ ପହଞ୍ଚି ଠିଆ ହେଇପଡ଼ିଲା ପଲକଟିଏ ପାଇଁ । ବାଁ ପଟ ରାସ୍ତାଟା ସିଦ୍ଧ ବଡ଼ବାପାଙ୍କ ଘରକୁ ଯାଇଛି । ଆପେ ତା'ର ଘ୍ରାଣେନ୍ଦ୍ରିୟମାନେ ଉତେଜିତ ହେଇଉଠିଲେ ବଉଳଫୁଲର ବାସ୍ନା ଆଘ୍ରାଣ କରିବାକୁ - ହେଲେ ହତାଶ ହେଲା ମନେ ମନେ ଭାବିଲା, ସୀମା ତ ନଥିବ, ଆଉ କାହା ଅଗଣାରେ ଫୁଲ ହେଇ ଫୁଟି ବାସ୍ନା ଅଢାଡୁଥିବ । ଦୀର୍ଘଶ୍ୱାସ ଛାଡୁ ଛାଡୁ ବଡ଼ ବଡ଼ ପାହୁଣ୍ଡ ପକାଇ ମୋଡ଼ ପାର ହେଇ ପହଞ୍ଚି ଯାଇଥିଲା ଘରଦୁଆର ମୁହଁରେ ସେ ।

କେତେ ପୁରୁଣା, ଦଦରା ଦିଶୁଛି ଘରଟା ଏଇ କେଇଟା ବର୍ଷରେ । ଚୂନ ଝଡ଼ି ଗଲାଣି କାନ୍ଥରୁ । ଯେମିତି ପରିତ୍ୟକ୍ତ ଚଟିଘର । ଏମିତିରେ ଘରଟା ସବୁଦିନେ ଏକଣା । ଆଖପାଖ ସାଇପଡ଼ିଶାରେ କେହି ନଥିଲେ କେବେ । ଏବେ ବି ସେମିତି ପଡ଼ିଆ ପଡ଼ିଛି । କିଛି ବଦଳିନି ଭୂଗୋଳ । କେବଳ ଇତିହାସର ପୃଷ୍ଠା ବଢ଼ିଛି । ଘରେ ନିଶ୍ଚୟ ବୋଉ ଅଛି । ତାଲା ପଡ଼ିନି । ଅବନୀ ଧୀରେ ଧୀରେ କବାଟରେ ହାତମାରିଲା, କଡ଼ା ହଲେଇ ଠୁକ୍ ଠୁକ୍ କଲା । ଥରେ... ଦି'ଥର... ପୁଣି ଥରେ ।

ବୋଉ ବୋଧେ ଶୁଣିପାରୁନି । କିମ୍ବା ସାହସ ହେଉନି ଦୁଆର ଖୋଲିବାକୁ ଆଖିର ଦୃଷ୍ଟିଶକ୍ତି କମିଯାଇଥିବ ମଧ୍ୟ । ଆଉ ସୁରେଖା... ସୁରେଖା ତ ସବୁଦିନେ ଡରକୁଳୀ... । ଭାବିସାରି ନିଜକୁ ସଂଶୋଧନ କଲା ଅବନୀ, ସେ କେଡ଼େ ବୋକା । ଏତେ ବର୍ଷ ହେଲାଣି, ସୁରେଖା ବାହାହେଇ ଚାଲିଯାଇଥିବ ଶାଶୂଘରକୁ ନିଶ୍ଚେ ।

ଏଥର ସେ ଧୀରେ ଧୀରେ ଡାକିଲା ବୋଉ... ବୋଉ... ଏ ବୋଉ... ଦୁଆର ଖୋଲ ମୁଁ ଆସିଛି ପରା । ନିଜ ନାଁଟା ତଥାପି କହିପାରିଲାନି ଅବନୀ । ବାନ୍ଧି ପକେଇଲା ତା' ପାଟିକୁ କିଏ ଯିମିତି ।

Digitized by PPRACHIN, SOA

ଘର ଭିତରୁ ଖୁଟ୍‌ଖାଟ୍ ଶୁଭିଲା । କାନେଇଲା, ବୋଉ ବୋଧେ ଉଠିଆସୁଛି । ବୋଧେ ଡିବିରି ଲଣ୍ଠନକୁ ଡେଙ୍ଗିଲା ଟିକିଏ । କବାଟ ଫାଙ୍କରେ ଆଲୁଅ ଦିଶିଲା । ପୁଣି ସେ ଡାକିଲା "ବୋଉ, ଦୁଆର ଖୋଲ, ମୁଁ ଆସିଛି । ଭିତରପଟୁ ବୋଉର କଣ୍ଠସ୍ୱର । କିଏ, ଅରୁ କିରେ । ଅବନୀ ବାହାରେ ଥାଇ ରୋମାଞ୍ଚିତ ହେଲା ବୋଉର କଣ୍ଠସ୍ୱର ଶୁଣି - ଏ ସ୍ୱରରେ କି ଯାଦୁ ଅଛି କେଜାଣି, କେତେ ନିବିଡ଼ ପ୍ରାଣସ୍ପର୍ଶୀ ଏ ସ୍ୱର ସବୁ ଦୁଃଖକଷ୍ଟ ପୋଛିଦେଲା ଭଳି । ଆଖି ବୁଜି ହେଇଗଲା ଅବନୀର ଏଇ ମଧୁର କଣ୍ଠସ୍ୱରରେ । ତର ସହୁ ନଥିଲା କ'ଣ ସବୁ ବୋଉ ଗୁଣଗୁଣଉଛି, ଶୁଣିପାରୁ ନଥିଲା । ସେ ଉତ୍ତେଜନାବଶତଃ । ଯାହା ବି ହେଉ, ବୋଉ ଅଛି । ସେଇ ଯଥେଷ୍ଟ । ଜହ୍ନିଫୁଲର ଆୟୁଷ ନେଇ ଆସିଥିବା ଅବନୀ ଆଉ ଅଧିକା କିଛି ଚାହେଁନା । ଆଖି ଛଳଛଳେଇ ଉଠିଲା ।

ଦୁଆର ଖୋଲିଲା ବୋଉ । କିଏ ଅରୁ କିରେ । କେମିତି ମନେପଡ଼ିଲା ବୋଉ ଏତେ ଦିନକେ । ମୁଁ ଅଛି ମ... ବଞ୍ଚିଛି । ଅଭିମାନର ପାହାଡ଼ ଭାଙ୍ଗି ବୋଉ ଆଖି କୁଞ୍ଚେଇ ମୁହଁକୁ ନିରେଖି ଚାହିଁଲା । ଭଲ ଦିଶୁନଥିଲା ବୋଧେ । ଅଚିହ୍ନା ଭଳି ଥରକୁ ଥର ଆଖିପୋଛି ନିରେଖିଲା, ଯିମିତି ଚିହ୍ନିପାରୁନି । ଇଏ ତ ଅରୁ ନୁହେଁ । ସ୍ୱାଭାବିକ, କିମିତି ଚିହ୍ନନ୍ତା । ଅବନୀ ତ ନଥିଲା ତା' ମନରେ । ପୁଣି ଦାଢ଼ି ଭର୍ତ୍ତି ମୁହଁ ଆଉ ଅପେକ୍ଷା ନକରି, ଉତ୍କଣ୍ଠାର ଅନ୍ତ ଘଟେଇ, ସେ ନଇଁପଡ଼ିଲା ବୋଉ ପାଦ ଛୁଇଁବାକୁ । ପାଦ ଦି'ଟାକୁ ଜାବୁଡ଼ି ଧରି କହିଲା - ମୁଁ ଅରୁ ନୁହେଁ ଲୋ ବୋଉ ଅବନୀ ।

ଅବନୀ ! ବୋଉ ଦି' ପାଦ ପଛକୁ ହଟିଗଲା ଭୂତ ଦେଖିଲା ଭଳି । ନିଜେ ଘର ଭିତରକୁ ପାଦ ପକେଇ କବାଟ ଆଉଜେଇ କିଳିଣି ଦେଲା ଅବନୀ ଏବଂ ଠିଆହେଇ ବୋଉକୁ କୋଳେଇ ନେଲା ଆନନ୍ଦାତିଶଯ୍ୟରେ ।

ବୋଉ ମୁହଁରେ କିନ୍ତୁ କୌଣସି ପ୍ରତିକ୍ରିୟା ଫୁଟିଉଠୁ ନଥିଲା । ସତ ମିଛର ଦୋ'ଛକିରେ ଠିଆହେଇ ପଥର ପ୍ରତିମା ପାଲଟି ଯାଇଥିଲା ବୋଉ । ବିସ୍ମୟରେ ଅଥବା ଚକିତ ହେଇ ସେ ଡାକ ପକେଇଲା ଥରିଲା କୋହଭରା କଣ୍ଠରେ ସୁରେଖା, ଆସିଲୁ ଦେଖିବୁ । କିଏ ଆସିଛି, କହୁଛି ତ ଅବନୀ ବୋଲି । ସତ ମିଛ ଜାଣିବାକୁ ବୋଉ ଅଣ୍ଡାଳି ପକେଇଲା ତା' ଦିହମୁହଁକୁ । ମୁଁ କ'ଣ ଚିହ୍ନିନି ମୋ' ପୁଅକୁ... କହୁଛି ଅବନୀ ବୋଲି... ପାଗଳିଙ୍କ ଭଳି ସ୍ୱଗତୋକ୍ତି କରୁ କରୁ ସୁରେଖା ଶୋଇଲା ଘର ଆଡ଼କୁ ମୁହାଁଇଲା । ସେ ବି ଚାଲିଲା ବୋଉ ପଛରେ ।

ସୁରେଖା ବୋଉ ଡାକରେ ଉଠିପଡ଼ି ଆସୁଥିଲା ନିଦ ମଳ ମଳ ଆଖିରେ ଏବଂ ଠିଆ ହେଇଗଲା ବ୍ରେକ୍ ଦେଲା ଭଳି ବୋଉ ପଛରେ, ଇଏ କିଏ ? ବୋଉ କାହାକୁ

Digitized by PPRACHIN, SOA

ଘର ଭିତରକୁ ଡାକି ଆଣିଛି... ହୁଏତ ସୁରେଖା ଏଇଯା ଭାବିଥିବ । ଅବନୀ କିନ୍ତୁ ହସିଦେଲା । "ଚିହ୍ନି ପାରୁନୁ ସୁରେଖା, ତୋ' ସାନଭାଇ- ଅବନୀକୁ ।" ସାନଭାଇ ! ଆଶ୍ଚର୍ଯ୍ୟଚକିତ ହେଇ ଆଗେଇ ଆସିଲା ଚାରିପାଦ ବୋଉକୁ ଆଡ଼େଇ ଦେଇ । ତା' ଆଗରେ ଠିଆହେଇ ଚାହିଁଲା ବିସ୍ଫାରିତ ଆଖିରେ ହାଁ କରି । ସତେ ତା କଣ୍ଠସ୍ୱରରୁ ବାରି ହେଉଛି, ହେଲେ କି ଚେହେରା କରିଛି ସାନଭାଇ । ଦାଢ଼ିଭର୍ତ୍ତି ମୁହଁ, ସେ ମୁହଁରେ କୋମଳତା ନାହିଁ- ରୁକ୍ଷ, ବୟସ୍କ ଜଣାପଡୁଛି । ମୁଣ୍ଡବାଳ କହଁରା ପିଠିଯାଏ ଲମ୍ବିଛି ତେଲ ଲାଗିନି କେଜାଣି କେବେଠୁ । କେଡ଼େ ଗୋରା ମଣିଷଟା କଳା ପଡ଼ିଯାଇଛି । କଦର୍ଯ୍ୟ ଲୁଗାପଟା କେମିତିକା ଗମରାଗନ୍ଧ ଗାଉଁଳି ଗାଉଁଳି । ଇଏ ତା' ସାନଭାଇ । ସ୍ତବ୍ଧ ହେଇଯାଇଥିଲା ସୁରେଖାର ଚେତନା । ଅନେକ ସମୟ ପରେ ତା' କଣ୍ଠରେ ଫୁଟିଲା ଶବ୍ଦଟିଏ ସାନଭାଇ । ବିଶ୍ୱାସ କରିପାରୁନୁ ନା ? ଅବନୀ ଆଖିରେ ହସଫୁଟେଇ ପଚାରିଲା । ନା, ବିଶ୍ୱାସ ହେଉନି । ସତରେ ତୁ ଆସିଛୁ ! ବୋଉ ମୁହଁକୁ ଚାହିଁ ଦୋହରେଇଲା ସୁରେଖା- ବୋଉ ତୋ' ସାନପୁଅ ଅବନୀ, ଚିହ୍ନିପାରୁନୁ ? ତାକୁ ଲକ୍ଷ୍ୟକରି ପୁଣି ସୁରେଖା କହିଲା, ଆଗଭଳି ବୋଉ ଆଉ ନାହିଁରେ ଭାଇ, ଥବିର ହେଇଗଲାଣି ଦେହମନରେ । ଜଡ଼ ପାଲଟିଯାଇଛି ଚେତନା । ମନେପକେଇ ପାରୁନି ଅନେକ କଥା । ଅବନୀ ଚାହିଁଥିଲା ଘରର ଶ୍ରୀହୀନ ରୂପକୁ କେବଳ ନୁହେଁ, ବୋଉର ରୋଗିଣା ଶ୍ରୀହୀନ ଶୀର୍ଣ୍ଣ ଚେହେରାକୁ । ବିଗତ ଦିନର ଚଞ୍ଚଳତା ନାହିଁ, ଅଣ୍ଟା ନଇଁଗଲାଣି, ଶାଢ଼ୀ ଖଣ୍ଡିକ ସାତ ଗଣ୍ଠି, ଆଖିକୁ ବି ଭଲ ଦିଶୁନି । ଚାଲୁ ଚାଲୁ ସଁ ସଁ ହେଉଛି । ଘରର ଦମ୍ଭ ଥିଲା ବୋଉ ।

ଆଉ ସୁରେଖା... । ଅବନୀ ତା' ପାଦର ପୋଡ଼ା ଚିହ୍ନଟାକୁ ଚାହିଁଲା । ଅଛି । ଲିଭିନି । ଫୁଲଗଛର ମୁରୁକୁଟିଆ ଡାଳଭଳି ଦିଶୁଛି ସୁରେଖା । ବିବର୍ଣ୍ଣ, ଆଖି ତଳେ କଳାଦାଗ ଏମିତି କେତେ ବୟସ ହେଲା କି ସୁରେଖାକୁ । ଅବନୀକୁ ଆନମନା ଦେଖି, ସୁରେଖା କହିଲା, ତୁ ଯା' ଭାଇ ଦାନ୍ତଘଷି ନିତ୍ୟକର୍ମ ସାରିବୁ କ'ଣ ଏତେ ଆଉ ଭାବୁଛୁ ଯେ ? "ତୋ' ପାଦର ସେଇ ପୋଡ଼ାଦାଗଟୋ... "ଅନ୍ୟମନସ୍କ ଭାବେ ହିଁ ପଚାରିଦେଲା ଅବନୀ ।" ଅଛି । ସେମିତି ଅଛି । ଲିଭିନି କି ଲିଭିବନି । ସୁରେଖାମାନଙ୍କର ଭାଗ୍ୟ କେବେ ବଦଳେନାରେ ଭାଇ, ବଦଳିବାର ବି ନୁହେଁ... ।"

ଆଉ ଅରୁଭାଇ ? ଅରୁଭାଇ ଖବର କ'ଣ... । ସୁରେଖା କିନ୍ତୁ ଏଡ଼େଇଗଲା ଅବନୀର ପ୍ରଶ୍ନକୁ । ତୁ ଏବେ ଯା' ନିଜ କାମ ସାରିବୁ, କିଛି ତ ଖାଇ ନଥିବୁ । ମୁହଁ ଶୁଖିଲା ଦିଶୁଛି । ଅବନୀର କପେ କଡ଼ା ନାଲି ଚା' ଖାଇବାକୁ ମନ ହେଉଥିଲା ସତରେ । ଅନେକ ବର୍ଷର ଅଭ୍ୟାସ ତ । ହେଲେ କହିପାରିଲାନି । ସେ ଜାଣେ ଘରେ ତା'

Digitized by PPRACHIN, SOA

ନଥିବ । ବୋଉ ଅନେକ ଦିନରୁ ଚା' ଖାଇବା ଛାଡ଼ି ଦେଇଥିଲା । ଅବନୀ ଚୁପ୍‌ଚାପ୍ ଉଠିଗଲା ବାଡ଼ିପଟକୁ । ପିଜୁଳିଗଛରୁ ଡାଳଟିଏ ଭାଙ୍ଗିଆଣିଲା ଦାନ୍ତ ଘଷିବାକୁ । ଆଖି ପହଁରିଗଲା ଚାରିଆଡ଼କୁ । ଲଙ୍କାଗଛ ସାଙ୍ଗକୁ, ଶାଗ ପଟାଳି, ସଜନାଗଛ, ନଡ଼ିଆଗଛ ସବୁ ସେମିତି ଠିଆ ହୋଇଛନ୍ତି ନିର୍ବାକ ହୋଇ । ସୁଦାମ ପରିଡ଼ା ଘରର ଇତିହାସର ମୂକସାକ୍ଷୀ । କଖାରୁ ଗଛ ଡଙ୍କ ମେଲିଛି ଦଦରା ଚାଳ ଉପରେ । କେତେ ବର୍ଷ ହେଲା ଛୁଆଁଣି ହୋଇନି ନିଶ୍ଚୟ । ଗୁହାଳ ଖାଲି । ସବୁଠି ଅଭାବ । ଦାରିଦ୍ର୍ୟର ପଦଚିହ୍ନ । ଅଥଚ ସେ... ଦେଶରୁ ଦାରିଦ୍ର୍ୟ ହଟେଇବ, ହତଭାଗ୍ୟ ମଣିଷ ମୁହଁରେ ଦି'ମୁଠା ଦାନା ଦେବ, ହସ ଫୁଟେଇବ, ମୌଳିକ ଆବଶ୍ୟକତା ଆଉ ଅଧିକାର ବାଣ୍ଟିଦେବ ବୋଲି ଓହ୍ଲେଇ ପଡ଼ିଛି ସଶସ୍ତ୍ର ସଂଗ୍ରାମ ଭିତରକୁ ବିପ୍ଳବ ନାଁରେ । ଏତେ ବର୍ଷର ରକ୍ତସ୍ନାନ କୃଚ୍ଛ ସାଧନା ଭିତରେ କିଛି ତ ପରିବର୍ତ୍ତନ ତା' ଆଖିରେ ପଡ଼ିନି ବରଂ ଗରିବ ଆହୁରି ଗରିବ ହୋଇଛି- ଧନୀ ଆହୁରି ଧନୀ- ସମାଜରେ ଫରକ ଜଳଜଳ ଦିଶୁଛି । ଦୀର୍ଘଶ୍ୱାସ ନେଲା ଅବନୀ । ଆକାଶ ଫର୍ଚ୍ଚା ଦିଶିଲା । ପୂର୍ବପଟେ ସିନ୍ଦୂରା ଫାଟୁଛି । ଆଉ କିଛି ସମୟ ପରେ ଉଠିଆସିବ ଆଲୁଅ ପିଣ୍ଡୁଳା, ସବୁଦିନ ଭଳି । ହେଲେ ଆଜି...ଧରପୁର ଆକାଶର ସୂର୍ଯ୍ୟୋଦୟଟା କିମିତି ନୂଆ ଲାଗିଲା ଅବନୀକୁ ।

କୂଅରୁ ପାଣି ତୋଳିବାକୁ ବାଲ୍‌ଟି ପକେଇବାକୁ ଯାଇ ଚମକି ଉଠିଲା ନିଜ ଚେହେରା ଦେଖି । ଚିହ୍ନି ହେଉନି ସତରେ । ଅନେକ ଦିନ ହେଲା ସେ ଦର୍ପଣ ଦେଖିନି । ବାଲ୍‌ଟି ପାଣିକୁ ଛୁଇଁଲା । ଟହଲି ଗଲା ଚେହେରା ସହିତ ଚେତନା । ଆରମ୍ଭ ହେଲା ମହାସ୍ନାନ । ବାଲ୍‌ଟି ବାଲ୍‌ଟି ପାଣିରେ ନିଜ ଦେହମନକୁ ଧୋଇପୋଛି ସଫା କରିବାକୁ ସତେ ଯେମିତି ପ୍ରୟାସ କରୁଥିଲା ଅବନୀ । ଏଇ ତା'ର ଗଙ୍ଗା ସ୍ନାନ । ପାପତାପ, ଦୁଃଖକ୍ଳେଶ, ସବୁକୁ ଯେମିତି ଧୋଇଦେବ ।

ଗାଧୁଆ ସାରି, ଘର ଭିତରକୁ ପଶୁ ପଶୁ ହଠାତ୍ ଦୁଆର ମୁହଁରେ ଯାହା ସହିତ ତା'ର ଭେଟ ହେଲା, ସେ ଥିଲା ଜୀବନ୍ତ କଣ୍ଢେଇଟିଏ । ଆଶ୍ଚର୍ଯ୍ୟ ! ତା' ଆଖିରେ ଆଖି ପଡୁ ପଡୁ ହସି ପକେଇଲା କଣ୍ଢେଇଟି । ବିସ୍ମୟର ସୀମା ରହିଲାନି ତା'ର । ଏଇ ନିଷ୍ପ୍ରାଣ, ଦରଭଙ୍ଗା କୁଡ଼ିଆ ଭିତରେ କୁଆଡୁ ଆସିଲା ଏଇ ଅମୃତ କଳସ ? ସେ ଠିଆହୋଇଗଲା କଣ୍ଢେଇର ଆଖି ବି ସ୍ଥିର ହୋଇଗଲା ତା' ଉପରେ । ଛଳଛଳେଇ ଉଠିଲା ଅମୃତ କଳସ । ଜୁଳୁଜୁଳୁ ଆଖିରେ ନୂଆ ମଣିଷକୁ ସ୍ୱାଗତ କଲା ନରମ ଓଠରେ ଫୁଲର ପାଖୁଡ଼ା ଝରେଇ ।

ଚେତନାର ଦ୍ୱାର ଖୋଲିଗଲା - ଇଏ କ'ଣ ଅରୁଭାଇର... ମନ ତର ସହିଲାନି, ଡାକ ପକେଇଲା ସୁରେଖାକୁ... ରୋଷେଇ ଘର ଭିତରୁ ସୁରେଖା ଗ୍ଲାସରେ ଗରମ କ୍ଷୀର

Digitized by PPRACHIN, SOA

ନେଇ ଆସୁ ଆସୁ ପଚାରିଲା କ'ଣ ହେଲା କି ସାନଭାଇ ? ହସିଲା ଓଠରେ ତରଙ୍ଗ ଖେଳେଇ ଅବନୀ ପ୍ରଶ୍ନ ଫେରେଇଲା, ତୋ' ପଛରେ ପଣତଧରି ଲୁଚିଥିବା କଣ୍ଢେଇଟି କ'ଣ ଅରୁଭାଇ ଝିଅ ? ଭାଉଜ କାହିଁ ?

ଅନେକ ପ୍ରଶ୍ନ, ଏକାଥରେ ପଚାରି ଦେଇ ଅବନୀ ଅପେକ୍ଷା କଲା ଉତ୍ତର ଶୁଣିବାକୁ । ସୁରେଖା ମୁହଁରେ କିନ୍ତୁ କଳାବାଦଲ ଛାଇଯାଉଥିଲା ଘନହେଇ । ପୁଣି କଥା ଏଡ଼େଇବାକୁ ଯାଇ କହିଲା, "ଶୁଣିବୁ ସବୁକଥା ତୁ ଆଗ ଓଦାଲୁଗା ବଦଳେଇ, ଏଇ ଗରମ କ୍ଷୀର ଟିକେ ପିଇଦେ । ଚା' ତ ନାହିଁରେ ଭାଇ ।" "ମୁଁ ପରା ତୋତେ କ'ଣ ପଚାରୁଛି, କଥା କାହିଁକି ବୁଲଉଛୁ ।" ଅବନୀ ରୋକଠୋକ୍ ଭାବେ ସୁରେଖା ମୁହଁକୁ ଚାହିଁ ପଚାରିଲା ।

"କହିଲି ତ, ସବୁ ଶୁଣିବୁ କହିବି ସବୁ କଥା । ତୁ ବି କହିବୁ ତୋ' କଥା- ଏବେ ନିଜ କାମସାରି ଟିକେ ବିଶ୍ରାମ ନେ" ବୋଉ, ଏ ବୋଉ ପୁଣି କାହିଁକି ଶୋଇଲୁ ଯେ, ଉଠ । ଖରା ଉଠିଲାଣି ପରା... ବୋଉ ଉଦ୍ଦେଶ୍ୟରେ ଡାକ ପକଉ ପକଉ ସୁରେଖା ମୁହେଁଇଲା ପୁଣି ରୋଷେଇ ଆଡ଼କୁ ।

ଦୀର୍ଘ ସାତ ବର୍ଷ ପରେ... ହଜିଲା ପୁଅ ଫେରିଆସିବାର ଖୁସିରେ ସୁଦାମ ମାଷ୍ଟଙ୍କ ଭଙ୍ଗା ସଂସାରରେ ଆନନ୍ଦର ଲହଡ଼ି ପରିବର୍ତ୍ତେ ଆଶଙ୍କାର ଢ଼େଉ କ୍ରମଶଃ ମୁଣ୍ଡ ଟେକୁଥିଲା । ଏକଥା ଅନୁମାନ କରିପାରୁଥିଲା ନିଜେ ଅବନୀ । କାରଣ ତା' ଉପରେ ଭରସା କରିପାରୁ ନଥିଲେ, ଭଙ୍ଗା ସଂସାରକୁ ଆଗୁଳି ରଖିଥିବା ଏଇ ମଣିଷ ଦି'ଟା । ସ୍ୱାଭାବିକ କଥା । ସେ କ'ଣ କେବେ କାହାକୁ ବିଶ୍ୱାସର କାମ ଦେଖେଇଛି ନା, ବିଶ୍ୱାସ ଦେଇପାରିଛି ?

ତଥାପି ମା' ଝିଅ ଆଉ ପୁଅ ମିଶି ଲୁହ ଆଉ କୋହକୁ ନିଜ ନିଜ ଭିତରେ ବାଣ୍ଟିଥିଲେ । ବାଣ୍ଟିଥିଲେ ମଧ୍ୟ ଅଭିମାନ, ଅଭିଯୋଗ ଆଉ ଅସନ୍ତୋଷକୁ । ସବୁ ଜଗିରଖି, ନିଜକୁ ଖୋଲି ପାରୁନଥିଲେ ଶନ୍ଦେପଣ । ସନ୍ଦେହ, ଅବିଶ୍ୱାସ ଯିମିତି ମଝି ବାଟରେ ଠିଆହେଇ ବାଟ ଓଗାଳି ରହିଥିଲା ।

ତେବେ ବି ସୁରେଖା ହିଁ ପ୍ରଥମେ ପ୍ରଶ୍ନ କରିଥିଲା । "ସତ କହିଲୁ ଭାଇ ତୁ ଏତେ ବର୍ଷ ଧରି କୋଉଠି ଥିଲୁ ? ଅବଶ୍ୟ ତୁ ମିଛ କହିଲେ ବି ଆମର କିଛି କରିପାରିବାର ନାହିଁ । ତେବେ ବିଶ୍ୱାସ ଅଛି ତୁ ସତ କହିବୁ ।"

"ମିଛ କାହିଁକି କହିବି ଯେ, ସତ ହିଁ କହିବି । ଜଙ୍ଗଲରେ ଥିଲି ।"

"ଜଙ୍ଗଲରେ ? କାହିଁକି ?" ସନ୍ଦିଗ୍ଧ କଣ୍ଠରେ ସୁରେଖା ପଚାରିଲା । "ଏମିତି କି କାମ ଥିଲା ଜଙ୍ଗଲରେ, ତପସ୍ୟା ତ କରୁନଥିବୁ ।" କଥାରେ ବ୍ୟଞ୍ଜନା ଫୁଟେଇ ପ୍ରଶ୍ନକଲା ସୁରେଖା ।

Digitized by PPRACHIN, SOA

ଧରିନେ, ସେଇଭଳି କିଛି - ପ୍ରଶ୍ନ ଏଡ଼େଇବାର ପ୍ରୟାସ କଲା ଅବନୀ କଥାକୁ ହାଲୁକା କଲା, ତପସ୍ୟା କ'ଣ କେବଳ ଧର୍ମ ଅର୍ଜନ ପାଇଁ କରାଯାଏ ନା ସ୍ୱର୍ଗ ପାଇବାକୁ... ।

"ଆଉ ? ଈଶ୍ୱର ବିଶ୍ୱାସ ତୋ'ର କେବେ ନଥିଲା, ମୁଁ ଯାହା ଜାଣିଛି..." ସୁରେଖା ହାଲୁକା ଭାବେ କହିଲା ।"

"ଏବେ ବି ନାହିଁ । ତେବେ, ତୋ' ବୁଝିବା ପାଇଁ ମୋର ଏ ତପସ୍ୟା- ମଣିଷ ଜୀବନର ମୌଳିକ ଅଧିକାର ପାଇଁ ସେଇ ତା'ର ସ୍ୱର୍ଗ, ତା'ର ସୁଖଶାନ୍ତି, ମୁକ୍ତି ବୋଲି କହିପାରୁ । ହେଲେ...

"ତୁ ତା' ହେଲେ ଏ ଭିତରେ ମହାତ୍ମା ହେଇଗଲୁଣି ?" ଭାଇଭଉଣୀଙ୍କ କଥା ବୋଉ ଉପରେ କୌଣସି ପ୍ରଭାବ ପକଉନଥିଲା । ବରଂ ତା' ଶିରାଳ ମୁହଁରେ କଠିନରେଖା ସବୁ ଫୁଟିଉଠୁଥିଲା । ସୁରେଖା ଆଡ଼କୁ ଚାହିଁ ନାକ ଫଣକେଇ କହିଲା, ମିଛକଥା । ମହାତ୍ମା ନା ବିବେକାନନ୍ଦ, ସେ ନକ୍ସଲ, ମାଓବାଦୀ । ମଣିଷ ମାରୁଛି । ସ୍କୁଲ, ଡାକ୍ତରଖାନା ପୋଡୁଛି, ପୋଲ, ରେଳଲାଇନ୍ ଉଡ଼ଉଛି, ଡକେଇତି ଲୁଟତରାଜ କରୁଛି- ତପସ୍ୟା ନା ନିଆଁପାଉଁଶ । ଘୃଣାରେ ମୁହଁ ବୁଲେଇ ନେଇଥିଲା ତା' ଆଡୁ । ଅବନୀ କୌଣସି ପ୍ରତିକ୍ରିୟା ପ୍ରକାଶ ନକରି, ଟିକିଏ ହସିଦେଲା- "ତୋତେ କିଏ କହିଲା ବୋଉ, ମୁଁ ତ ଦେଶପାଇଁ କାମ କରୁଛି । ଚାଷୀ, ମୂଲିଆଙ୍କ ପାଇଁ ଭାବୁଛି । ଗରିବଙ୍କ ଭାଗ୍ୟ ବଦଳେଇବି ବୋଲି ପଣ କରିଛି । ଇଏ ବିପ୍ଳବ ବୋଉ - ମୋ' ପାଇଁ ଏକପ୍ରକାର ତପସ୍ୟା । ମୁଁ ଦେଶପ୍ରେମୀ, ବିପ୍ଳବୀ ।"

ବୋଉ ତୋ'ର ମୂର୍ଖ ସତ । ପାଠଶାଠ ପଢ଼ିନି । ବଡ଼ ବଡ଼ କଥା ଭାବିପାରିବନି । ହେଲେ ତୋ' ବାପାଙ୍କଠୁ ଶୁଣିଛି ବିପ୍ଳବ କ'ଣ, କାହାକୁ ଦେଶପ୍ରେମୀ କୁହନ୍ତି । ତୁ ମୋତେ ପାଠ ପଢ଼ଉଛୁ ? ନିଜକୁ ଦେଶପ୍ରେମୀ କହିବାକୁ ଲାଜ ଲାଗୁନି ଟିକେ । ଗାନ୍ଧୀ ଗୋପବନ୍ଧୁ ହେଇଯିବୁ ନା, ଛିଃ ଛିଃ ଛିଃ । ମୋତେ ଯାହା ମରଣ ହେଲାନି ତୋ' କଥା ଶୁଣି । ତୁ ଦେଶଦ୍ରୋହୀ । ଆଶା କରିନଥିଲି ତୋ' ମୁହଁ ଚାହିଁବି ବୋଲି । ସେଇ କୋଉ ଦିନରୁ... ବୋଉ ବୋଧେ ପଛକୁ ଫେରୁଥିଲା ତା' ଭାବନା ଜଗତର, ଶୂନ୍ୟଦୃଷ୍ଟି ନେଇ କହିଲା.. "ତୁ ତ ମରିଯାଇଥିଲୁ ମୋ' ପାଇଁ... ମୁଁ ଶୋକ ବି ପାଳନ କରିସାରିଥିଲି । ବୁଝେଇ ଦେଇଥିଲି ମନକୁ । ଯୋଉଦିନ ଗାଁର ସାନବଡ଼ ମଣିଷମାନେ ଆସି ମୋତେ କହିଥିଲେ, ଅବନୀ ମାଓବାଦୀ ହେଇଗଲା ଏବେ ମଣିଷ ମାରୁଛି ବ୍ୟାଙ୍କ ଲୁଟ୍ କରୁଛି... ସେଇ ଦିନରୁ, ମୁଁ ନିଜକୁ ବୁଝେଇ ଦେଇଥିଲି, ମୋର କେହି ନାହିଁ ମୁଁ ଅପୁତ୍ରିକ ।" ବୋଉ ଛାତିଫଟେଇ ବାହୁନିଲା ଭଳି କାନ୍ଦିଲା । ଉଚ୍ଛୁଳା ନଈଭଳି ଫୁଲିଉଠୁଥିଲା ତା' କୋହର ଆଷାଢ଼ୀ ନଈ ।

Digitized by PPRACHIN, SOA

ସୁରେଖା ବୋଉକୁ ବୁଝେଇବାକୁ ଚେଷ୍ଟା କଲା- "ତୁ ଏମିତି ଅଥୟ ହେଉଛୁ କାହିଁକି କହିଲୁ... ଭାଇ ତ ଫେରିଆସିଛି... ତୁ ଶୁଣୁ ତା' କଥା, ଅଭିମାନ କରନା ବୋଉ ସମୟ ଯାହା ଦେବା କଥା ଦେଇସାରିଛି ଆମକୁ । ଏତେ ଦୁଃଖ, ଅପମାନକୁ ଯେତେବେଳେ ସହିପାରିଲୁ ଏବେ କାହିଁକି ଭାଙ୍ଗିପଡୁଛୁ । ଦିନଦିଇଟା ଭାଇ ଟିକେ ଖାଇପିଇ ଶାନ୍ତିରେ ଶୋଉ, ତା'ପରେ ବୁଝିବୁ ତା' କଥା, ପୋଛିପକା ଲୁହ ବୋଉ ।"

ଅବନୀ ଭିତରଟା ଥରିଯାଉଥିଲା । ଏମିତି ଛାତିଫଟା କାନ୍ଦଣା ସେ ଦେଖି ନଥିଲା କେବେ । କି କରୁଣ, ଆହା, କେତେ କଷ୍ଟ ସେ ଦେଇଛି ବୋଉକୁ । ତରଳି ଯାଉଥିଲା ନିର୍ଦ୍ଦୟ ମାଓବାଦୀ ଅବନୀ ଓରଫ୍... । କେତେ ମା', କେତେ ବୋଉ ଆଖିରୁ ସେ ଲୁହ ଝରେଇଛି । ଏବେ ଦେଖିଲା ଅନୁଭବ କଲା ଜନ୍ମଦାତ୍ରୀର ବେଦନା । ଆଗରୁ କେବେ ଭାବିପାରି ନଥିଲା ।

ହଠାତ୍ କୁନି ଝିଅଟି କାନ୍ଦିଉଠିଲା ନିଦରୁ ଉଠି । ଧ୍ୟାନ ନଥିଲା ତା' ଆଡ଼େ । ସୁରେଖା ଧାଇଁଗଲା ତା' ପାଖକୁ । ଅବନୀ ବୁଝିପାରିଲା, ଝିଅଟାକୁ ଭୋକ ଲାଗୁଛି ନିଶ୍ଚୟ । ହେଲେ ସେ ତ ପିଇନେଇଛି ତା' କ୍ଷୀର । କେଡ଼େ ସ୍ୱାର୍ଥପର ସେ ପିଇଲାବେଳେ କାହିଁ ମନେପଡ଼ିଲାନି ତ ଝିଅଟା । ଏବେ କ'ଣ ଖୁଆଇବ ସୁରେଖା ତାକୁ ? କିମିତି ବୁଝେଇବ ଭୋକିଲା ଶିଶୁକୁ । ତୁ ବ୍ୟସ୍ତ ହୁଅନା ଭାଇ, ସେ ବୁଝିଯିବ ନିଜକୁ ନିଜେ । ଅବନୀ କିଛି ଉତ୍ତର ଦେଇପାରିଲାନି । ସତକଥା, ଏ ଦେଶର ସହସ୍ର ସହସ୍ର ଭୋକିଲା ଶିଶୁ ଏମିତି ନିଜକୁ ନିଜେ ବୁଝେଇ ଚୁପ୍ ହୁଅନ୍ତି- ସେ ଦେଖିଛି ଗାଁଗହଳିକୁ ଯାଇ । ସୁରେଖା ଗିନାରେ ଭାତ ଗୁଣ୍ଡାଏ ଆଣି ଲୁଣ ଦେଇ ଚକଟିଦେଲା, ଚିମୁଟାଏ ଚିନି ପକେଇ ସତକୁ ସତ ପିଆଇଦେଲା ବି । ତା' ମୁହଁ ପୋଛିଦେଇ ସୁରେଖା ଗେଲ କରୁ କରୁ ହସିଦେଲା ଝିଅଟି । ଅବନୀ ଭାବିଲା, ବୋଉର ଯୁକ୍ତି କିଛି ଭୁଲ୍ ନୁହେଁ । ଯୋଉଠି ନିଜ ମା', ଭଉଣୀ, ପୁଅଝିଅଙ୍କ ପେଟକୁ ଦାନା ଯୋଗେଇବାରେ ତା'ଭଳି ଏ ଦେଶର ଯୁବକ ଅସମର୍ଥ, ସେ ପୁଣି ଦେଶଜାତିର କି କଲ୍ୟାଣ କରିବ ? ସ୍କୁଲ ପୋଡ଼ିଲେ, କି ମଣିଷ ମାରିଲେ ଏ ସମସ୍ୟାର ସମାଧାନ ହେବ କି ? ପାଟି ପାଖକୁ କେବେ ଖାଦ୍ୟ ଆସିବନି । ବୁଦ୍ଧି ଖଟେଇ ଖାଦ୍ୟ ଉପୁଜେଇବାକୁ ପଡ଼ିବ, ପରିଶ୍ରମ ଦେବାକୁ ହେବ । ବୋଉର ପୁରୁଣା ବିଚାର ସତ । ହେଲେ ବୋଉ ଠିକ୍ କହୁଛି, ତମେ ତ ଦେଶର କ୍ଷତି କଲ, ସଂପତ୍ତି ନଷ୍ଟ କଲ, ଭୟରେ ମଣିଷ ଜମି ପାଖକୁ ଗଲେନି - ପଡ଼ିଆ ପଡ଼ିଲା କ୍ଷେତ । ନିଜ ଶକ୍ତି ନଷ୍ଟ କଲ ମଣିଷ ମାରୁ ମାରୁ, ଖାଦ୍ୟ ଆସିବ କୁଆଡୁ ? କିଏ ଦେବ ? ନିଜେ ବଞ୍ଚିଲେ ସିନା ଅନ୍ୟକୁ ବଞ୍ଚେଇବ ।

Digitized by PPRACHIN, SOA

ସେ ତ ସେଇ କଥା ହିଁ ଭାବିଥିଲା । ନିଜପାଇଁ ଭାବିବାକୁ ଯାଇ, ବିରାଜ ଚଂପତି ଶିବିରରେ ପହଞ୍ଚିଥିଲା । କ'ଣ ହେଲା ଫଳ ? ସେ ତ ଠକି ହେଇଗଲା । ଅବନୀ ଭାବିଲା, ଏ ଦେଶର ମାର୍ଗଦର୍ଶକ ଯଦି ନିଜ ସ୍ୱାର୍ଥ ପାଇଁ ଯୁବଶକ୍ତିକୁ ଉପଯୁକ୍ତ ମାର୍ଗ ନ ଦେଖେଇବେ, ତା' ଭଳି ଅଜ୍ଞାନ, ନିରୀହ ଯୁବକ ତ ବାଟ ଭୁଲିବ ହିଁ । ମନେପଡ଼ିଲେ ବାପା, ଗୋପବନ୍ଧୁଙ୍କ ବିଷୟରେ ପଢ଼େଇଲା ବେଳେ ସେ ଏ କଥା ଅନେକ ଥର କହିଛନ୍ତି ତ ଆମ ଦେଶ ସେବକମାନେ ଏଇ ଯୁବଶକ୍ତିକୁ ଉପଯୁକ୍ତ ମାର୍ଗରେ ବିନିଯୋଗ କରି ଦେଶର ଚେହେରା ବଦଳେଇ ଦେଇଛନ୍ତି । ସବୁ ପ୍ରକାର ଶକ୍ତିଠୁ ଯୁବଶକ୍ତି ମୂଲ୍ୟବାନ ସଂପତ୍ତି । ସେତେବେଳେ ଏସବୁ ନୀତିବାକ୍ୟ ଶୁଣିବାର ଇଚ୍ଛା ନଥିଲା ତା'ର । ବାପା କମ୍ ବିରକ୍ତ ହେଇନାହାନ୍ତି ତା' ଉପରେ ଏଥିପାଇଁ ।

ବେଳେବେଳେ ମଣିଷ ଏମିତି ବାଟବଣା ହୁଏ । ପୁରୁଣା ବିଚାର ଭାବି ଆଡ଼େଇ ଦେବାକୁ ମନେହୁଏ । ଆଉ ଦଶପାଞ୍ଚ ଯୋଉ ବାଟରେ ଘୋଷାରି ହେଇ ଚାଲିଛନ୍ତି, ସେଇ ପୁରୁଣା ଶଗଡ଼ ଗୁଳାରେ ଚାଲିବାକୁ ମନ ହୁଏନି । ବିଦ୍ରୋହ କରିବାକୁ ଇଚ୍ଛା ହୁଏ, ବୟସଟା ବି ଉଚ୍ଛନ୍ନ କରେ । ଲାଗେ, ଗଣତନ୍ତ୍ର ନାଁରେ ଥୋଡ଼ାଏ ମଣିଷ ସବୁ ସୁଖସୁବିଧା ଭୋଗ କରିବେ ଆଉ ଥୋଡ଼େ ଭାଗ୍ୟକୁ ଆଦରି କର୍ମଫଳ ବୋଲି ପଚାସଢ଼ା ଜୀବନକୁ ଆଦରି ନେବେ । ଅନ୍ୟର ଦୟା ଉପରେ ନିର୍ଭର କରି ବଞ୍ଚିଛନ୍ତି ବୋଲି ବଞ୍ଚିବେ - ମନ ହୁଏନା ଏକଥା ମାନିବାକୁ ।

ତା'ର ବି ସେଦିନ ଏମିତି ମନ ହେଇଥିଲା । କିଛି କରିପକେଇବ । କିଛି ନହେଲେ ଏଇ ସୁବିଧାବାଦୀମାନଙ୍କ ମୁଖା ଖୋଲିଦେବ । ନିଜ ଅଧିକାର, ନିଜ ଦାବିକୁ ଛଡ଼େଇ ଆଣି ବାଣ୍ଟିଦେବ ସଭିଙ୍କ ହାତରେ । ଏଇ ଅଭିପ୍ରାୟରେ ତ ସେ ଯୋଗ ଦେଇଥିଲା ବିପ୍ଳବୀ ଗୋଷ୍ଠୀରେ । ସେ କ'ଣ ଜାଣିଥିଲା ମଣିଷର ଉପକାର କରିବା ବଦଳରେ ତାଙ୍କ ଜୀବନ ନେଇ ଖେଳିବ । ଅନେକ ଦିନ ପରେ ହିଁ ତା'ର ଏଇ ଧାରଣା ବଦଳି ଯାଇଥିଲା । ଜଣେ ଅସହାୟ ଗ୍ରାମରକ୍ଷୀ, କିମ୍ବା ଗରିବ ଚାଷୀ, ଅଥବା ଗାଉଁଲି ଠିକାଦାରକୁ ହତ୍ୟାକରି, କିଏ ଦେଶର ପରିବର୍ତ୍ତନ ଆଣିପାରିବ ନା ଆଶା କରିପାରିବ ? ଏଇ ରାସ୍ତା ହିଁ ଭୁଲ୍ ।

ପଙ୍କଜିନୀ ସେଦିନ ତା'ର ଆଖି ଖୋଲି ଦେଇଥିଲା । ତା' ଆଗରୁ ସୀମା... । ଏବେ ବୋଉ ଘୃଣାରେ ହେଉପଛକେ ସେଇ କଥା ମନେପକେଇ ଦେଉଛି ।

ଅବଶ୍ୟ ଘରର ଅନଟନ, ବୋଉର ହା'ହୁତାଶ ଜୀବନ ତାକୁ ଏଭଳି ଭାବିବା ପାଇଁ ବାଧ୍ୟ କରିଛି । ଅଗ୍ରୁଭାଇ ଯଦି ଏତେଟା ସ୍ୱାର୍ଥପର ହେଇନଥାନ୍ତା, ହୁଏତ ବୋଉ କିଛିଟା ଆଶ୍ୱାସନା ପାଇଥାନ୍ତା । ଜୀବନକୁ ଭିନ୍ନ ଦୃଷ୍ଟିରେ ଦେଖିଥାନ୍ତା ।

Digitized by PPRACHIN, SOA

ଅରୁଭାଇ ନିଜ କଥା ହିଁ ଭାବିଲା । ନିଜ ସ୍ୱପ୍ନକୁ ସାକାର କରିବ ବୋଲି, ବାଟଭାଙ୍ଗି ଚାଲିଗଲା । ବଡ଼ଘରର ଝିଅ ସୁନା ମିରିଗ ହେଇ ତାକୁ ଭିନ୍ନ ରାସ୍ତାକୁ ନେଇଗଲା । ଅରୁଭାଇ ତ ଆଉ ପୁରୁଷୋତ୍ତମ ନୁହେଁ, ସାଧାରଣ ମଣିଷ । ସୁରେଖା କହୁଥିଲା, ଏବେ ସେ ଡେପୁଟି ମାଜିଷ୍ଟ୍ରେଟ୍ ହେଇ କଟକରେ କୋଉଠି ଅଛି । ଅଲଗା ଘର କରି ଦେଇଛି ତା' ଶ୍ୱଶୁର । ଘର ସହିତ ସଂପର୍କ ରଖିନି । ନ ରଖିବାର ମୁଖ୍ୟ କାରଣ ବି କୁଆଡ଼େ ସେ ।

ଅରୁଭାଇକୁ ଲାଜ ଲାଗିଲା, ମାଓବାଦୀ ଅବନୀ ପରିଡ଼ାର ଭାଇ ବୋଲି ବାହାରେ ପରିଚୟ ଦେବାକୁ । ଭୟ ବି ଲାଗିଥିବ, ଚାକିରି ସ୍ତରରେ କାଳେ କିଛି ବିପଦ ଆପଦ ଆସିବ ବୋଲି । ସୁରେଖାଠୁ ଏକଥା ଶୁଣିଲାପରେ, ତାକୁ ଖରାପ ଲାଗିଲା ନାହିଁ କି ଦୁଃଖ ବି କଲାନି ଆଜି । ଆଉ ସାତ ବର୍ଷ ତଳେ ଯଦି ଏକଥା ସେ ଶୁଣିଥାନ୍ତା ନିଶ୍ଚୟ ପ୍ରତିକ୍ରିୟାଶୀଳ ହେଇଉଠିଥାନ୍ତା । କିନ୍ତୁ ଆଜି ଏ ସମସ୍ତ ଅପମାନ, ଅଭିଯୋଗକୁ ନିରବରେ ହଜମ କରିନେଲା । ଏଇୟା ଭାବି ଯେ, ସତରେ କ'ଣ ତା'ର କିଛି ଦାୟିତ୍ୱ ନଥିଲା ପରିବାର ପାଇଁ, ବୋଉ ପାଇଁ, ସୁରେଖା ପାଇଁ ? ସେ କ'ଣ କରିଛି କି ?

ସୁରେଖା କଥା ଭାବିବାକୁ ଯାଇ ଅବନୀର କୁନି ଝିଅଟି କଥା ମନେପଡ଼ିଲା । ସତରେ ଅମୃତ କଳସଟିଏ । ଏତେସବୁ ଜୀବନଯନ୍ତ୍ରଣାକୁ ଉଲ୍ଲାସରେ ରୂପାନ୍ତରିତ କରି, ଜୀବନ ଜିଇବାର ଖୋରାକ ଯୋଗାଉଛି । ଈଶ୍ୱରଙ୍କ ଇଏ କିଛି କମ୍ ଅବଦାନ ନୁହେଁ । ହେଲେ ସୁରେଖା । ଏଯାଏ ବି ତ ସେଇ ରହସ୍ୟ ଟିକେ ଖୋଲିଲାନି । ସେଇ ଏକା ଉତ୍ତର, "ଅସହାୟ ଅନାଥ ଶିଶୁଟିଏ, କେହି ନାହାନ୍ତି ତା'ର । ସହିପାରିଲିନି, ନେଇ ଆସିଲି ପାଖକୁ । ସେ ବଞ୍ଚୁଛି, ଆମକୁ ବଞ୍ଚଉଛି, ଆମେ ତା'ରି ପାଇଁ ବଞ୍ଚୁଛୁ । ୟା'ଠୁ ଅଧିକା କିଛି ପଚାରନା ଭାଇ ।"

ସୁରେଖା ବଡ଼ ମଣିଷ ଭଳି କଥା କହୁଛି । ଜୀବନ ତାକୁ ବରିଷ୍ଠତା ପ୍ରଦାନ କରିଛି । ମା' ନହେଇ ବି ମା'ର ଗୌରବ ଅର୍ଜନ କରିଛି । ନିଜକୁ ଭାଗ କରିଦେଇଛି ସୁରେଖା । ତା' ପାଟିରେ ଆହାର ଦେବ ବୋଲି ଚାକିରି ଖଣ୍ଡେ ବି ଯୋଗାଡ଼ କରିଛି, ଏଇ ଗାଁ ସ୍କୁଲରେ ଶିକ୍ଷା ସହାୟିକା । ହଜାରେ ବାରଶ' ଟଙ୍କା । ତିନି ପ୍ରାଣୀ ଖାଇପିଇ ବଞ୍ଚିବା କିଛି ସହଜ କଥା ନୁହେଁ । ମେସିନ୍‌ଟିଏ ରଖି ସିଲାଇ କରୁଛି, କିଛି ତ ରୋଜଗାର ହେଉଛି । କୁନି ଝିଅଟା ହିଁ ତା'ର ପ୍ରେରଣା । ସୁରେଖା କଥା ଭାବିଲାବେଳକୁ ତା' ମନ ପ୍ରସନ୍ନ ହିଁ ହେଇଉଠିଲା । ଝିଅଟିଏ ହେଇ ସୁରେଖା ହାର ମାନିନି ପରିସ୍ଥିତି ଆଗରେ । ଜୀବନକୁ ସରସ ସୁନ୍ଦର କରି ନପାରିଲେ ବି ଜୀବନକୁ ତ ବଞ୍ଚିଲା ଏବଂ ଆଉ ଦି'ଟା ଜୀବନକୁ ବଞ୍ଚେଇଲା । ଅଥଚ ସେ... ?

Digitized by PPRACHIN, SOA

ହଠାତ୍ ସଚେତନ ହେଲା ଅବନୀ । ଭାବନାର ଘଣ୍ଟା ଚକଟା ଭିତରେ ଅଧାଦିନ ସେ ସାରିଦେଲାଣି । ତା'ର ହୋସ୍ ନାହିଁ । ଏଇ ରାତିରେ ତା'ର ଯିବା କଥା । ନିଜ ସଂପର୍କରେ ବିଶେଷ ନିଷ୍ପତ୍ତି ନେବା ଆଗରୁ ତା'ର ଗୋଟାଏ କଥା ମନେପଡୁଥିଲା, ଏବଂ ଜାଣିବାକୁ ବି ଚାହୁଁଥିଲା । ପଚାରିବ ପଚାରିବ ବୋଲି ପଚାରି ପାରୁ ନଥିଲା ସୁରେଖାକୁ ମାଡ଼ି ମାଡ଼ି ପଡୁଥିଲା ନିଜକୁ ।

ଗରମ ଭାତରେ ପାଣିଢ଼ାଳି କଖାରୁ ଶାଗଭଜା ସାଙ୍ଗକୁ ଆଳୁଚକଟା ବାଢ଼ି ସୁରେଖା ଭାଇକୁ ଡାକିଲା । ଆରେ ସାନଭାଇ ଖାଇବୁ । ଅନେକ ଡେରି ହେଇଗଲାଣି ।

ଖାଇବାକୁ ବସି ଅବନୀ ପଚାରିଲା, ବୋଉ ଖାଇବନି ? ଆଜିକାଲି ଇଚ୍ଛା ହେଲେ ଖାଉଛି, ନହେଲେ ନାହିଁ । ତେବେ ଆଜି ଦି'ଗୁଣ୍ଡା ଖାଇଛି । ଶୋଇବାକୁ ଗଲାଣି ଝିଅକୁ ନେଇ । ଭାଇଭଉଣୀ ସାମ୍ନାସାମ୍ନି ବସିଲେ ଖାଇବା ପାଇଁ । ଅନେକ ଦିନ ପରେ ଏଇ ସୁଯୋଗ ମିଳିଥିଲା ଦୁହିଁଙ୍କୁ । ଅନେକ ସମୟ ଯାଏ ଦୁହେଁ ଚୁପ୍‌ଚାପ୍ ଥିଲେ । ନିରବତା ଭଙ୍ଗ କରି ସୁରେଖା ପଚାରିଲା, "ଭଲ ଲାଗୁନଥିବ ନା ଖାଇବାଟା । ତେବେ କିଛି ଭଲମନ୍ଦ ରାନ୍ଧି ଦେଇପାରିଲିନିରେ ଭାଇ । ଯା'ଠୁ ତ ଅଧିକା କିଛି ଯୋଗାଡ଼ କରିପାରୁନି, ଏମିତି ଯାଇତାଇ ଖାଇ ବଞ୍ଚିଯାଉଛି ଜୀବନଟା । ତୋତେ ରୁଚୁ ନଥିବା ମୁଁ ଜାଣିଛି ଯେ ।"

ଛଳଛଳେଇ ଉଠିଲା ଅବନୀର ଆଖି । ସୁରେଖା ମୁଣ୍ଡରେ ହାତରଖି ଆବେଗ ଜଡ଼ିତ କଣ୍ଠରେ କହିଲା, ତୁ ତ ଅମୃତ କଂସାଏ ବାଢ଼ିଦେଲୁ ମୋ' ଆଗରେ । ମୋ' ସରିଆସୁଥିବା ଜୀବନକୁ ଆହୁରି ଲମ୍ବେଇ ଦେଲୁ- ଯା'ଠୁ ଆଉ ଅଧିକା କ'ଣ ଦେଇଥାନ୍ତୁ ? ସୁରେଖା ଚମକି ଉଠିଲା, ହାତରୁ ଖସିପଡ଼ିଲା ଭାତଗୁଣ୍ଡା । ଏ କ'ଣ କହୁଛୁ ତୁ ଭାଇ, ଏମିତି କାହିଁକି କହିଲୁ ଯେ ? 'ମୋ' ହାତରେ ଆଉ ସମୟ ନାହିଁ । ଆଜି ରାତିରେ ମୋତେ ଯିବାକୁ ପଡ଼ିବ । କିଛି ସମୟ ନିରବ ରହି ପୁଣି ସେ ପଚାରିଲା, "ମୋର କିଛି ପଚାରିବାର ଥିଲା ତୋତେ ।"

ପଚାରୁନୁ, କ'ଣ ପଚାରିବୁ । ମନେ ମନେ କିନ୍ତୁ ସେ ଜାଣିଥିଲା ସାନଭାଇ କ'ଣ ପଚାରିବାକୁ ଚାହୁଁଛି । ସୀମା ଅପା କଥା, ଭାଇ ଭୁଲିପାରିନି । ଏ ପର୍ଯ୍ୟନ୍ତ ସେ କଥାକୁ ଏଡ଼େଇ ଆସିଥିଲା । ଆଉ ସମ୍ଭବ ହେବନି... ।

"ସିଦ୍ଧ ବଡ଼ବାପାଙ୍କ କଥା, ତାଙ୍କ ଘରକଥା, ଆଉ ସୀମା...", କୌଣସି ଭୂମିକା ନକରି ସିଧାସଳଖ ପଚାରିଲା ଅବନୀ । "କ'ଣ ସେମାନଙ୍କ ଖବର ?"

ଗୋଟାଏ ଲମ୍ବା ନିଃଶ୍ୱାସ ନେଇ ଛାଡ଼ିଲା ସୁରେଖା । କିମିତି କ'ଣ କରି କହିବ କୋଉଠୁ ଆରମ୍ଭ କରିବ, ବୋଧେ ଭାବୁଥିଲା । ଅବନୀର ତର ସହୁ ନ ଥିଲା, ପୁଣି

Digitized by PPRACHIN, SOA

ପଚାରିଲା, ଚୁପ୍ ରହିଲୁ ଯେ ? ଅବନୀର ଉତ୍କଣ୍ଠତା ବଢୁଥିଲା କ୍ରମଶଃ । ନାଇଁ, କହୁଛି । ଧୀରେ ଧୀରେ ଆରମ୍ଭ କଲା- "ସେ ଅନେକ କଥା ଭାଇ, ନଈରେ ଅନେକ ପାଣି ବହିଯାଇଛି ଏଇ କେଇଟା ବର୍ଷରେ । ସିଦ୍ଧ ବଡ଼ବାପାଙ୍କ ଘରେ ଆଉ କେହି ନାହାନ୍ତି ଭାଇ । ରମାଅପା କେବଳ ଅଛି ତା' ଶାଶୂଘରେ । ତୋ' ଯିବା ବର୍ଷ ହିଁ କୁନ୍ତୀ ଦେଠେଇ ଚାଲିଗଲେ, କ'ଣ ଗୋଟିଏ ପେଟ ବେମାରିରେ । କ୍ୟାନସର ନା କ'ଣ ସେଭଳି କିଛି ଗୋଟାଏ ରୋଗ । ଭୟଙ୍କର ଯନ୍ତ୍ରଣା ଭୋଗ କରିଥିଲେ ଦେଠେଇ । ତା'ପର ବର୍ଷ ସିଦ୍ଧ ବଡ଼ା'ପା ସୀମା ଅପାର ବାହାଘର କରିଦେଲେ କଷ୍ଟେମଷ୍ଟେ । ଛତିଶଗଡ଼ରେ ତା' ଶାଶୂଘର । ବର ପୋଲିସ୍ ଅଫିସର୍ । ତା'ପର ଦି'ଟା ବର୍ଷ ସମ୍ଭାଳି ନେଲେ ସିଦ୍ଧବଡ଼ା'ପା । ସେ ପର୍ଯ୍ୟନ୍ତ ବୋଉ ଯାଉଥିଲା ତାଙ୍କ ଘରକୁ । କ'ଣ ଦି'ଟା ରୋଷେଇ କରିଦେଇ ଆସୁଥିଲା । କଷ୍ଟଭାଇ ଖରାପ ଲୋକଙ୍କ ସହିତ ମିଶି ମଦ ଖାଇଲେ, ଜୁଆ ଖେଳିଲେ ଅବାଟକୁ ଗଲେ । ଖୁବ୍ ଅସହାୟ ହେଇଯାଇଥିଲେ ବଡ଼ାପା'... ।"

ଅବନୀ ତଟସ୍ଥ ହେଇ ଶୁଣୁଥିଲା ଏବଂ ଭାବୁଥିଲା, ସେଦିନର ପ୍ରତାପୀ ସିଦ୍ଧେଶ୍ୱର ବଡ଼ବାପା, ଗାଁ ମୁଖିଆ, ସରପଞ୍ଚ, ଏକର ଏକର ଜମିର ମାଲିକ, ଠୋଟାପାଟ, ଗାଡ଼ିଘୋଡ଼ା କୌଣସିଥିରେ ଊଣା ନଥିଲା ପ୍ରଭୁପଣରେ ଝଲମଲ ହେଇଉଠୁଥିଲା ତାଙ୍କ ସଂସାର । ନାଁ ଶୁଣିଲେ ଲୋକେ କୃତାର୍ଥ ମନେକରୁଥିଲେ ନିଜକୁ । ଏତେ କଥା ଘଟିଗଲା ଏକାବେଳକେ । ସମୟ ପାଖରେ ହାର ମାନିଗଲା ବଡ଼ା'ପାଙ୍କ ପ୍ରତାପୋଜ୍ଜ୍ୱଳ ବ୍ୟକ୍ତିତ୍ୱ, ହାର ମାନିଗଲେ । ଏମିତି ବୋଧେ ହାର ମାନିଯାଏ ମଣିଷ । ସମୟ କାହାକୁ ବାଟ ଛାଡ଼େନା ।

ଆଉ ତା' ସୀମା ? ସୀମା କଥା ଶୁଣିବା ପାଇଁ ସେ ଉଦ୍‌ଗ୍ରୀବ ହେଇଉଠୁଥିଲା । ପଚାରିଦେଲା ମଧ୍ୟ ସୁରେଖାକୁ, କ'ଣ କହିଲୁ, ସୀମାବର କ'ଣ କରୁଥିଲେ ?

– ପୋଲିସ୍ ଅଫିସର ଥିଲେ ପରା । ସେଇ ଛତିଶଗଡ଼ର କୋଉ ଜିଲ୍ଲାରେ । ସୀମା ଅପା ବି ସେଇଠି ଥିଲା । ଏଇ ଝିଅ ତା'ର ସେଇଠି ଜନ୍ମ ହେଇଥିଲା... ।

– ଇଏ ସୀମାର ଝିଅ । ଆଖିରେ ବିସ୍ମୟ ଫୁଟେଇ ପଚାରିଲା ଅବନୀ – "ସୀମାର ଝିଅ ଇଏ ?"

– ହଁ ରେ ଭାଇ । ଝିଅର ଏକୁଶିଆ ଖୁବ୍ ଧୂମ୍‌ଧାମରେ କରିଥିଲା କୁଆଡ଼େ ସୀମା'ପା । ସେଇ ଏକୁଶିଆ ପାଇଁ ତ ଭାରବୋଝ ନେଇ ସିଦ୍ଧବଡ଼ବାପା, କଷ୍ଟଭାଇଙ୍କୁ ଧରି ଯାଉଥିଲେ ଛତିଶଗଡ଼ । ମା' ନଥିବା ଝିଅଟା, ନ ଗଲେ ଅଭିମାନ କରିବ ବୋଲି କହିଥିଲେ ବୋଉକୁ । ବୋଉକୁ ବି ଡାକୁଥିଲେ ଯିବାପାଇଁ । ଈଶ୍ୱରଙ୍କ ଅପାର କରୁଣା, ବୋଉ ମନା କରିଦେଲା । ନ ହେଲେ... ସୁରେଖାର କଣ୍ଠସ୍ୱର କୋହରେ ଥରିଉଠିଲା ।

Digitized by PPRACHIN, SOA

– ସେଇଠୁ... କ'ଣ ହେଲା ? ଅବନୀ ବ୍ୟସ୍ତ ହୋଇ ପଚାରିଲା ।

– ଛତିଶଗଡ଼ ପହଞ୍ଚିବା ପୂର୍ବରୁ ବସ୍ ତାଙ୍କର ଆକ୍ସିଡେଣ୍ଟ ହେଲା । ମାଓବାଦୀମାନେ ଲ୍ୟାଣ୍ଡମାଇନ୍ ବିଛେଇ ଦେଇଥିଲେ ବୋଲି ସମସ୍ତେ କହିଲେ । ସିଦ୍ଧବଡ଼ବାପା ଏବଂ କଳ୍ପଭାଇଙ୍କ ଶବ ଫେରିଆସିଥିବଲା ଗାଁକୁ । ସେତିକିବେଳେ ଆସିଥିଲା ସୀମା ଅପା । ତା' ବର କିନ୍ତୁ ଆସିନଥିଲେ । ରମା ଅପା ଓ ତା' ବର ଆସି ବଡ଼ବାପାଙ୍କ ଶେଷକୃତ୍ୟ କରିଯାଇଥିଲେ ।

– ତାଙ୍କର ଜମିବାଡ଼ି କଥା କିଏ ବୁଝୁଛି ?

– ତାଙ୍କର କିଏ ଜଣେ ସଂପର୍କୀୟ ଭାଇ ଥିଲେ ଶଙ୍କରଦାଦା, ସେଇ ସବୁ ବୁଝାବୁଝି କରୁଛନ୍ତି ଏଠି ରହି । ରମାଅପା ବର ମଝିରେ ମଝିରେ ଆସି ବୁଝିଯାଉଛନ୍ତି । ନଚେତ୍ ଶଙ୍କରଦାଦାଙ୍କ ଉପରେ ସବୁ ଦାୟିତ୍ୱ । ଜମି ଆଉ ବିଶେଷ କିଛି ନାହିଁ । ଯାହାର ଜମିସବୁ ବନ୍ଧକ ରଖିଥିଲେ, ସେ ସବୁକୁ ଫେରେଇ ଦେଲେଣି ଜମି ମାଲିକଙ୍କୁ । କିଏ ଖାଉଛି, କିଏ ନଉଛି, କେହି ନାହିଁ ଦେଖିବାକୁ । ଜାଣ, ହରିଲୁଟ ଚାଲିଛି । କୁନ୍ତୀ ଦେଠେଇ ସତରେ ଲକ୍ଷ୍ମୀବନ୍ତୀ ଥିଲେ । ତାଙ୍କ ଯିବା ବାସି ସବୁ ଯିମିତି ଅନର୍ଥ ଘଟିଲା । ଲକ୍ଷ୍ମୀ ଥରେ ଗୋଡ଼ କାଢ଼ିଲେ କିଏ ଅଟକେଇବ । ଉଜୁଡ଼ିଗଲା ସଂସାରଟା । ଅଭିଶାପ ଅସନ୍ତୋଷର ଫଳ ।

– ଆଉ ସୀମା ? ଏଇ ଝିଅ ତୋ' ପାଖକୁ ଆସିଲା କିମିତି ? ବ୍ୟଗ୍ରତା ବଢୁଥିଲା ଅବନୀର । କେମିତି ଗୋଳମାଳିଆ ଧରୁଥିଲା କାହାଣୀଟା ସ୍ପଷ୍ଟଚିତ୍ର ସେ ଆଙ୍କି ପାରୁନଥିଲା କିଛି । ସୁରେଖା କିଛି ନ କହି କାନ୍ଦିବାକୁ ଲାଗିଲା । ବ୍ୟସ୍ତ ହେଇପଡ଼ିଲା ଅବନୀ ଘଟଣା କ'ଣ ? ସୁରେଖା କାହିଁକି କାନ୍ଦୁଛି, ପୁଣି ଏଇ ଝିଅ... ଏଇଠି... ତୁ କାନ୍ଦିଲେ ମୁଁ କ'ଣ ବୁଝିବି କହିଲୁ ?

ସୁରେଖା କିଛି ସମୟ ପରେ ଢୋକ ଗିଳିଲା । ବୋଧେ ଶେଷକଥା ଶୁଣେଇବା ପାଇଁ । ...ସେଇ ବର୍ଷ ସୀମାଅପାର ବର ବଦଳି ହେଇଗଲେ ସେଇ ପାଖର ଗୋଟାଏ ଥାନାକୁ ଖୁବ୍ ଭଲ ସଚ୍ଚୋଟ ଅଫିସର ଥିଲେ । ସେଇଠି ମାଓମାନେ ମାତିଥିଲେ କୁଆଡ଼େ । ସେମାନଙ୍କୁ ଦମନ କରିବା ପାଇଁ ସ୍ପେଶାଲ ଅଫିସର ଭାବେ ଜଏନ୍ କରିଥିଲେ ସୀମାଅପାର ବର । ସରକାରଙ୍କର ଅତିପ୍ରିୟ ଥିଲେ କୁଆଡ଼େ । ଆଠ, ନ' ମାସ ତ ହେଇଛି, ଦିନେ ଅଧ ରାତିରେ ପଚାଶ ଷାଠିଏ ମାଓ ଥାନା ଆକ୍ରମଣ କରି ଅସ୍ତ୍ର ଲୁଟି ନେଲେ ।

– ସେମାନଙ୍କ ସହିତ ମୁକାବିଲା କରୁ କରୁ ସୀମାଅପା ବର ଟଳିପଡ଼ିଲେ ସେଇଠି । ଅବନୀର ନିଃଶ୍ୱାସ ସତେ ଯେମିତି ବନ୍ଦ ହେଇଯିବ, ସେମିତିକା ଅବସ୍ଥା । ସଂପୂର୍ଣ୍ଣ ଝାଳେଇ ଯାଉଥିଲା ସେ । ସୁରେଖାର କଥା କିନ୍ତୁ ଶେଷ ହେଇନଥିଲା, କହିଲା

Digitized by PPRACHIN, SOA

ଈଶ୍ୱର ଯେତେବେଳେ ନିର୍ଦ୍ଦୟ ହୁଅନ୍ତି, ସେଠି କଥା ସରିଯାଏ ଭାଇ । ସୀମାଅପା ଏତେ ବଡ଼ ଆଘାତ ସହିପାରିଲାନି । ସେଇ ଦୁଃଖଦ ଘଟଣା ଘଟିବାର ମାତ୍ର ଚାରି ଛ' ଘଣ୍ଟା ଭିତରେ ସୀମାଅପା ଆଖି ବୁଜିଦେଲା, ତା' ଛାତିର ଧୁକ୍‌ଧୁକିଟା ବନ୍ଦ ହେଇଗଲା ଦେଖୁ ଦେଖୁ । ଝିଅଟାର ମୋହ ବି ବାନ୍ଧି ରଖିପାରିଲାନି ତାକୁ । ଏଇ ସେଇ ହତଭାଗିନୀ । ମୁଁ ନେଇଆସିଛି । ରମାଅପା ଯାଇ ନେଇ ଆସିଥିଲା । ତା'ର ଇଚ୍ଛା ଥିଲା କି ନଥିଲା କେଜାଣି, ତା' ରାହାବାଳୀ ଶାଶୂନଣନ୍ଦଙ୍କର ମୋଟେ ଇଚ୍ଛା ନଥିଲା ଦାୟିତ୍ୱ ନେବାକୁ । ଅନାଥାଶ୍ରମରେ ଛାଡ଼ିଦେବାକୁ ବିଚାର କରିଥିଲେ, ମୋ' ମନ ସହିଲାନି ତ ମାଗିଆଣିଲି । କେହି ମନା କରି ନଥିଲେ ।

ଅବନୀ ପଥର ପାଲଟି ଯାଇଥିଲା । ପାଟିରୁ କଥା ବାହାରି ନଥିଲା । ବହୁ କଷ୍ଟରେ ପଚାରିଲା, ତାଙ୍କ ନାଁ କ'ଣ କହିଲୁ ?

ଦେବୀ ଦାସ । ସରକାର ଦେବୀ ଦାସଙ୍କୁ ସଫଳ ପୋଲିସ୍ ଅଫିସର ବୋଲି ଘୋଷଣା କରି ପୁରସ୍କୃତ କରିଥିଲେ । ଶୁଣିଥିବୁ ଖବରକାଗଜରୁ । ଅବନୀ ଉପରେ ସତେ ଯେମିତି ଆକାଶ ଛିଡ଼ିପଡ଼ିଲା । ଅନ୍ଧାର ଦିଶିଲା ଚାରିଆଡ଼ । ପୃଥିବୀର ସବୁ ବଉଳଗଛର ବଉଳଫୁଲ ପୋଡ଼ିଜଳି ପାଉଁଶ ହେଇଗଲା ସତେ କି ! ବଉଳଫୁଲର ବାସ୍ନା ବଦଳରେ, ବାରୁଦର ନାକଫଟା ଗନ୍ଧ ଯିମିତି ତାକୁ ଓ ତା' ଚେତନାକୁ ଆକ୍ରାନ୍ତ କରିପକାଉଥିଲା - ସେ କ'ଣ କଲା । କ'ଣ କଲା ସେ !

ଆଖିରେ ଭାସିଉଠିଲା, ସେଇ ଭୟଙ୍କର କାଳିମାମୟ ରାତ୍ରିର ଅମାନୁଷିକ ଘଟଣା । ଛତିଶଗଡ଼ର ୧୮ ନମ୍ବର ଥାନା ଆକ୍ରମଣର ଟିକିନିଖି ଚିତ୍ର । ଦେବୀଦାସ ଥାନା ଇନ୍‌ଚାର୍ଯ୍ୟ, ସାହସୀ ଅଫିସର - ତା' ଦଳକୁ ଲଣ୍ଡଭଣ୍ଡ କରିଦେଇଥିଲା କିଛି ସମୟ ପାଇଁ- ଛତ୍ରଭଙ୍ଗ ଦେଇଥିଲେ ମାଓବାଦୀ ବୋଲି ଖବର ପହଞ୍ଚିଥିଲା ତା' ପାଖରେ । ସେ ପୁଣିଥରେ ଆସିଥିଲା କିଛି ସହଯୋଗୀଙ୍କୁ ନେଇ ଥାନାକୁ । ମାଓମାନେ ଛତ୍ରଭଙ୍ଗ ଦେଲେ ବୋଲି ଭାବି, ପୋଲିସ୍ ମୃତ ଏବଂ ଆହତ ଜବାନଙ୍କ ସେବା ଶୁଶ୍ରୂଷାରେ ଲାଗିଥିଲା । ନିଜେ ମଧ୍ୟ ଦେବୀଦାସ ଆହତ ହେଇଥିଲେ । ଏକ ଅତର୍କିତ ଅସାବଧାନ ମୁହୂର୍ତ୍ତ । ଦେବୀଦାସଙ୍କ ପଛପଟୁ ସେ ହିଁ ଗୁଳି ମାରିଥିଲା ଏକ୍ ଦୁଇ ତିନ୍ କରି ।

ସେଇଠି ଟଳିପଡ଼ିଥିଲା ଅର୍ଘାତ ମଣିଷଟା । ସେ ହତ୍ୟାକାରୀ । ଦେବୀଦାସର ନୁହେଁ, ତା' ସୀମାର, ପ୍ରିୟ ସୀମାର । ତା' ସୀମାକୁ ସେ ହିଁ ମାରିଛି ।

ହଠାତ୍ ଉଠିପଡ଼ିଲା ଅବନୀ କାଳିସୀ ଲାଗିଲା ଭଳି ଖାଇବା ପାଖରୁ । ହଠାତ୍ ତା' ମୁହଁର ଚିତ୍ର ବଦଳି ଯାଉଥିଲା - କଠିନ ଦିଶୁଥିଲା ମୁହଁର ମାଂସପେଶୀ ସବୁ । ସୁରେଖା ଚାହିଁଲା ବିସ୍ମୟରେ । କ'ଣ ହେଲା ଯେ, ଉଠିପଡ଼ିଲା ସାନଭାଇ ଭାତକଂସା

Digitized by PPRACHIN, SOA

ପାଖରୁ । ଏବେ ତ କେତେ ଉତ୍କଣ୍ଠା ନେଇ ପଚାରୁଥିଲା ସବୁ କଥା । ଜାଣିବାକୁ ଚାହୁଁଥିଲା ଟିକିନିଖି ଖବର । କ'ଣ ହେଲା ପୁଣି । ସତରେ ବଦଳିନି ତା' ହୁଣ୍ଡାପଣ । ଯାହା ପଶିଲା ମୁଣ୍ଡରେ । ପାଗଳା, ମନମୋଟିଆଟା । ବ୍ୟସ୍ତ ହେଇପଡ଼ିଲା ସୁରେଖା କୁଆଡ଼େ ଉଠିଲୁରେ ଭାଇ ? କିଛି ତ ଖାଇନୁ । ଖାଇଦେ ମୁଠେ । ମୋ' ରାଣ ଅଛି ପରା । ମନକଷ୍ଟ ଲାଗିବ । ଖାଇଦେ, ଭାଇଟା ପରା । କ'ଣ ଆଉ କରିବା କହିଲୁ । ଯାହା ଘଟିଗଲା ବା ଘଟୁଛି, ଆମ ହାତରେ କ'ଣ ଅଛି ସହିବା ଛଡ଼ା । ମୁଁ ମୋଟେ କହି ନଥାନ୍ତି ତୋତେ ତୁ ଖାଲି ପଚାରିଲୁ ବାରବାର ନକହି ରହିପାରିଲିନି । ସୁରେଖା ନିଜକୁ ଅପରାଧୀ ମଣୁଥିଲା । ହାତଧରି ନେହୁରା ହେଇ କହିଲା ଯୁଆଡ଼େ ଯିବୁ ଯା, ହେଲେ ଖାଇଦେଇ ଯାଆ ।

ଅବନୀ କାନକୁ କିଛି ଶୁଭୁ ନଥିଲା । ଅନ୍ୟମନସ୍କ ଭାବେ କହିଲା, "ମୁଁ ଯିବି ମୋତେ ଯିବାକୁ ହେବ ତୁରନ୍ତ । ଏଇ ମୁହୂର୍ତ୍ତରେ ଅନେକ ଡେରି ହେଇଗଲାଣି ।" ବୋଉ ଶୋଇବାଘର ଭିତରକୁ ପଶି ନିଜ ଲୁଗାପଟା ପିନ୍ଧିଲା । ଝୁଲାମୁଣିକୁ କାନ୍ଧରେ ପକେଇ ଦାଣ୍ଡଦୁଆରକୁ ପାଦ ବଢ଼େଇଲା । ପୁଣି କ'ଣ ଭାବି କେଜାଣି, ପଛକୁ ଫେରିଲା ଚାରିପାଦ । ବୋଉ ଠିଆହେଇଛି... ତା' ମୁହଁରୁ କିଛି ପଢ଼ିପାରୁନି ସେ । ତଥାପି, ନଇଁପଡ଼ିଲା ବୋଉ ପାଦ ଛୁଇଁ ପ୍ରଣାମ କରିବାକୁ । ପାଦଧୂଳି ମୁଣ୍ଡରେ ମାରି ସ୍ୱଗତୋକ୍ତି କଲାଭଳି ଉଚ୍ଚାରଣ କଲା "ମୁଁ ଯାଉଛି ଲୋ ବୋଉ, ବିଦାୟ ଦେ । ଏଇ ହୁଏତ ଶେଷ ଦେଖା, ପାରିଲେ କ୍ଷମା କରିଦେ ମୋତେ ମୁଁ କିନ୍ତୁ ତୋ' କ୍ଷମାର ଯୋଗ୍ୟ ନୁହେଁ ।"

– "ନା, ସେଇଠି ଠିଆ ହ । ସୁରେଖା... ଭାଇକୁ ଅଟକା । ସେ ଏମିତି ଯାଇପାରିବନି । ମୁଁ ଯେ ତାକୁ ବିଦାୟ ଦେଇନି । ଭୋକରେ କିମିତି ଯିବ । ମୁଁ ଖୁଆଇଦେବି ତାକୁ । ଅନେକ ଦିନହେଲା ସେ ଖାଇନି ମୋ' ହାତରୁ । ସେ ଖାଇବ, ମୁଁ ବି ଖାଇବି । ସେ ତ ନିଶ୍ଚୟ ଯିବ - ମୁଁ ବି ଯିବି ।" ବୋଉ ଉଠିଲା ରୋଷେଇ ଘର ଆଡ଼କୁ ।

ଅବନୀ ଅବାକ୍ ହେଲା । ହତଭମ୍ବ ହେଇ ଚାହିଁଲା ବୋଉକୁ । କ'ଣ ସବୁ କହୁଛି ବୋଉ ? ସେ କୁଆଡ଼େ ଯିବ ତା' ସାଙ୍ଗରେ ? ସୁରେଖା ବି ଆଶ୍ଚର୍ଯ୍ୟ ହେଲା । କି ବିଚିତ୍ର କଥା ? କେମିତି ବିରୋଧାଭାସ ଶୁଭୁଛି । ବୋଉ କ'ଣ ପାଗଳୀ ହେଇଗଲା କି ? ବୋଉ ପଛେ ପଛେ ସେ ରୋଷେଇ ଘରକୁ ଗଲା । ଠଣାରୁ ଗିନାଟିଏ ବାହାର କରୁଛି ବୋଉ । କିଛି ବଟା ହେଇଥିବା ଜିନିଷ ଅଛି ସେଥିରେ । ପଚାରିଲା, "କ'ଣ ରଖିଛୁ କି ବୋଉ ସେଥିରେ ?"

Digitized by PPRACHIN, SOA

– "ନା ସେ କିଛି ନୁହଁ, ତୁ ତାକ ଭାଇକୁ", କହୁ କହୁ ଗିନାରେ କ୍ଷୀର ଆଉ ଚିନି ଗୋଳେଇଲା । କହିଲା- ଏଇ କ୍ଷୀର ଟିକକ ଖୁଆଇ ଦେବି ତାକୁ । ହଠାତ୍ ସୁରେଖାର ଦୃଷ୍ଟି ପଡ଼ିଲା ଶିଳତଳକୁ ଦୁଦୁରା ଫଳଟିଏ ପଡ଼ିଛି । ଚମକି ଉଠିଲା, ଛାତି ଭିତର ଧଡ଼ଧଡ଼ ହେଲା । ସକାଳେ ବାଡ଼ିପଟକୁ ଯାଇଥିଲା ବୋଉ, ସେ ଦେଖିଛି । କିଛି ବାକି ରହିଲାନି ବୁଝିବାକୁ । ହେ ପ୍ରଭୁ ! ଏ କ'ଣ କରୁଛି ବୋଉ ? କାନ୍ଦୁଣୁ ମାନ୍ଦୁଣୁ ହେଇଗଲା ସୁରେଖା । ବୋଉ ହାତକୁ ଧରିପକେଇ ବସିପଡ଼ିଲା । ସତରେ ତୁ ପାଗଳ ହେଇଗଲୁଣି ବୋଉ, ତା' ହାତରୁ କ୍ଷୀର ଗିନାକୁ ଛଡ଼େଇ ଆଣି କହିଲା, ଯା'କୁ ଭାଇକୁ ଖୁଆଇ, ତୁ ନିଜେ ଖାଇବୁ ବୋଲି ବସିଛୁ ? ଆମ କପାଳରୁ କ'ଣ ଦୁଃଖ ଲିଭିନି ? ତୁ ଏମିତି ମୋତେ ଦାଣ୍ଡରେ ବସେଇ ମରିବୁ ବୋଲି ବସିଛୁ ? ମୁଁ କି ଦୋଷ କରିଛି ବୋଉ ? "ହଁ ମରିବି, ଖାଲି ମରିବିନି ତ, ତାକୁ ବି ମାରିବି । ଅନେକ ହେଇଗଲା । ଆଉ ତା'ର ବଞ୍ଚିବାର ଅଧିକାର ନାହିଁ । ସେ ମରିଗଲେ, ଅନେକ ନିରୀହ ଜୀବନ ବଞ୍ଚିଯିବ । ମୋ' ପାପର ଭାର କମିଯିବ ଲୋ ସୁରେଖା । ଏଇ ପେଟ ମୋର ଅଭିଶପ୍ତ । ଏଇ ପାପୀକୁ ନ'ମାସ ଧରି ରଖିଥିଲା । ସେ କେବଳ ପାପୀ ନୁହେଁ ମୁଁ ବି ପାପୀ । ମୋର ବି ବଞ୍ଚିବାର ଅଧିକାର ନାହିଁ । ଆଉ ସୁଯୋଗ ମିଳିବନି । ଆଜି ହିଁ ସବୁର ଅନ୍ତ ହେବ । ଦେଖୁନୁ ତା' ଝୁଲାମୁଣିରେ କ'ଣ ଅଛି । ମାରଣାସ୍ତ୍ର । ଜାଣୁ ଜାଣୁ ମୁଁ ତାକୁ ଛାଡ଼ିଦେବି ନା ।

ସୁରେଖା ନିର୍ବାକ ହେଇ ଚାହିଁଥିଲା ବୋଉ ନାମକ ପ୍ରାଣୀଟାକୁ । ଧୁଡୁଧୁଡୁ ଚମଡ଼ା । ନାକଦଣ୍ଡାରେ ପ୍ରାଣ, ଆଖିର ଦୃଷ୍ଟି ଝାଉଁଳିଆ, ନଇଁପଡ଼ିଲାଣି – ଅଥଚ ତା' ଭିତରେ ଏତେ ସ୍ଫୁଲିଙ୍ଗ । ସେ ତ ଭାବିଥିଲା ମମତାର ଛଳଛଳ ନଈଟିଏ ବୋଲି । ନିଜେ ଭାସି ଅନ୍ୟକୁ ଭସେଇ ନେବ ମମତା ସ୍ରୋତରେ ପଣତ ଘୋଡ଼େଇ ଲୁଚେଇ ଦେବ ମୃତ୍ୟୁରାଜ ଯମ ପାଖରୁ । ଅଥଚ...

ସୁରେଖା ଚକିତ ହେଲା, ଇଏ କେବଳ ତା' ବୋଉ ନୁହେଁ, ଅରୁ କି ଅବନୀର ବୋଉ ନୁହେଁ ଗୋଟିଏ ସନ୍ତାନର ମା' ନୁହେଁ । ଗୋଟିଏ ପୁଅ ପାଇଁ ପ୍ରାଣ ତା'ର କାନ୍ଦୁନି । କୋଟିଏ ସନ୍ତାନର ଜନନୀ, ଭାରତମାତା, କୋଟିଏ ପ୍ରାଣର ବେଦନାରେ ବିଗଳିତ ମାତୃତ୍ୱର ପ୍ରତୀକ । ଏଇ ଭାରତମାତା, ତା'ର ବୋଉ, ଜନ୍ମଦାତ୍ରୀ, କୋଉ କାଳରୁ କେତେ ଯେ ସ୍ୱପ୍ନ ଦେଖିଆସିଛି ତା'ର ହିସାବ ନାହିଁ । ସେ ସ୍ୱପ୍ନ ଭିତରେ କେତେ ଆଶା, କେତେ ସମ୍ଭାବନା – ଦେଶ ଘିଅମହୁରେ ଭାସିବ, ପିଲାଏ ତା'ର ସୁଖ ସମୃଦ୍ଧିରେ ଘର କରିବେ, ଅଭାବ ଅନଟନ ରହିବନି, ମୁକ୍ତିର ସ୍ୱାଦ ଚାଖି ଉତ୍ତରିତ ଜୀବନର ଜୟଗାନ କରିବେ ସମସ୍ତେ । ସେ ହେବ ସୁଜଳା ସୁଫଳା । ଶାନ୍ତି ରାଜତ୍ୱ

Digitized by PPRACHIN, SOA

କରିବ । ସ୍ନେହ ପ୍ରେମ, ମୈତ୍ରୀର ଅମୃତଧାରାରେ ତା'ର ସନ୍ତାନଗଣ ଚିରଂଜୀବୀ ହେବେ । କେତେ ସ୍ୱପ୍ନ କେତେ ଆଶାର ଏଇ ଦୀର୍ଘ ପ୍ରତୀକ୍ଷା ଅଥଚ ଏକ ପଞ୍ଚଷଠୀ ବର୍ଷ ଭିତରେ ସେ କ'ଣ ଦେଖିଲା, କ'ଣ ପାଇଲା ? କ'ଣ ଦେଲେ ତା'ର ଏଇ କୃତଘ୍ନ ସନ୍ତାନମାନେ ? ଆଉ ସେ ନିଜକୁ ଅପରାଧୀ ମନେକରୁଛି, ଗର୍ଭକୁ ନିନ୍ଦୁଛି ଏଥିପାଇଁ । ଆହା... କେଡ଼େ ହତଭାଗିନୀ ତା' ବୋଉଟା । ଅଧୀର ଆବେଗରେ ବୋଉର ପାଦତଳେ ମୁଣ୍ଡ ଲଗେଇଲା ସୁରେଖା । ବୋଉ ମୁହଁକୁ ଚାହିଁ କହିଲା, କ୍ଷମା କରିଦେ ବୋଉ, ଭାଇକୁ କ୍ଷମା କରିଦେ ।

ବୋଉ ଆଖିରେ ଲୁହ ନ ଥିଲା ନିଆଁଝୁଲ ଝରୁଥିଲା ସତେକି । ସୁରେଖାର ଚେତନା ତଟସ୍ଥ ହେଇଯାଇଥିଲା । ତଟସ୍ଥ ହେଇ ଯାଇଥିଲା ଅବନୀ ନିଜେ । ପଥର ପ୍ରତିମା ଭଳି ଠିଆ ହେଇଥିଲା । ସେ କ'ଣ ଦେଖୁଛି । କାହାକୁ ଦେଖୁଛି । ତା'ର ଗର୍ଭଧାରଣୀ ବୋଉ କାହିଁ ? ଯିଏ ଆଜୀବନ ତା'ର ସହସ୍ର ଭୁଲକୁ କ୍ଷମାକରି ମୁଣ୍ଡ ଆଉଁସି ଦେଇଛି ପାଗଲାଟାଏ, ହୁଣ୍ଡାଟାଏ କହି । ସେଇ ବୋଉ ତା'ର କାହିଁ ? ତା' ଅପରାଧ ପାଇଁ, ନିଜେ ଯିଏ ଦିନଦିନ ଉପବାସ ସହି ଠାକୁରଙ୍କ ଆଗରେ ଘିଅଦୀପ ଜାଳି ଦୀର୍ଘ ଜୀବନ କାମନା କରୁଥିଲା - ସେଇ ଦୟାବତୀ, କରୁଣାମୟୀ ବୋଉ ତା'ର କାହିଁ ? ଯାହାର ପଣତ ଆଢୁଆଳରେ ଥାଇ ସଂସାରର କୌଣସି ବାଧା ପ୍ରତିବନ୍ଧକକୁ ଖାତିର ନକରି ଏଯାଏ ବଞ୍ଚିଆସିଥିଲା, ସେଇ କ୍ଷମାମୟୀ ବୋଉ ତା'ର କାହିଁ ?

ଇଏ ତ ଦଶଭୁଜା, ସଂହାରକାରିଣୀ, ସାକ୍ଷାତ ମହାମାୟା ।

ଆଖିରେ ନିଆଁ । ଅଭିଶାପର କ୍ରୋଧାଗ୍ନି । ହାତରେ ଅମୃତ ନୁହେଁ ବିଷପାତ୍ର । ସାମ୍ନା କରିପାରୁ ନ ଥିଲା ହାର୍ଡ଼କୋର ମାଓବାଦୀ ଅବନୀ ଓରଫ୍ ମନିଷ ଓରଫ୍... ସାମ୍ନାରେ ଠିଆ ହେଇଥିବା ଛୋଟକାଟର ଜରାଗ୍ରସ୍ତ ନାରୀଟିକୁ । ଅଥଚ କେତେ କେତେ ଗୋଳାଗୁଳି, ବନ୍ଧୁକ, ରାଇଫଲକୁ ସାମ୍ନା କରିଆସିଛି ସେ । ଆଶ୍ଚର୍ଯ୍ୟ ଲାଗୁଥିଲା ତାକୁ । ସେ ଏମିତି ଦୁର୍ବଳ, କାବୁସ୍ତ, ଅସହାୟ ହେଇପଡ଼ିଲା କିମିତି । କି ପ୍ରକାର ଚମତ୍କାର ଇଏ । ଅପରାଧବୋଧରେ ନଇଁ ପଡୁଥିଲା ତା'ର ଦୁର୍ଦ୍ଧାନ୍ତ ଚେତନା ।

ସୁଦାମ ମାଷ୍ଟ୍ରଙ୍କ ସାନପୁଅ ଗଣ୍ଡ ମୂର୍ଖ, ହୁଣ୍ଡା ଅବନୀ ପରିତ୍ରାର ଆୟୁଷ କମି କମି ଆସୁଥିଲା ଜହ୍ନିଫୁଲ ପରି ଏବଂ ଆର୍ତ୍ତ ମଣିଷଟିଏ ଭଳି ଗୋଡ଼ ଭାଙ୍ଗି ସମର୍ପିତ ଠାଣିରେ ନିଜକୁ ସଂପୂର୍ଣ୍ଣ ଅଜାଡ଼ି ଦେଲା ସେ ମହାମାୟା ଦଶଭୁଜାଙ୍କ ଚରଣ ତଳେ । ଓଠରେ ଫୁଟିଉଠିଲା ମୃତ୍ୟୁ ସଂଜୀବନୀର ବୀଜମନ୍ତ୍ର "ବୋଉ ।"

ଏବଂ ତା'ର ଦି' ଦିନ ପରେ...

Digitized by PPRACHIN, SOA

ଖବରକାଗଜ ପୃଷ୍ଠାରେ ବଡ଼ ବଡ଼ ଅକ୍ଷରରେ ପ୍ରକାଶ ପାଇଥିଲା "ମାଓବାଦୀ ଅବନୀ ଓରଫ୍ ମନିଷ୍ଟର ରାୟଗଡ଼ା ଏସ୍.ପି.ଙ୍କ ନିକଟରେ ଆତ୍ମସମର୍ପଣ ।"

Digitized by PPRACHIN, SOA

.....ନିଦ ଭାଙ୍ଗିଲା ବେଳକୁ ତାକୁ ଜମା ହାଲୁକା ଲାଗୁ ନ ଥିଲା କାହିଁକି କେଜାଣି । ଯେମିତି ଗୁଡ଼ାଏ ସମସ୍ୟା ଆଉ ଜଞ୍ଜାଳ ତାକୁ ଅପେକ୍ଷା କରିଛନ୍ତି ବେଡ୍‌ରୁମ୍ ବାହାରେ । ଦୁଆର ଖୋଲିବା ମାତ୍ରେ ହିଁ ଘେରିଯାଇ ମାଡ଼ି ବସିବେ । ଓଃ ! ବିରକ୍ତିକର ସତରେ । ଟିକିଏ ବି ରିହାତି ନାହିଁ । ଭାବୁ ଭାବୁ ହିଁ ଅଳସ ଭାଙ୍ଗି ଧଡ଼ପଡ଼ ହେଇ ଉଠି ବସିଲା । ବିଘ୍ନହର୍ତ୍ତାଙ୍କୁ ସ୍ମରଣ କରି ଖଟରୁ ଓହ୍ଲେଇ ନିଜ ଲୁଗାପଟା ସଜାଡ଼ି ନେଇ ମନେ ମନେ ଅଣ୍ଡାଳି ହେଲା ନିତିଦିନର ଜଞ୍ଜାଳଗୁଡ଼ିକୁ ଏକ-ଦୁଇ-ତିନି କରି । ମନେପଡ଼ିଲା ଆଜି ସୋମବାର- ନିମି ସ୍କୁଲ ଯିବ, ସୁପ୍ରିୟ ଅଫିସ୍ ଯିବେ, ଏମିତିରେ ସେ ଛୁଟିଦିନମାନଙ୍କରେ ବି ଅଫିସ ଯାନ୍ତି ଯେ, ଟିକିଏ ହାଲୁକା ଫୁଲ୍‌କା ଭାବେ । ସମୟ ତାଙ୍କ ହାତରେ ଥାଏ ।

ସେ ଯାହାବି ହେଉ, ପ୍ରଥମେ ତାକୁ ହିଁ ପ୍ରସ୍ତୁତ ହେବାକୁ ପଡ଼ିବ । ନିମିର ସ୍କୁଲ ଡ୍ରେସ, ସୁପ୍ରିୟଙ୍କ ପ୍ୟାଣ୍ଟସାର୍ଟ ଇସ୍ତ୍ରୀ ହେବ । କଫି ଅଛି କି ନାହିଁ କେଜାଣି, କାଲି ତାର ଦେଖିବା କଥା, ସେ ଭୁଲିଯାଇଛି । ଚା’ରେ କାମ ଚଳିଥାନ୍ତା ଯେ, ସୁପ୍ରିୟ ପସନ୍ଦ କରନ୍ତିନି । ବାମ୍ଫୁଆ କଫି ନ ଦେଖିଲେ ତାଙ୍କ ମୁଡ୍ ଅଫ୍ ହୋଇଯାଏ । ତାଙ୍କର ଧାରଣା ଚା’ଟା ସର୍ବସାଧାରଣଙ୍କ ପାଇଁ । କାଲି ରବିବାର ଥିଲା ବୋଲି ସେ ନିଜେ ଟିକିଏ ଢିଲା ହେଇଯାଇଛି । ନିମିକୁ ହୋମଓ୍ୱାର୍କ ବି କରେଇନି । ନୂଆ ନୂଆ ସ୍କୁଲ ଯାଉଛି ଝିଅଟା । ନୂଆ ଶବ୍ଦ ସବୁ ଶିଖୁଛି ତ ମନେ ରଖିପାରୁନି ବନାନ ଗୁଡ଼ିକ । ଘଣ୍ଟାକୁ ଚାହିଁଲା ଛ’ ବାଜିବ, ଡେରି ହୋଇଗଲାଣି । ଝରକାର ପରଦା ସବୁ ଆଡ଼େଇ ଦେଲା । ଥଣ୍ଡା ପବନ ସହିତ, ମିଠା ମିଠା କଅଁଳ ଆଲୁଅ ପଶି ଆସିଲା କୋଠରୀ ଭିତରକୁ । ଖୁବ୍ ଭଲ

Digitized by PPRACHIN, SOA

ଲାଗିଲା ତାକୁ । ସୁନ୍ଦର ସ୍ନିଗ୍ଧ ସକାଳ ତାର ଖୁବ୍ ପ୍ରିୟ, ହେଲେ ଚୁପ୍‌ଚାପ୍ ଠିଆ ହୋଇ ସକାଳର ଏଇ ସ୍ନିଗ୍ଧତାକୁ ନିବିଡ଼ ଭାବେ ଅନୁଭବ କରିବା ପାଇଁ ତାର ସୁଯୋଗ କାହିଁ ? ଏତିକିବେଳୁ ହିଁ ମନଟା ଓଜନୀୟା ଧରିଲାଣି । ନିଜ ଭାଙ୍ଗିବାଠୁ ନିଦ ଯିବା ପର୍ଯ୍ୟନ୍ତ ବ୍ୟସ୍ତତା ହିଁ ବ୍ୟସ୍ତତା । ରୋଷେଇ କର, ଜଳଖିଆ ସଜାଡ଼, ପାଣି ଭର୍ତ୍ତିକର, ଲୁଗାପଟା ସଫା କର, ସଉଦା ପାଇଁ ବରାଦ ଦିଅ, ପାଣି, ଇଲେକ୍ଟ୍ରିକ ବିଲ୍, ଦୁଧବାଲାକୁ ପଇସା, ଖବରକାଗଜ ବିଲ୍ ଜମା ହେଉଛି କି ନାହିଁ, ଚିଠିର ଉତ୍ତର କାହା କାହାକୁ ଯିବ, କାହାର ମିସ୍‌କଲ ଅଛି ଇତ୍ୟାଦି ନାନା ରକମର ଘରୋଇ ଜଞ୍ଜାଳ । ନକଲେ ନଚଳେ ।

ସୁପ୍ରିୟଙ୍କର ନିଦ ଆହୁରି ଭାଙ୍ଗିନି । ଆରାମରେ ଶୋଇଛନ୍ତି । ସତେଜ ଦିଶୁଛି ମୁହଁ, ରେଡ଼ିଓ ଅନ୍ କଲା ମାତ୍ରେ ହିଁ ଭାଙ୍ଗିଯିବ ନିଦ । ନିଦରୁ ଉଠେଇବାର ଏଇଟା ଗୋଟାଏ ସମ୍ଭ୍ରାନ୍ତ ଉପାୟ ସେ ଖୋଜିଛି । ଆରାମରେ ଉଠିବେ । ନିଉଜ୍ ଶୁଣୁଶୁଣୁ ବ୍ରସ୍ କରିବେ, କଫି କପ୍‌ର ଉଷ୍ମତା ମାପୁ ମାପୁ ଗୋଟେ ଦି'ଟା ସାଧାରଣ କଥା ଅନ୍ୟମନସ୍କ ଭାବେ ହିଁ ପଚାରି ନେବେ, ଅଥବା ଝିଅକୁ ଟିକିଏ ଆଦର କରିବେ । ତାପରେ ସେଭିଂ । ଦର୍ପଣକୁ ଚାହିଁ ଚାହିଁ ଆତ୍ମତୃପ୍ତିର ଔଜ୍ଜଲ୍ୟ ଫୁଟି ଉଠୁଥିବ ମୁହଁରେ । କିଛି ବି ତରବର ନାହିଁ । ତାଙ୍କ ପାଇଁ ନିତି ଦିନର ଏଇ ସକାଳଟା କେବଳ ଅଫିସ୍ ଯିବାପାଇଁ ଏକ ପ୍ରସ୍ତୁତି ମାତ୍ର, କିଛି ଟେନ୍‌ସନ୍ ନାହିଁ ।

ଅଫିସ୍‌ରେ ସେ ଜଣେ ପଦସ୍ଥ ଅଫିସର । ଏକ୍‌ଜିକ୍ୟୁଟିଭ ଚେୟାରରେ ବସିଲା ମାତ୍ରେ ତାଙ୍କର ପ୍ରଭାବ ଏବଂ ଗୁରୁତ୍ୱ ବଢ଼ିଯାଏ । ଆରମ୍ଭ ହୋଇଯାଏ କାମ ମେସିନ୍ ଭଳି । ସମସ୍ତେ ଅପେକ୍ଷା କରିଥାନ୍ତି ତାଙ୍କ ନିର୍ଦ୍ଦେଶକୁ । ଇସାରା ପାଇଲା ମାତ୍ରେ କାର୍ଯ୍ୟରେ ପରିଣତ କରିବା ପାଇଁ । ତାଙ୍କ ଅଫିସ୍ ଭିତରେ ସଜେଇହେଲା ଭଳି ବସିଥାନ୍ତି ଚତୁର ବୁଦ୍ଧିମାନ କିରାଣୀମାନେ । ବ୍ୟବହାର କୁଶଳୀ ସେକ୍ରେଟାରୀ; ଭଦ୍ର ମିଷ୍ଟଭାଷିଣୀ ଟେଲିଫୋନ୍ ଅପରେଟର ଏବଂ ଏକାଧିକ ଆଜ୍ଞାଧୀନ ଭୃତ୍ୟ । ଏ ସମସ୍ତଙ୍କ ଗହଣରେ ସୁପ୍ରିୟଙ୍କ ବ୍ୟକ୍ତିତ୍ୱ ବହୁଗୁଣିତ ହେବା ତ ସ୍ୱାଭାବିକ, ତା ସାଙ୍ଗକୁ ମପାଚୁପା କଥା । ଅଫିସିଆଲ୍ ଡେକୋରମ୍ ବଜାୟ ରଖିବାରେ ତାଙ୍କୁ କେହି ବଳି ଯିବେନି ।

ଏମିତିରେ ସେ ଖୁବ୍ ସୁନ୍ଦର, ସୁଠାମ, ପୌରୁଷ ସମ୍ପନ୍ନ । ଅନ୍ୟକୁ ସଂକ୍ରମିତ କଲାଭଳି ରୋମାଣ୍ଟିକ୍ ବ୍ୟକ୍ତିତ୍ୱ । ତାଙ୍କ ବନ୍ଧୁମାନେ ଟିପ୍ପଣୀ କରନ୍ତି - "ସତରେ ସୁପ୍ରିୟ ତୁ ଖୁବ୍ ଭାଗ୍ୟବାନ୍, ସବୁ ଦୃଷ୍ଟିରୁ-" ଭାବୁ ଭାବୁ ନିଜେ ସିକତା ହସି ଦେଲା ଏବଂ ଏଥର ଆଖି ଫେରେଇଲା ନିମି ଆଡ଼କୁ ।

ଝିଅକୁ ଗେଲ କରୁ କରୁ ନିଦରୁ ଉଠେଇବାକୁ ଚେଷ୍ଟା କଲା । ମନୋଇ ଝିଅଟା, ଗେଲବସରୀ, ପଦେ ଟାଣକଥା ସମ୍ଭାଳିବନି ଏଡ଼ିକିରୁ । ସିକତା ବି ତାକୁ ସେଇ ସୁଯୋଗ

Digitized by PPRACHIN, SOA

ଦେଇଛି । କେଇଟା ବର୍ଷ ଯେ- ଏଇ ଯାହା ପିଲାଦିନଟା । ମୁକୁଳା ସମୟ, ମୁକୁଳା ବୟସ । ହେଉ ଯେତେ ସେ - ସେରନ୍ତୀ ହେବ । ସେ ମୋଟେ ତାକୁ ଶାସନ କରିବନି ତା' ବୋଉ ଭଳିଆ ।

ବୋଉ ତ ତା' ପିଲାଦିନେ କଥା କଥାକେ ଆକଟ କରୁଥିଲା, ଚେତେଇ ଦେଉଥିଲା; ଶାଶୂ ଘରକୁ ଗଲେ କେମିତି କ'ଣ କରିବୁ ଏତେ ଅଳସେଇ ହେଲେ । ଝିଅ ପିଲାଙ୍କୁ ଏତେ ସେରନ୍ତୀପଣ କଣ ଶୋଭାପାଏ... । ହୁଁଃ, ଯେମିତି ପୁଅମାନେ ହିଁ ସେରନ୍ତା ହେବାର ଭାଗ୍ୟ ନେଇ ଜନ୍ମ ହୁଅନ୍ତି... ସେ କିନ୍ତୁ ତା ନିମି ପାଇଁ ସେମିତିକା ବୋଉ ହେବନି ଜମା । ଦେଖୁ ଦେଖୁ ତ ଝୁଅଟା ପଶିଯିବ ବୟସ ସନ୍ଧିରେ । ତେଣିକି ସବୁ କାମରେ ସତର୍କ, ସଜାଗ, ଦେଖୁଥା' ଆଗପଛ । କଥାରେ, ଚାଲିଚଳଣିରେ, ବ୍ୟବହାରରେ ସଂଯମର ଲକ୍ଷ୍ମଣ ରେଖା । ତାକୁ ଡେଇଁବା ଏତେ ସହଜ ନୁହେଁ । ଶାସନର ତର୍ଜନୀ ଭିତରେ ମୁକୁଳା ଜୀବନ ଆପେ ବନ୍ଦୀ ହୋଇଯିବ । ଜହ୍ନ ରାତିର ସ୍ୱପ୍ନ ଦେଖେଇ ଜୀବନ ଜଞ୍ଜାଳ ଭିତରକୁ ଟାଣି ହେଇଗଲା ପରେ ଆପେ ସ୍ୱପ୍ନମାନେ ବିକଳାଙ୍ଗ ହେଇଯିବେ । ଜହ୍ନ ରୋଷଣୀ ଉପରେ କୁହୁଡ଼ିର କଳାଫିମ୍ପି ମାଡ଼ିଯିବ । ଯେମିତି ତାର, ତା' ବୋଉର ବୋଉର ବୋଉ ହେଇ ସବୁ ନାରୀଙ୍କର ।

ନିମିର ନିଦ ଭାଙ୍ଗିଲା । ସୁନ୍ଦର ସତେଜ ଫୁଲର ପାଖୁଡ଼ାମାନେ ସତେ ଯେମିତି ଖୋଲି ହେଇଗଲେ ଟୁପ୍‌ଟାପ୍ ହେଇ । କାନ୍ତିର ଝଟକ ଉତୁରି ଆସିଲା ନିମିର ଗୋଲାପୀ ମୁହଁ ଉପରକୁ । ମା' କୋଳକୁ ଡେଇଁ ପଡ଼ିଲା ପୂନେଇଁ ଜହ୍ନ ନିମି । ତାକୁ କୋଳରେ ଧରି ସିକତା ପଶିଲା ତା' ରୁଟିନ୍ ବନ୍ଧା ଜଞ୍ଜାଳ ଭିତରକୁ ଏବଂ କିଛିଟା ବିରକ୍ତିଭାବ ନେଇ ହିଁ ତରବରରେ ଗୋଟିଏ ପରେ ଗୋଟିଏ କାମ ଦେଖିଚାହିଁ ସାରିବାକୁ ବସିଲା ।

ଖୀର ଉଷୁମ କରି ଝିଅ ହାତରେ ଧରେଇ ଖୁସାମତ କଣ୍ଠରେ କହିଲା- 'ସୁନା ଝିଅ ମୋର ବଡ଼ ହେଇଗଲାଣି ତ ନିଜ ହାତରେ ଆଜି ଖୀର ପିଇ ଦେଲେ ଗୁଡ୍ ଗାର୍ଲ ହେଇଯିବ, ଆଉ ମୁଁ ବାପାଙ୍କ ପାଇଁ ଜଳଖିଆ ସଜାଡ଼ି ନେବି, ଠିକ୍ ନା ?

ନିମି ସାଙ୍ଗେ ସାଙ୍ଗେ ମୁଣ୍ଡ ହଲେଇ ସୁନାପିଲା ହେଇଗଲା ଏବଂ ବରାଦ କଲା 'ମୋ ପାଇଁ ବ୍ରେଡ୍‌ଟୋଷ୍ଟ ହେବ ।' ଜଳଖିଆ ପ୍ରସ୍ତୁତ କରିବା ଅବସରରେ ନିମିକୁ ଇଂଲିଶ୍ ଶବ୍ଦର ବନାନ ସବୁ ପଚାରି ଠିକ୍ କଲା । ନିମିର ଅନଭ୍ୟସ୍ତ ପାଟିରେ ଶବ୍ଦ ସବୁର ବିଚିତ୍ର ଉଚ୍ଚାରଣ ତାକୁ ଭାରି ଆମୋଦ ଦେଉଥିଲା ଏବଂ ସେ ବାରମ୍ବାର ଉଚ୍ଚାରଣ କରିବାକୁ କହୁଥିଲା । ବିଶେଷ କରି ୟୁ'ଫର ଅମ୍ବ୍ରେଲା ପାଖରେ ନିମି ଝୁଣ୍ଟୁଥିଲା ଥରକୁ ଥର, ତାକୁ ମଜା ଲାଗିଲେ ବି, ମଜାକୁ ଗୋଟେଇବା ପାଇଁ ସମୟ ନଥିଲା ତା' ପାଖରେ ।

ସୁପ୍ରିୟଙ୍କୁ ଜଳଖିଆ ବାଢ଼ି ସାରି, ତାଙ୍କର ସେଲ୍ ଫୋନ୍, ରୁମାଲ, ଚଷମା ଇତ୍ୟାଦି

Digitized by PPRACHIN, SOA

ତାଙ୍କ ସାମ୍ନାରେ ଥୋଇ ପଚାରି ନେଲା, ଆଜିର ଆବଶ୍ୟକୀୟ କାଗଜପତ୍ର ଓ ଫାଇଲକୁ ମନେକରି ନେଇଛନ୍ତି କି ନାହିଁ । ଏଇଟା ବି ତାର ରୁଟିନ୍ ଭିତରର କାମ । ସୁପ୍ରିୟଙ୍କ ଜୀବନ ଭିତରକୁ ପଶିବା ଦିନରୁ ଏସବୁ ତାର ଅଭ୍ୟାସରେ ପଡ଼ିଯାଇଛି । ଏହା ବ୍ୟତୀତ, ଘରର ହିସାବ, ଦିନଯାକର ଖର୍ଚ୍ଚର ହିସାବ ମଧ୍ୟ ଖାଇବା ଟେବୁଲରେ ତାକୁ ଦେବାକୁ ପଡ଼େ କ୍ଲୁପ୍ତରେ । କାରଣ ସୁପ୍ରିୟ ଏସବୁରେ ବଡ଼ ପର୍ଟିକୁଲାର, ନିର୍ଦ୍ଦିଷ୍ଟ । ନହେଲେ ଏତେବଡ଼ ଅଫିସ୍‌କୁ ସମ୍ଭାଳିଛନ୍ତି କିମିତି ।

..... ସେ ପର୍ଯ୍ୟନ୍ତ ତାକୁ ସମୟ ହେଉନଥିଲା ଆରାମରେ ଦଶ ମିନିଟ୍ ବସି କପେ ଚ଼' ଖାଇବା ପାଇଁ । କୁକିଙ୍ଗ ପ୍ଲାଟଫର୍ମ ଉପରେ ନିଜ ପାଇଁ ଥୋଇଥିବା ଚ଼' କପ୍‌କୁ ବାଁ ହାତରେ ଧରି ପାଟିକୁ ନେଲା ସତ, ହେଲେ ସେଥିରେ ଚ଼' ଖାଇବାର ମଜା ନଥିଲା - ଥଣ୍ଡା ହୋଇଯାଇଥିଲା । କ'ଣ କରିବ ଆଉ- ସେ ତ ଚରଖି ଭଳି ବୁଲୁଛି । ନିମିକୁ ସ୍କୁଲ ପଠେଇ ସାରିଲା ପରେ ଯାଇ ନିଜ କଥା ଚିନ୍ତା କରିବ । ନିମି ପାଇଁ ଟୋଷ୍ଟର ବ୍ୟବସ୍ଥା କରିବାକୁ ଯାଇ ବ୍ରେଡ୍ ଦି'ଖଣ୍ଡରେ ବଟର ଦେଇ ଓଭନ୍‌ରେ ପୁରେଇ, ତାର ସ୍କୁଲ ବ୍ୟାଗ, ୱାଟର ବଟଲ ସବୁ ସଜାଡ଼ି ଓଭନରୁ ଟୋଷ୍ଟ କାଢ଼ି, ଟିଫିନ୍ ବକ୍ସରେ ରଖିଲା ।

ଏତିକିବେଳକୁ ରିଙ୍ଗ୍ ହେଲା ଟେଲିଫୋନ୍‌ଟା । ସୁପ୍ରିୟ ଅଫିସ୍ ବାହାରିଲା ବେଳକୁ ଗାଡ଼ିର ଚାବି ବୋଧେ ଭୁଲି ଯାଇଥିଲେ ରିଂ କରିଛନ୍ତି, ଚାବିଟା ତଳେ ଆସି ଦେଇଯିବାକୁ । ସିକତା ହସିଲା, ଏଇଠି ବି ସେଇ ଅଫିସିଆଲ ଆଦବ କାଇଦା ନିଜେ ଆସି ତ ନେଇଯାଇ ପାରିଥାନ୍ତେ, ନିହାତି ଅଳସୁଆ । ଚାବି ଧରି ଏକା ନିଃଶ୍ୱାସରେ ପାହାଚ ଓହ୍ଲେଇଗଲା ସିକତା । ତାଙ୍କର ଏଇ ସାମନ୍ତବାଦୀ ମନକୁ ସେ ବଦଳେଇ ପାରିବନି । ଛାଡ଼୍, କାମ ତ ସାରିବାକୁ ପଡ଼ିବ ନା- ।

ଏଥର ନିମିକୁ ସେ ପ୍ରସ୍ତୁତ କରିବ । ସ୍କୁଲବସ୍ ଆସିବା ସମୟ ହେଲାଣି । ଝିଅକୁ ଗାଧେଇ ବ୍ରେଡ୍ କଦଳୀ ଆଉ ଖୀରକୁ ଏକାଠି ଚକଟି ଖୁଆଇଦେଲା । ସ୍କୁଲ ଡ୍ରେସ ପିନ୍ଧେଇ ସାରି ନିଜେ ତା ସ୍କୁଲ ବ୍ୟାଗ ଆଉ ୱାଟର ବଟଲକୁ କାନ୍ଧରେ ଓହଳେଇ ଘରେ ତାଲା ଦେଇ ନିମି ହାତ ଧରି ରାସ୍ତାକୁ ଓହ୍ଲେଇଲା । ଚାଲୁ ଚାଲୁ ଟ୍ରାଫିକ୍ ନିୟମକୁ ବୁଝେଇ ଦେଲା ଝିଅକୁ ଏବଂ କହିଲା, ସେ ଯେମିତି ଟିଚରଙ୍କର ସବୁକଥା ମନଦେଇ ଶୁଣିବ ଓ ଠିକ୍ ସମୟରେ ଟିଫିନ୍ ଖାଇବ । ସ୍କୁଲରୁ ଫେରିଲେ ତାକୁ ସେ ଆଜି ପାର୍କ ବୁଲେଇ ନେବ । ନିମି ମନ ଖୁସି ହେଇଗଲା । ବସ୍ ଆସିଲା ଫେଁକାଳି ବଜେଇ, ଚିହ୍ନା କ୍ଲିନର୍ ବସ୍‌ର । କୋଳକରି ଉଠେଇ ନେଲା ନିମିକୁ, ନିମି ଓ ତା' ସାଥିମାନେ ହାତ ହଲେଇ ବାଏ' କଲେ । ସିକତା ନିଃଶ୍ୱାସ ମାରିଲା ଏବଂ ବଡ଼ ବଡ଼ ପାହୁଣ୍ଡ ପକେଇ

Digitized by PPRACHIN, SOA

ରାସ୍ତା ପାର ହୋଇ ନିମିଷକେ ଘରେ ପହଞ୍ଚିବାକୁ ଚାହିଁଲା । ଏଥର ସେ ଅନ୍ତତଃ ନିଜକଥା ଭାବି ପାରିବ କାମ ମଝିରେ ।

ପ୍ରଥମେ ଗାଧୁଆ ଘରେ ପଶି, ଗାଧୁଆ ସାରିବାକୁ ଦଶ ମିନିଟ୍ ନେଲା । ଯଦିଓ ତାର ଇଚ୍ଛା ସକାଳୁ ଉଠି ଗାଧୁଆ ସାରି ଠାକୁରଙ୍କ ଆଗରେ ଧୂପ ଟିକିଏ ଜାଳି ତା' ଛୋଟ ପରିବାର ପାଇଁ ଶୁଭ ମନାସିବାକୁ; ହେଲେ ସମ୍ଭବ ହୁଏନା । ବୋଉଠୁ ସେ ପୂଜା ବିଧିବିଧାନ ସବୁ ଦେଖି, ଶିଖିଛି ବି, ପୂଜା କଲାବେଳେ ବୋଉ କିମିତି ଭିନ୍ନ ଏକ ଦୁନିଆ ଭିତରେ ପଶିଯାଏ କିଛି ସମୟ ପାଇଁ । ସେଇଟା ତାର ଏକାନ୍ତ ସମୟ । ପଚାରିଲେ କୁହେ- 'ଚଳନ୍ତା ଜୀବନର ଧାଉଁଡ଼ି ଭିତରୁ ନିଜକୁ ମୁକ୍ତ କରି ଏଇ କିଛି ସମୟ ମୁଁ ଈଶ୍ୱରଙ୍କୁ ଖୋଜେ । ମୁଁ ମୋ' ଭିତରକୁ ପଶେ । ସବୁ ବିକ୍ଷିପ୍ତ ଭାବନାକୁ ଆଡ଼େଇ ନିଷ୍ଚଳ ହୁଏ ଏବଂ ତା'ରି ଭିତରେ ନିଜକୁ ସଜାଡ଼େ । ଆଖି ଖୋଲିଲା ବେଳକୁ ଲାଗେ, ମୋ' ଭିତରେ ଅମାପଶକ୍ତି ଭରି ଯାଇଛି; ଜୀବନର ଯାବତୀୟ ସମସ୍ୟାକୁ ସାମ୍ନା କରିବା ପାଇଁ ।'

ଚକିତ ଲାଗେ ସିକତାକୁ ବୋଉର ଏଇ ଦର୍ଶନ ! ସେ କିନ୍ତୁ ଏଇ ଦର୍ଶନକୁ ଆପଣେଇ ପାରିନି । ଆଜିର ଲାଇଫ୍ ଷ୍ଟାଇଲ୍, ବୋଉର ଜୀବନଧାରା ଠାରୁ ଅନେକ ଭିନ୍ନ । ସେମାନଙ୍କ ପାଇଁ ଜୀବନର ଏକ ସ୍ଥିରଛବି ଅଙ୍କା ହୋଇ ରହିଥିଲା । ଯୌଥ ପରିବାର ଭିତରେ ଚଳିଥିଲା ବୋଉ । ଜୀବନ ଧୀରେ ସୁସ୍ଥେ ଗଡ଼ି ଚାଲିଥିଲା । ଗତି ନଥିଲା, ପ୍ରତିଯୋଗିତା ନଥିଲା । ଆଖି ଆଗର ଦିଗନ୍ତ ବି ଖୋଲି ନଥିଲା ଏତେ । ଏଇଟା କିନ୍ତୁ ସ୍ପୀଡ୍‌ର ଯୁଗ । ଅଣୁ ପରିବାରକୁ ପସନ୍ଦ କରୁଛନ୍ତି ସମସ୍ତେ । ଅଥଚ ବୋଉର ଜୀବନଚର୍ଯ୍ୟା ଆପଣେଇବା ସମ୍ଭବ ନୁହେଁ । ସିକତା ଧୂପକାଠିରେ ଅଗ୍ନି ସଂଯୋଗ କରି ବେକରେ ପଣତ ଗୁଡ଼େଇ ବିଘ୍ନହର୍ତ୍ତାଙ୍କ ଆଗରେ ପ୍ରଣତି ବାଢ଼ିଲା ନିତିଦିନିଆ ଢଙ୍ଗରେ । ଅଭୟ ମୁଦ୍ରାରେ ବସିଛନ୍ତି ବିଘ୍ନହର୍ତ୍ତା । ପିଲାଦିନରୁ ଏଇ ସିଦ୍ଧିଦାତାଙ୍କ ମୂର୍ତ୍ତି ସେ ରଖିଛି ନିଜ ପାଖରେ । ବାପା ଆଣି ଦେଇଥିଲେ କୌଣସି ଏକ ଗଣେଶ ପୂଜା ଅବସରରେ । ଅଷ୍ଟମ ଶ୍ରେଣୀ ହେବ ବୋଧେ । ବାହାଘର ପରେ ସେ ତାଙ୍କୁ ନେଇ ଆସିଛି ସାଙ୍ଗରେ । ସୁପ୍ରିୟଙ୍କର ଏସବୁ ରୀତିନୀତି ପୂଜାରେ ବିଶ୍ୱାସ ନାହିଁ । ତାଙ୍କର ଧାରଣା ଏ ପୂଜାର୍ଚ୍ଚନା ସବୁ ମଣିଷର ଦୃଷ୍ଟିକୁ ସଂକୁଚିତ କରି ଦିଏ । ସେ କିନ୍ତୁ ନିମିକୁ ଶିଖଉଛି । ନିମି ମଧ ନିତି ଗାଧୋଇ ଠାକୁରଙ୍କୁ ପ୍ରଣାମ କରୁଛି ।

....ଭାତ ବସେଇ ସିକତା ପରିବା କାଟିଲା ଟେବୁଲ୍ ଉପରେ । ଭେଣ୍ଡି ଆଉ ବିନ୍‌ସ୍‌କୁ ଅଲଗା ଅଲଗା କାଟି ରଖିଲା ଫାଇନ୍ କଟର୍‌ରେ । ସେଇ କ୍ରମରେ ଭାବନା ମାନେ ବି କାଟି ହେଲେ ଫାଇନ୍‌ରୁ ଫାଇନ୍‌ର ହୋଇ । ସକାଳୁ ପହରୁ ଘେରି ରହିଥିବା

Digitized by PPRACHIN, SOA

ବ୍ୟସ୍ତତା ଆଉ ବିରକ୍ତି ଭାବ ଏତେଟା ଯଦିଓ ନଥିଲା ତଥାପି ତାକୁ ସହଜ ଲାଗୁ ନଥିଲା କୋଉଠି ଯିମିତି ମେଞ୍ଚାଏ ଗୁଗୁଚି ଲାଗିଯାଇଛି ।

ଙ୍କେଇ ଆସୁଥିବା ଭାତରେ ପାଣି ଦେଇ ଆରପାଖ ବର୍ଣ୍ଣରରେ କରେଇ ବସେଇ ତେଲ ଢାଳିଲା ଫୁଟଣ ପାଇଁ । ଭେଣ୍ଡିକୁ କରେଇରେ ପକେଇ ଭାବିଲା, ତାର ବାନ୍ଧବୀମାନେ ଦିନରାତି ଏତେ ଖୁସିରେ ଉଛୁଳି ଉଠୁଥାନ୍ତି ଯେ, ଆଶ୍ଚର୍ଯ୍ୟ ଲାଗେ ଦେଖିଲେ । କେମିତି ଏତେ ଆନନ୍ଦ ଗୋଟେଇ ପାରନ୍ତି କେଜାଣି । ସତରେ କ'ଣ ସେମାନେ ଏତେ ସୁଖୀ ! ନା, ନିଜ ଭିତରର ଦୁଃଖ ଆଉ ଅସହାୟତାକୁ ଘୋଡ଼େଇ ରଖିବାର ଇଏ ଗୋଟାଏ ବାହାନା ! କେଜାଣି, ବୁଝି ପାରେନା ସେ ।

ବାହାଘର ପୂର୍ବରୁ ସେ ବି ଋକିରି କରୁଥିଲା । ଅଧାପନା କରୁଥିଲା ସରକାରୀ କଲେଜରେ । ଋକିରି ଛାଡ଼ି ନଥିଲା କି ଛାଡ଼ିବା ଇଚ୍ଛା ନଥିଲା । କିନ୍ତୁ ସୁପ୍ରିୟ ଓ ତାଙ୍କ ଖାନ୍‌ଦାନୀ ପରିବାର ଇଚ୍ଛା କଲେନି । ପୁରୁଷଶାସିତ ସମାଜ ବ୍ୟବସ୍ଥା ଭିତରେ ଏଇ ଇଚ୍ଛାଟା ବି ଗୋଟାଏ ଆଭିଜାତ୍ୟର ଚିହ୍ନ । ସେମାନଙ୍କର ନିରୂତା ବୋହୂଟିଏ ହିଁ ଦରକାର । କୋଉ ଅଭାବ ଅଛି । ସେମାନଙ୍କର ଇଚ୍ଛାକୁ ହୁଏତ ସେ ବଦଳେଇ ପାରିଥାନ୍ତା - କିନ୍ତୁ ନିମି ଆସିଲା ପରେ, ସୁପ୍ରିୟ ଚାହିଁଲେନି ତାଙ୍କ ଝିଅ ମା କୋଳରୁ ବଞ୍ଚିତ ହୋଇ ଆୟା କୋଳରେ ବଢୁ । ବାସ୍ । ତା' ପରଠୁ ସେ ଘରୁ ବାହାରିନି, ନିଜ ଭିତରେ ପୋଷି ରଖିଥିବା ଯେତେକ ସମ୍ଭାବନା ଆଉ ସୃଜନଶୀଳତାକୁ ଏଇ ରୋଷେଇ ଘର ଥାକରେ ସଜା ହେଇଥିବା ଡବା ମାନଙ୍କରେ ଠିପି ଦେଇ ସେ ଥୋଇ ଦେଇଛି ।

ଲମ୍ବା ଦୀର୍ଘଶ୍ୱାସଟିଏ ନେଲା ସିକତା । କରେଇର ଘୋଡ଼ଣୀ କାଢ଼ି, ଭେଣ୍ଡିକୁ ଭଲ କରି ଭାଜିଲା । ବର୍ଣ୍ଣରକୁ ସିମ୍ କରି ଦେଇ ଭାତ ଡେକ୍‌ଚି ବି ଓହ୍ଲେଇଲା । ଗରମ ପେଜର ବାମ୍ଫ ଭିତରେ ସ୍ୱପ୍ନମାନେ ବଉଳି ଉଠି ଅସ୍ପଷ୍ଟ, କୁହୁଡ଼ିଆ ଦିଶିଲେ । ମୁହୂର୍ତ୍ତକ ଲାଗି ସେ ଅତିଷ୍ଠ ହେଇ ପଡ଼ିଲା ଏବଂ ଭାବିଲା ତା' ଜୀବନ ହିଁ ଏମିତି କୁହୁଡ଼ିଆ ଆଉ ଅସ୍ପଷ୍ଟ ହେଇ ଯାଇଛି । ଫୁ ଫୁ କରି ଫୁଙ୍କି ଗରମ ବାମ୍ଫକୁ ଉଡ଼େଇ ଦେବାର ପ୍ରୟାସ କଲା ସିନା, କୁହୁଡ଼ିଆ ଜୀବନକୁ ସଫା କରିବାର ଉପାୟ ବୁଦ୍ଧିମତୀ ସିକତାକୁ ଦିଶୁ ନଥିଲା ।

ଏଇ ରୋଷେଇ ଘରଟା ତା' ପାଇଁ ସବୁକିଛି । କହିବାକୁ ଗଲେ ତା' ପୃଥିବୀ । ତାର କୋଣ ଅନୁକୋଣ ତା' ନଖ ଦର୍ପଣରେ ଥୁଆ । ଏଇ କେଇଟା ବର୍ଷ ଭିତରେ ଚୂଲି, କରେଇ, ଡେକଚି, ମସଲା, ଫୁଟଣ, ତେଲ, ଲୁଣକୁ ଛାଡ଼ି ସେ କ'ଣ କିଛି ଆଉ ଭାବି ପାରିଛି ବରଂ ଏମାନଙ୍କ ସହିତ ତାର ଆତ୍ମୀୟତା ବଢ଼ି ଯାଇଛି । ବନ୍ଦୀ କରି ରଖିଛନ୍ତି ଏମାନେ ତାକୁ ।

Digitized by PPRACHIN, SOA

ସତ କହିଲେ, ତା' ପଢ଼ିଥିବା ପାଠ, ଆହରିତ ଜ୍ଞାନ, ପୋଷି ରଖିଥିବା ଇଚ୍ଛା, ନିଜ ବିଚାରଧାରା ଦେଖିଥିବା ସ୍ୱପ୍ନ ସହିତ ଏସବୁର କୌଣସି ତାଳମେଳ ନାହିଁ । ଇଏ ଏକ ସଂପୂର୍ଣ୍ଣ ଭିନ୍ନ ଦୁନିଆ । ସାହିତ୍ୟ ପ୍ରତି ତାର ଖୁବ୍ ବେଶୀ ଅନୁରାଗ ଥିଲା । କଥାରେ କଥାରେ କଳ୍ପନା ଫୁଲ ହେଇ ଫୁଟୁଥିଲା । ନିଜକୁ ପ୍ରସ୍ତୁତ କରୁଥିଲା ସେଇ ବାଟରେ । ସବୁ କିମିତି ଓଲଟପାଲଟ ହେଇଗଲା । ବାପା ତା' ବାହାଘର ପାଇଁ ପ୍ରସ୍ତୁତ ହେଉଥିଲେ । ଭଲ ଘର, ଭଲ ବର ଦେଖି କନ୍ୟା ଦାନ କରି ଦାୟମୁକ୍ତ ହେବେ । ତାଙ୍କ ଭାଇ ଭଉଣୀଙ୍କ ପିଲାଏ ବାହାରେ ରହୁଥିଲେ । ସେମାନଙ୍କ ଥାଟବାଟ, ଆଭିଜାତ୍ୟ ତାଙ୍କୁ ଚକିତ କରୁଥିଲା । କେତେ ଆଗରେ ଅଛନ୍ତି ସେମାନେ । ତାଙ୍କ ଝିଅ ବି ତ କୌଣସି ଗୁଣରେ କମ୍ ନୁହେଁ । ଗାଁ ମାଟିକୁ ଜାବୁଡ଼ି ଧରି ସେ ସିନା ରହିଛନ୍ତି, ସିକତାକୁ ସେ ବାହାରକୁ ଛାଡ଼ିବେ ।

ହେଲେ ସିକତା ବାପାଙ୍କର ଆଗ୍ରହକୁ ସମ୍ମାନ ଦେଇ ପାରି ନଥିଲା । ଏଇ ମାଟିରେ ସେ ଜନ୍ମ ହେଇଛି । ଏଇ ପାଣି ପବନ ତାକୁ ମଣିଷ କରିଛି । ଏଇ ମଣିଷଙ୍କୁ ସେ ଭଲ ପାଏ । ଏଇ ଆକାଶ ମାଟିରେ ଅସୁମାରି ଆନନ୍ଦ ବିଞ୍ଚିହେଇ ରହିଛି - ଏଇଠି ସେ ରହିବ । ଚାକିରି କରିବ । କୁଆଡ଼େ କାହିଁକି ଯିବ । ପାଠର ସଦୁପଯୋଗ କରିବ । ଏଇ ମାଟି ମଣିଷଙ୍କ କଥା, କହିବ ନିଜ କଲମରେ, ଆପଣା ଅନୁଭବରେ- ବୋଲି ସେଦିନ ସେ ବାପାଙ୍କ ଇଚ୍ଛା ସହିତ ଅନେକ ସୁଖ ସୁବିଧାକୁ ଆଡ଼େଇ ଦେଇଥିଲା । ହେଲେ ଆଜି ସେ ସବୁ ଇଚ୍ଛା କ'ଣ ତାର ପୂରଣ ହେଇଛି ? ନା, ତାକୁ ଦେଖିଲେ କିଏ କହିବ- ଇଯେ ସେଇ ସିକତା ଯିଏ ନିଜ ସିଦ୍ଧାନ୍ତ ଆଉ ପ୍ରତିବଦ୍ଧତା ପାଇଁ ବାପାଙ୍କ ସହିତ ଦିନେ ଲଢ଼ିଥିଲା ।

ଆଜି ସେ କେବଳ ସୌମ୍ୟ ସୁପ୍ରିୟଙ୍କ ପତ୍ନୀ ଆଉ ନିମିର ମା । ଏହା ଭିନ୍ନ ତାର କିଛି ଭିନ୍ନ ପରିଚୟ ନାହିଁ । ତାର ଏକକ ସତ୍ତା ବାଣ୍ଟି ହେଇଯାଇଛି, ବିଭକ୍ତ ହୋଇଯାଇଛି । ପରିବାରର ଅନ୍ୟମାନଙ୍କୁ ସୁଖୀ କରିବାକୁ ଯାଇ ସେ କେତେ ବା ସଫଳ ହେଇଛି ? ସମ୍ପର୍କ ଭେଦରେ ଅନେକଙ୍କର ଅନେକ ପ୍ରତ୍ୟାଶା, ଦାବୀ ତା' ପାଖରୁ । ସମସ୍ତଙ୍କ ଆଶା କ'ଣ ସେ ପୂରଣ କରିପାରିଛି ନା ପାରିବ । ପ୍ରତି ବଦଳରେ ଗୁଡ଼ାଏ ଅଶାନ୍ତି, ଅଭିଯୋଗକୁ ହିଁ ପଣତରେ ଗୋଟେଇ ବାନ୍ଧି ରଖିଛି । କର୍ତ୍ତବ୍ୟ, ଆଉ ତେଲ ଲୁଣର ଆବଦ୍ଧ ବାସ୍ନା ଭିତରେ ସଙ୍କୁଚିତ ହେଇଯାଇଛି ତାର ଦିଗନ୍ତ ।

ଏ କଥାକୁ ଅଜିତ୍‌ର ସନ୍ଧାନୀ ଆଖି ଠିକ୍ ଧରି ପାରିଛି । ଦିନେ ଫୋନ୍ କରିଥିଲା, "କାହିଁ ଆଜିକାଲି ତ କୌଣସି ପତ୍ର ପତ୍ରିକାରେ ତମକୁ ମୋଟେ ଦେଖୁନି । ଅବଶ୍ୟ ଅନେକ ଦିନ ତଳେ କୌଣସି ଗୋଟାଏ ପତ୍ରିକାରେ ଲେଖାଟିଏ ଦେଖିଥିଲି, ମୋଟେ

Digitized by PPRACHIN, SOA

ତମ ଲେଖା ବୋଲି ମନେ ହେଲାନି । ଏତେ ଅସ୍ଥିର, ଦ୍ୱିଧାଗ୍ରସ୍ତ, ସେକି ମନେହେଲା, କାହିଁକି ନାନୀ ?"

ସେ ଉତ୍ତର ଦେଇଥିଲା- ଖଣ୍ଡିତ ଚେତନା, ବିକ୍ଷିପ୍ତ ଭାବନାମାନେ କ'ଣ ଏତେ ସହଜରେ ବୋଲମାନି ସୃଜନକ୍ଷମ ହେଇପାରିବେ ଅଜିତ୍ ! କେବଳ ପ୍ରୟାସ ଜାରି ରଖିଛି, ଆଶା ଛାଡ଼ିନି ବୋଲି । ସେଥିପାଇଁ ଘଟଣା ଓ ଚରିତ୍ରମାନଙ୍କ ସହିତ ଏକାତ୍ମ ହେଇ ପାରୁନି ।" ଜାଣେନା ତାର ଏଇ ବ୍ୟାଖ୍ୟାନକୁ ଅଜିତ୍ କେମିତି ଗ୍ରହଣ କରିଥିବ । ସେ କିନ୍ତୁ ଓଲଟି ତାକୁ ହିଁ ଦୋଷୀ କରିଥିଲା ତମର କୌଣସି ଏକ୍ସ୍‌ପ୍ଲାନେସନ ମୁଁ ଶୁଣିବାକୁ ଚାହେଁନା । ନିଜ ପ୍ରତିଭାକୁ ତମେ ତେଲ ଲୁଣ ଭିତରେ ପୋଡ଼ି ହେଇଯିବାକୁ ଅନ୍ତତଃ ମୁଁ ଦେବିନି, ମନେରଖ, ଚିରାଚରିତ ସ୍ୱାମୀ, ଶ୍ୱଶୁର ଶାଶୂଙ୍କ ଆଜ୍ଞାଧୀନ ଓ ପୁଅଝିଅଙ୍କ ମା ଭିନ୍ନ ତମର ଆହୁରି ବି ଅନ୍ୟ ପରିଚୟ ଅଛି । ତମର ଅନେକ କିଛି କରିବାର ଅଛି ଏବଂ ବିଶ୍ୱାସ କର ତମେ ପାରିବ ମଧ୍ୟ । କେବଳ ଆଦର୍ଶ ଗୃହିଣୀଟିଏ ହେଲେ ଚଳିବନି, ସମାଜ ପ୍ରତି ତମର କିଛି ଦାୟିତ୍ୱ ଅଛି - ଅଜିତ୍‌ର କଣ୍ଠରେ ଉତ୍ତେଜନା ଭରି ରହିଥିଲା ଭଳି ମନେ ହେଉଥିଲା । କାରଣ ବି ସେ ଜାଣେ । ଅଜିତ୍ ତାକୁ ଖୁବ୍ ଶ୍ରଦ୍ଧା କରେ । ତାର କୌଣସି କ୍ଷତି ସେ ସହି ପାରେନା, ତାକୁ ଶାନ୍ତ କରିବାକୁ ଯାଇ କଅଁଳେଇ କହିଥିଲା- 'ସମସ୍ତଙ୍କୁ ଖୁସି ରଖିବା କ'ଣ ମୋର ଧର୍ମ ନୁହେଁ ? ତା'ଛଡ଼ା ଏଇଟା ବି ତ ଗୋଟାଏ କଳା ।' 'ଅଧିକା କ'ଣ ଆଉ କରୁଛ ଯେ ? ସେଇ ପୁରୁଣା ଥିଓରି ପତି ପରମେଶ୍ୱରର ।' ଏଇ ଥିଓରିକୁ ତମେ କେବେଠୁ ଆପଣେଇଲ ? ତମ ନାରୀ ଜାତିଟା ସତରେ ଯେତିକି ସରଳ ସେତିକି ବୋକା - ଏଇଟା ହିଁ ତମମାନଙ୍କ ଡେଫିସିଏନ୍‌ସି । କ'ଣ ନା, 'ସ୍ତ୍ରୀ ଧର୍ମ' ଏଇଟା । କହିଲ, ଧର୍ମର କ'ଣ କିଛି ସ୍ଥିତି ଅଛି ନା ରୂପରେଖ ? କେବଳ ଗୋଟାଏ ଧାରଣା; ଏଇ କନ୍‌ସେପ୍ଟ, ମାନେ ଏଇ ନାରୀ ଧର୍ମ- କନ୍‌ସେପ୍ଟର ବାହାନା କରି ଆମ ସମାଜ ସମଗ୍ର ନାରୀ ଜାତିଟାକୁ 'ଆଜ୍ଞାକାରୀ' କରି ସବୁଦିନ ପାଇଁ ରଖି ଦେଇଛି ସିନା; ବରଂ ମୋ ମତରେ ଏହା ଏକ ପ୍ରକାର ବ୍ଲାକ୍‌ମେଲିଂ...' ସିକତା ଟିକିଏ ଚଢ଼ା ଗଳାରେ ଝାମ୍ପି ପଡ଼ିଲା ଅଜିତ୍‌ର କଥା ମଝିରେ । "ଖୁବ୍ କଥା କହୁଛୁ ତ', ଆଜି ମୁଁ କିଛି କହୁନି ତୋତେ ଅବଶ୍ୟ । ସମୟ ଆସୁ, ତୁ ନିଜେ ବୁଝିବୁ । ତେବେ ଟିକିଏ ଭାବ; ତୋ' ବିଚାରର କନ୍‌ସେପ୍ଟକୁ ତରଳେଇ ତରଳେଇ ଦେଖ, ସେଠି ନାରୀର ତ୍ୟାଗମୟୀ, କ୍ଷମାମୟୀ ରୂପଟା କେମିତି ଝଟକୁଛି । ଅନ୍ୟ କୋଉ ବିଚାରଧାରାରେ ଏ ରୂପ ତୁ ଦେଖିଛୁ ? ନାହିଁ ନା- ମୁଁ କହୁନି ତୋର ବିଚାର ଏକଦମ୍ ଭୁଲ୍ ବୋଲି । ମାନୁଛି, ନାରୀର ଆହୁରି ବି ଅନେକ ରୂପ ଅଛି । ଆବଶ୍ୟକ ସ୍ଥଳେ କନ୍‌ଫ୍ରଣ୍ଟେସନ୍‌କୁ ବି ସେ ଓହ୍ଲେଇ ଆସିପାରେ - ଏଇଟା ସମ୍ଭବ ପାଶ୍ଚାତ୍ୟ ଚିନ୍ତାଧାରାରେ । ହେଲେ ଆମ

Digitized by PPRACHIN, SOA

ଦେଶରେ, ନାରୀ ସବୁଠୁ ଭିନ୍ନ – ଆମର କିଛି ଦାବୀ ନଥାଏ । କାରଣ ସେ ମା' ଏବଂ ସବୁ ନାରୀ ଭିତରେ ଜଣେ ମା' ଅଛି । ଯିଏ ଅକୁଣ୍ଠ ଚିତ୍ତରେ ସର୍ବସ୍ୱ ଅଜାଡ଼ି ଦେଇପାରେ । ଏଇଟା ହିଁ ତାର ସହଜାତ, ଦୁର୍ବଳତା ଏବଂ ପ୍ରଥମ ପରିଚୟ । ଏକଥା ତ ତୁ ନିଶ୍ଚୟ ମାନିବୁ ?

ଅଜିତ୍ ହୁଏତ ଅନ୍ୟ ଦିନ ହୋଇଥିଲେ ତର୍କକୁ ଓହ୍ଲେଇଥାନ୍ତା – କିନ୍ତୁ ନିଜେ ସେ ହିଁ କଥାରେ ଲଗାମ୍ ଦେଲା – "ତେବେ, ସେ ଆଲୋଚନା ଆଜି ଥାଉ, ଆଉ ଦିନେ ଫ୍ରି-ଟାଇମ୍ ଦେଖି କରିବା ।"

ତୋତେ ଗୋଟାଏ କଥା କହିବି ବୋଲି ଭାବୁଛି, କହି ପାରିନି ।

— "କୋଉ କଥା ?" ଅଜିତ୍ ପଚାରିଲା ।

— ତୋର ମନେଥିବ ମୋର 'ନିଃଶବ୍ଦ ସଂଳାପ' ପାଣ୍ଡୁଲିପି କଥା । ତୁ ଥରେ ମୋତେ ପଚାରୁ ନଥିଲୁ କି ! ମନେ ପଡ଼ିଲା ?

ହଠାତ୍ କିଛି ଉତ୍ତର ନଦେଇ ଅଜିତ୍ ଶୁଣିଲା । 'କ'ଣ ହେଲା ଯେ, 'ନିଃଶବ୍ଦ ସଂଳାପ' କାହିଁକି ମନେ ପଡ଼ିଲା ତମର ?'

— "ସେଇ ପାଣ୍ଡୁଲିପିକୁ ମୁଁ ଖୋଜି ପାଉନି ଅନେକ ଦିନ ହେଲା । ଅନେକ ଖୋଜିଲିଣି । ମନେ ପକେଇ ପାରୁନି କୋଉଠି ରଖିଲି – କହିଲା ବେଳକୁ କଣ୍ଠସ୍ୱର ଜକେଇ ଆସିଥିଲା ତାର... ।" "ତମେ ବଡ଼ କେୟାରଲେସ୍ ନାନୀ । ଖୁବ୍ ଅଯତ୍ନ ତୁମେ ନିଜ ଲେଖା ଆଉ ନିଜ ପ୍ରତି । ଆଉରି ଥରେ ଖୋଜି ଦେଖ, କୋଉଠି ରହିଯାଇଥିବ । ବ୍ୟସ୍ତ ହୁଅନି... ନିଶ୍ଚୟ ପାଇବ... ଦେଖ ମୁଁ କହୁଛି..." ଆଶ୍ୱାସନା ଦେଇ ଅଜିତ୍ ଫୋନ୍‌ଟା ରଖିବାକୁ ଯାଇ ବିଦାୟ ନେଇଥିଲା ।

ସେ କିନ୍ତୁ ଏ ଯାଏ ପାଣ୍ଡୁଲିପିଟିକୁ ଖୋଜି ପାଇ ପାରିନି ।

— ବେସିନ୍‌ରେ ହାତ ଧୋଇ ଫ୍ରିଜ୍ ଭିତରୁ ମାଛ ବାହାର କଲା ଭାଜିବା ପାଇଁ । ଲୁଣ ହଳଦୀ ମାଖି ପୁଣି ନିଆଁ ଧରେଇଲା ବର୍ଣ୍ଣରରେ । ଫ୍ରାଇଙ୍ଗପ୍ୟାନ୍‌କୁ ଚୁଲିରେ ବସେଇ, ଭାବିଲା ସିକତା, ଏ ଯାଏ କ'ଣ ଅଜିତ୍ ଫେରିନି ଦିଲ୍ଲୀରୁ । ଫୋନ୍‌ଟିଏ ବି କରିନି । ରିସର୍ଚ୍ଚ କାମ ସରିନଥିବ ହୁଏତ । ନିଜ ଭିତରେ କୌଣସି ରକମର କ୍ରାଇସିସ୍ ଉପୁଜିଲେ ଅଜିତ୍ ମନେପଡ଼େ । ଆଜି ବି ସେଇୟା ହେଲା ।

ଗଲା କାଲିଟା ରବିବାର ଥିଲା । ସବୁକାମ ଢିଲା କରି ସେ ଆହୁରି ଥରେ ଖୋଜିଲା ପାଣ୍ଡୁଲିପିକୁ ବ୍ୟସ୍ତ ହୋଇ । ତାର ବ୍ୟସ୍ତତା ସୁପ୍ରିୟଙ୍କ ଦୃଷ୍ଟିକୁ ବି ଆକର୍ଷଣ କରିଥିଲା । ପଚାରିଥିଲେ । ସେ ଆଡ଼େଇ ଯାଇଥିଲା କଥାଟାକୁ । କହିଥିଲେ ଗୁଡ଼ାଏ ଆକ୍ଷେପ ଶୁଣିଥାନ୍ତା । କାରଣ ସେ ତାର ସୃଜନଶୀଳତାକୁ ଗୁରୁତ୍ୱ ଦିଅନ୍ତି ନାହିଁ । ତାଙ୍କ

Digitized by PPRACHIN, SOA

ପାଇଁ ଏସବୁ ସମୟର ଅପଚୟ । ଫାଇଦା ନାହିଁ । କୋଉ ପ୍ରଶଂସକ କି ଗଳ୍ପ ପାଠକ କେବେ ଟିକିଏ ଫୋନ୍‌ରେ ପ୍ରଶଂସା କଲେ - ସେ ତାକୁ ସହଜ ଭାବେ ନିଅନ୍ତି ନାହିଁ । କୁହନ୍ତି, କିଛି ଫାଇଦା ଥିବ । ସବୁକୁ ତ ସେ ଫାଇଦାରେ ମାପନ୍ତି । ପ୍ରତିଭାର ମୂଲ୍ୟ ଅପେକ୍ଷା ତାଙ୍କର ପଦମର୍ଯ୍ୟାଦା, ପ୍ରତିପତ୍ତି ମୋଟା ଅଙ୍କର ଦରମା ନେଇ ସେ ଗର୍ବିତ । ଏହା ହିଁ ତାଙ୍କ ଜୀବନର ସର୍ବୋତ୍ତମ ସାଫଲ୍ୟ ।

— ଭାବିଲା ବେଳକୁ ତା' ଭିତରର ସ୍ୱାଭିମାନୀ ନାରୀଜଣକ କୁହୁଳି ଉଠିଥିଲା ଚରମ ଅସହାୟତାରେ । ତାଙ୍କ ଦର୍ପିତ ଅହଂ ଆଗରେ, ତା' ବିଭୋର ସ୍ୱପ୍ନର ମାନେ ହିଁ- ନ ଥା'ନ୍ତି । ଭାବୁ ଭାବୁ ଲମ୍ବା ନିଃଶ୍ୱାସଟିଏ ନେଇ ନିଜକୁ ବୁଝେଇଲା- ହୁଏତ ଭଲ ସମୟ ଆସିବ ଦିନେ । ସେ ହତାଶ ହେବ କାହିଁକି ଏବଂ ସେଇ କ୍ରମରେ ଅଜିତ୍ ମନେପଡ଼ିଲା ।

ଅଜିତ୍ ସହିତ ତାର କୌଣସି ରକ୍ତଗତ ସଂପର୍କ ନାହିଁ । ସେ ତାର ବନ୍ଧୁ, ସହକର୍ମୀ ବୟସରେ ଛୋଟ । ସେ ଚାକିରି କରୁଥିବା ବେଳେ ଅଜିତ୍ ନୂଆ ହେଇ ଯୋଗ ଦେଇଥିଲା । ପ୍ରତିଭାବାନ, ସାହିତ୍ୟାନୁରାଗୀ ଥିଲା ସେ । ଇଂରାଜୀ ସାହିତ୍ୟର ଅଧ୍ୟାପକ । ବିଭାଗୀୟ ଏକ ଆଲୋଚନା ଚକ୍ରରେ ସିକତା ସହିତ ତା'ର ପରିଚୟ । ସିକତାର ଗୋଟିଏ ଗଳ୍ପ ତା'ର ଦୃଷ୍ଟି ଆକର୍ଷଣ କରିଥିଲା । ସେଇ ଦିନରୁ ତାର ସଂପର୍କ ଏବଂ ସଂପୃକ୍ତି ଅଜିତ୍ ସହିତ । ଏ ସଂପର୍କ ଖୁବ୍ କମ ଦିନରେ ଆତ୍ମୀୟତାର ବନ୍ଧନୀ ଭିତରକୁ ଆସି ଯାଇଥିଲା । ବାପା ବୋଉ ମଧ ତାର ଅମାୟିକ ନିଛଳ ବ୍ୟବହାରରେ ମୁଗ୍ଧ ହେଇ ପୁଅର ମର୍ଯ୍ୟାଦା ଦେଇଥିଲେ । ବାହାଘର ପରେ ମଧ ସୁପ୍ରିୟ-ସିକତାଙ୍କ ପାରିବାରିକ ଜୀବନରେ ଅଜିତ୍‌ର ସହଜ ପ୍ରବେଶ ଥିଲା ।

ତା' ସତ୍ତ୍ୱେ ସୁପ୍ରିୟଙ୍କର ରକ୍ଷଣଶୀଳ ସାମନ୍ତବାଦୀ ଦୃଷ୍ଟିକୋଣକୁ ଅଜିତ୍ କେବେ ବି ଆଙ୍ଗୁଠି ଦେଖେଇନି । ତା ନିଜ ସୀମା ସଂପର୍କରେ ସେ ସଚେତନ । ଅଥଚ ପ୍ରତିଟି ସୋପାନରେ ସିକତାର ସ୍ୱପ୍ନକୁ ସାକାର କରି ରଖିବା ପାଇଁ ପ୍ରୋତ୍ସାହିତ କରି ଆସିଛି । ପ୍ରେରଣା ଦେଇଛି । ସେଇଥିପାଇଁ ସିକତା କଲମ ଛାଡ଼ି ପାରିନି । ନହେଲେ କୋଉଦିନୁ ତା ଲେଖକୀୟ ସତ୍ତା କବର ନିଅନ୍ତାଣି । ଅଜିତ୍ ପ୍ରତିଶ୍ରୁତିବଦ୍ଧ, ସିକତାର ପ୍ରତିଭାକୁ ନଷ୍ଟ ହେବାକୁ ଦେବନି, ପ୍ରତିଭା 'ଈଶ୍ୱରଦତ୍ତ' । ଚାହିଁଲେ ମିଳେନା ସମସ୍ତଙ୍କୁ । ତେଣୁ ସେ ସୁଯୋଗ ପାଇଲେ ସଚେତନ କରେଇ ଦିଏ ସିକତାକୁ- ତମ ଲେଖାରେ ଦମ୍ ଅଛି ନାନୀ, ତମ ସୃଷ୍ଟି ସାର୍ବଜନୀନ । ତମେ ପାରିବ । ତମ ଭିତରେ ବି ଜୋର ଅଛି ।"

ହସିଲା ସିକତା । ଗ୍ୟାସ ଅନ୍ କରି କରେଇ ବସେଇ ମନକୁ ମନ କହିଲା, ଅଜିତ୍‌ଟା ପାଗଳ । ସୁପ୍ରିୟଙ୍କ ପସନ୍ଦ ମୁତାବକ ମସଲା ଦେଇ ମାଛ ରାନ୍ଧିବ ବୋଲି

Digitized by PPRACHIN, SOA

ପିଆଜକୁ ସରୁ ସରୁ କରି କାଟିଲା ଯତ୍ନ କରି । ନିମି ପାଇଁ ପେଟ ମାଛରୁ ଭଜା ଦି'ଖଣ୍ଡ ରଖିବାକୁ ବି ଭୁଲିଲାନି । ଆଳୁପୋସ୍ତ ଅଛି ଫ୍ରିଜ୍ ଭିତରେ । ସାଲାଡ଼୍ ପାଇଁ ବ୍ୟବସ୍ଥା କରି ଦେଲେ, ଆଜି ପାଇଁ ଲଞ୍ଚ ପ୍ରସ୍ତୁତ । ସାଲାଡ଼ ପାଇଁ ଗାଜର ଆଉ କାକୁଡ଼ି କାଟୁ କାଟୁ ଭାବନାର ଖୋଲା ଯାଗା ଭିତରକୁ ପୁଣି ପଶି ଆସିଲା ଅଜିତ୍ । ଦିନେ ଅଜିତ୍ ବହିଥାକ, ଆଲମାରି ଘଣ୍ଟା ଚକଟା କରି 'ନିଃଶବ୍ଦ ସଂଳାପ'କୁ ଆବିଷ୍କାର କରିଥିଲା । ତା' ଉପରେ ଆଖି ପହଁରେଇ ଖୁସିରେ ପାଟିଟାଏ କରି ମାଡ଼ି ଆସିଥିଲା ତଳକୁ ଏକା ମାଙ୍କଡ଼ ଖେପାରେ- 'ଏତେ ସୁନ୍ଦର କ୍ରିଏସନ୍‌କୁ ତମେ କାହିଁକି ଥାକ ଭିତରେ ମାଡ଼ି ଦେଇଥିଲ ଯେ ? ଯେ କୌଣସି ପବ୍ଲିଶର ତ ଯାକୁ ଖୁସିରେ ପ୍ରକାଶ କରିବାକୁ ଚାହିଁବ ।' ତମେ ଏ ଯାଏ ବି ନିଜକୁ ମାପି ପାରିଲନି ନାନୀ, ଅଜିତ୍ କହିଥିଲା ।

ସେଦିନ ଖାଇବା ଟେବୁଲ୍‌ରେ ବସି ସୁପ୍ରିୟ ଜରୁରୀ କାଗଜପତ୍ର ଦେଖୁଥିଲେ । ଅଜିତ୍‌ର କଥା ତାଙ୍କ କାନରେ ପଡ଼ିଲା ମାତ୍ରେ ମୃଦୁ ଆକ୍ଷେପ କରିଥିଲେ- ଖାଲି ପ୍ରକାଶ କରିବନି ତ... ସେଇ ଯୋଉ ତମର ବଡ଼ ପୁରସ୍କାର... ନାଁ ଟା ମନେ ପଡୁନି... ତା ପାଇଁ ମଧ୍ୟ ସୁପାରିସ୍ କରିବ ।

ଅଜିତ୍‌କୁ ଭଲ ଲାଗିନଥିଲା ତାଙ୍କର ଆକ୍ଷେପୋକ୍ତି । ହୁଏତ କିଛି ଗୋଟାଏ ଜବାବ ଦେବାକୁ ପ୍ରସ୍ତୁତ ହେଉଥିଲା, ନିଜେ ସିକତା ହିଁ ପ୍ରସଙ୍ଗ ବଦଳେଇ ଚପି ଦେଲା କଥାକୁ- "ଥାଉ ଅଜିତ୍ ସେ ସବୁ ଯୋଜନା, ପରେ କେବେ ଦେଖିବା, ତୁ ଆସିଲୁ ଶୀଘ୍ର ଖାଇବା ।" ଅଜିତ୍ ବୁଝି ପାରିଥିଲା ପରିସ୍ଥିତିକୁ । ଗମ୍ଭୀର ହେଇଯାଇଥିଲା ହଠାତ୍ । ସିକତା ଯେତିକି ଅପମାନ ବୋଧ କରି ନଥିଲା, ତା'ଠୁ ଅଧିକା ଅଜିତ୍ ଅପମାନିତ ମନେ କରିଥିଲା ନିଜକୁ । ଖାଇସାରି ଉଠି ଯାଇଥିଲା ଚୁପ୍‌ଚାପ୍ । ସଙ୍କଟ ଟଳି ଯାଇଥିଲା ଆପେ । ଘଟଣା ଭୁଲି ହେଇ ଯାଇଥିଲା କ୍ରମଶଃ ମନେ ନଥିଲା ଆଉ 'ନିଃଶବ୍ଦ ସଂଳାପ'ର କଥା । ଅନେକ ଦିନ ହେଇଗଲାଣି ଘଟଣାଟା ।

ସେଇ 'ନିଃଶବ୍ଦ ସଂଳାପ' - ଏଇ କିଛିଦିନ ହେଲା ପୁଣି କାହିଁକି କେଜାଣି ତା' ଭିତରେ ଖୁଦୁବୁଦୁ ହେବା ଆରମ୍ଭ କରିଦେଇଛି । ଭଲ ଲାଗୁନି ମନଟା ଖୋଜିଲାଣି ବି ତାକୁ । ନିମିର ଗହଳ ଚହଳ ଖେଳକୁଦ ଭିତରେ ଭୁଲି ସିନା ହେଇଯାଉଛି, ନ ହେଲେ ବ୍ୟସ୍ତ ଲାଗୁଛି । ନିଜ ସୃଷ୍ଟିକୁ ଠିକ୍ ଭାବେ ସାଇତି ରଖି ପାରିଲାନି ମଧ୍ୟ । ଅପରାଧ ବୋଧରେ ଭାଙ୍ଗି ଯାଉଥିଲା ନିଜ ଭିତରେ । ଧିକ୍କାରୁଥିଲା ନିଜର ଅବିବେକୀପଣକୁ । ଏମିତି ତ କେତେ ଲେଖା ହଜେଇ ଦେଇଛି ଅଜାଣତରେ ।

ମନେପଡ଼ିଗଲା ନିମି କଥା - ଭାସିଗଲା ଭାବନା ଦୂରକୁ । ଝିଅଟାର ଆସିବା ବେଳ ହେଲାଣି - ବସ୍ ପାଖକୁ ଯିବାକୁ ହେବ । ସୁପ୍ରିୟଙ୍କ ଡ୍ରାଇଭର ଆସିବ ଲଞ୍ଚ

Digitized by PPRACHIN, SOA

ନେବାପାଇଁ । ଟିଫିନ୍ କ୍ୟାରିଅର ସଜାଡ଼ିବାକୁ ହେବ । ଟିକିଏ ଫ୍ରୁଟଜୁସ୍ ବି କରିବ ନିମି ପାଇଁ କ୍ଷୀର ଅପେକ୍ଷା ଜୁସ୍ ଖାଇବାକୁ ପସନ୍ଦ କରେ ଝିଅଟା । କାଳେ କାମର ଫାନ୍ଦରେ ଭୁଲିଯିବ ଭାବି, ଫ୍ରିଜ୍ ଭିତରୁ ସେଓ, କମଳା, ଅଙ୍ଗୁର ବାହାର କରି ସ୍ୱାଭାବିକ ଢଙ୍ଗରେ ଧୋଇ ରଖିଲା ସିକତା । ଧୋଇଲା ବେଳେ ମନେ ପଡ଼ିଲା ଅଜିତ୍ । ପାଖରେ ଥିଲେ ପଚାରିଥାନ୍ତା- "ତମର କ'ଣ ପସନ୍ଦ ନାନୀ ? ଅନ୍ୟମାନଙ୍କ ପସନ୍ଦ ଅପସନ୍ଦ ତ ଠିକ୍ ମନେ ରଖ ।" ଅଜିତ୍‌ର ପ୍ରଶ୍ନ ସବୁ ଏମିତି ଅବାଗିଆ । ସତରେ ବି ତାର ପସନ୍ଦ ଅପସନ୍ଦ କ'ଣ । ସମସ୍ତଙ୍କ ପସନ୍ଦ ହିଁ ତାର ପସନ୍ଦ । "ନିଜ ପାଇଁ ଅଲଗା କରି କିଛି ଭାବି ହୁଏନାରେ"- କିଛି ଗୋଟାଏ କାମ କରୁ କରୁ ହାଲୁକା ଭାବେ ଉତ୍ତର ଫେରାଏ ସେ ଅଜିତ୍‌କୁ । ଅଜିତ୍ କିନ୍ତୁ ନଛୋଡ଼ବନ୍ଧା, କୁହେ- "ମୁଁ କିନ୍ତୁ ତମକୁ ସିରିୟସ୍‌ଲି ପଚାରୁଛି, ତମର ତ କିଛି ଗୋଟାଏ ପସନ୍ଦ ଥିବ ?" କିଛି ବି, ଖାଇବା, ବୁଲିବା, ପିନ୍ଧିବା, ଲେଖିବା- ନିଜ ଭିତରେ ଚମକି ପଡ଼ିଲା ସିକତା । ସିରିୟସ୍ ! ନିଜ ପାଇଁ ? ଲମ୍ୱା ନିଃଶ୍ୱାସଟିଏ ନେଇ ମନକୁ ମନ କହିଲା, ସେ ତ ଆଉ ନିଜ ପାଇଁ ସିରିୟସ୍ ହେଉନି ଆଜିକାଲି । ହେବା ପାଇଁ ବି ଇଚ୍ଛା ନାହିଁ । କିଏ ବିଶ୍ୱାସ କରନ୍ତୁ ବା ନ କରନ୍ତୁ । ତା ଛଡ଼ା ସିଏ କୋଉ ମଣିଷରେ ମଣିଷ ଯେ । ଯଦି ବି କେବେ ଅଭ୍ୟାସବଶତଃ ଭାବି ହେଇଯାଇଛି, ସେ ତାକୁ ଫ୍ରିଜ୍ କରିଦେଇଛି ଥାଉ, ବୋଲି । ଜାଣେନା ଏଇଟା ତାର ଅଭିମାନ ପ୍ରସୂତ ଅବହେଳା ନିଜ ପାଇଁ ନା ଆଉକିଛି । ଅଜିତ୍‌ର କିନ୍ତୁ ଭିନ୍ନମତ । ସେ କୁହେ, "ଇଏ ଅଭିମାନ ନୁହେଁ, ଅଜ୍ଞତା ନିଜ ସଂପର୍କରେ" ନିଜ ଭିତରେ ଥିବା ଗୁଣକୁ ତୁମେ ଦେଖି ପାରୁନ କି ନିଜକୁ ଚିହ୍ନିବା ପାଇଁ ଚେଷ୍ଟା ବି ନାହିଁ । ସିକତା ଡଗଡ଼ଗ ଆଖିରେ ଅଜିତ୍‌କୁ ଚାହେଁ ବିସ୍ମୟରେ ।

— "ମୋତେ ଚାହୁଁଛ କ'ଣ, ନିଜକୁ ଚାହଁ- ନିଜ ଭିତରକୁ । ସେଠି ତମର ଆଉ ଗୋଟିଏ ପରିଚୟ ଅଛି । ମୋତେ ତ ଆଶ୍ଚର୍ଯ୍ୟ ଲାଗୁଛି ଯେ, ସେଦିନର ସିକତା ଆଉ ଏବର ସିକତା ଭିତରେ ଏତେ ଫରକ୍ କିମିତି, କୁଆଡ଼େ ହଜିଗଲା ସିଏ ?"

ମିକ୍ସି ଭିତରେ ଫ୍ରୁଟ୍ ଜୁସ୍ ଭଉଁରି କାଟି ଘୂରୁଥିଲା ସଶବ୍ଦରେ । ତାର ଭାବନା ମଧ୍ୟ ଭଉଁରି କାଟୁଥିଲା । ସତ କଥା, ସେ ଆଜିକାଲି କିମିତି ନିସ୍ପୃହ ହେଇଯାଇଛି । ପରିସ୍ଥିତି ଆଉ ପରିବେଶ ଭିତରେ ଖାପ ଖୁଆଇବାକୁ ଯାଇ ସମୟ ପ୍ରତାରିତ କରୁଛି । ନିଜ ଭିତରକୁ ପଶି ନିଜକୁ ଖୋଜିବାର ପ୍ରୟାସ କରିନି । ମିକ୍ସିର ସୁଇଚ୍ ଅଫ୍ କରି ସିକତା ଭାବନାର ହାତ ଧରି ଅଟକେଇ ପ୍ରଶ୍ନ କଲା, କାହିଁକି ? ସତରେ କ'ଣ, ପ୍ରତିକୂଳତାର ବାଡ଼ ଡେଇଁ ନିଜ ପାଇଁ ରାସ୍ତାଟିଏ ତିଆରି କଲାଭଳି ଦୁଃସାହାସ ତାର ନାହିଁ ? ସେ ତ ଅବାଟରେ ଯାଉନି - ନିଜ ସପକ୍ଷରେ ଯୁକ୍ତି ବାଢ଼ିବା ପାଇଁ କ'ଣ ତାର ସାହସର

Digitized by PPRACHIN, SOA

ଅଭାବ... ? ହଠାତ୍ ସିକତାର ଭାବନା ଗୋଟାଏ ବିନ୍ଦୁରେ ସ୍ଥିର ହେଇଗଲା । ଅବଚେତନର ଗୋଟାଏ କୋଣରୁ ସଂଭ୍ରାନ୍ତ ଝିଅଟିଏ ଯେମିତି ଅଙ୍ଗୁଳି ନିର୍ଦ୍ଦେଶ କରୁଛି- 'ଲୋକଲଜ୍ଜା' । ବାହାରକୁ ପ୍ରୋଜେକ୍ଟ ହେଉଥିବା ଇମେଜ୍‌ଟାରେ ଦାଗ ଲାଗିଯିବାର ଅଜଣା ଭୟ ! ତା ଛଡ଼ା ଆମ ସମାଜ ଏତେ ମାତ୍ରାରେ ବିଚାରବନ୍ତ ନୁହେଁ ଯେ, ନାରୀକୁ ଏତେ ସହଜରେ ଛାଡ଼ିଦେବ ସ୍ୱାଧୀନ ଭାବରେ କିଛି ଚିନ୍ତା କରିବାକୁ, ଯାହା ପୁରୁଷ ଆଉ ପରମ୍ପରା ଦ୍ୱାରା ସମର୍ଥିତ ନୁହେଁ । ପୁରୁଷ ଠାରୁ ଅଧିକା ହେବା ତ ଦୂରର କଥା ସମକକ୍ଷ ହେବାର ଅଧିକାର ବି ଦେବା ପାଇଁ କୁଣ୍ଠିତ । ସ୍ଥାନ ବିଶେଷରେ ସମ୍ଭବ ହେଉଥିଲେ ବି 'ପୁରୁଷଇଗୋ'ର ରତ୍ନମହଲ ଭିତରେ ନିସ୍ତବ୍ଧ ହେଇଯାଉଛି ତାର ପରିଚୟ, ଏ କଥା କ'ଣ କାହାକୁ ଅଜଣା । ସିକତା ଭିତରେ ଅଣଋଣ ବୋହିଗଲା- ଅସହ୍ୟ । ଏକଦମ୍ ଅସହ୍ୟ ! କିନ୍ତୁ ପରମୁହୂର୍ତ୍ତରେ ଭାବିଲା, ଅସହଣୀ ହେବାର ବି କିଛି କାରଣ ନାହିଁ । ସବୁକଥା ସମ୍ଭବ ହେବ ଦିନେ, ହେଲେ ସମୟ ଓ ସୁଯୋଗକୁ ଅପେକ୍ଷା କରିବାକୁ ହେବ । ରାତାରାତି କାହାକୁ ସେ ବଦଳେଇ ଦେଇ ପାରିବନି । ଅଯଥା ଅଶାନ୍ତି, ଗଣ୍ଡଗୋଳ ବଢ଼େଇବା କଥା, ସଜାଡ଼ି ହେଇ ଆସୁଥିବା ସ୍ଥିତିଟା ବିଗିଡ଼ି ଗଲେ ଉଦ୍ଦେଶ୍ୟ ଫଳବତୀ ହେବନି ।

ହଠାତ୍ ସେଲ୍ ଫୋନ୍ ବାଜି ଉଠିଲା । ସ୍କ୍ରିନ୍ ଉପରେ ଅଜିତ୍‌ର ନାଁ । ଖୁସି ହେଇଗଲା । ଉଠେଇଲା । ସେପଟୁ ଅଜିତ୍ ପଚାରୁଛି, 'କେମିତି ଅଛ ନାନୀ, କେମିତି ଅଛନ୍ତି ସୁପ୍ରିୟ ଭାଇ ଆଉ ନିମି ? କାଲି ଫେରିଲି ଦିଲ୍ଲୀରୁ । ଭେରି ସରି, ଏ ଭିତରେ ତମ ଖବର ରଖିପାରିନି ।' କିଛି ଉତ୍ତର ଦେବା ଆଗରୁ ତରଳିଗଲା ସିକତା, ଅଜିତ୍ ଉପରେ ସେ ବେଶୀ ସମୟ ଅଭିମାନ କରି ପାରେନି । ନିଜକୁ ସହଜ କରି ପଚାରିଲା- 'ତୋ କାମ ସରିଲା ଦିଲ୍ଲୀରୁ, କେବେ ପ୍ରଡ୍ୟୁସ୍ କରିବୁ ଥେସିସ୍ ?'

— ଖୁବ୍ ଶୀଘ୍ର, ଫାଇନାଲ କପି ପ୍ରସ୍ତୁତ ଚାଲିଛି । ଗୋଟିଏ ଅନୁରୋଧ ଥିଲା ତମ ପାଖରେ... ଅଜିତ୍ ସହ ଗପିବାକୁ ସମୟ ନଥିଲା ନିମିର ସ୍କୁଲ ଫେରିବା ବେଳ ହେଇ ଯାଉଥିଲା । ତରବରରେ ଫୋନ୍ ରଖିବାକୁ ଯାଇ କହିଲା- ପ୍ଲିଜ୍ ଅଜିତ୍, ସଂଧ୍ୟାବେଳେ ଆ', କଥା ହେବା, ଏକାବେଳକେ ଡିନର କରି ଯିବୁ, ଏବେ ବସ୍‌ଷ୍ଟପକୁ ଯିବି ନିମିକୁ ଆଣିବାକୁ, ରଖୁଛି ଫୋନ୍...

"ଗୋଟେ ମିନିଟ୍ ଶୁଣ । ସଂଧ୍ୟାବେଳେ ଯିବା ସମ୍ଭବ ହେବନି । ଜଣେ ଭଦ୍ରଲୋକଙ୍କୁ ସମୟ ଦେଇଛି, ତା'ଛଡ଼ା ତାଙ୍କୁ ଲଞ୍ଚ ପାଇଁ ନିମନ୍ତ୍ରଣ ବି କରିଛି ସକାଳୁ । ତମେ ବି ଆସନା ସୁପ୍ରିୟ ଭାଇଙ୍କୁ ନେଇ ଚମତ୍କାର ମଣିଷ ଭଦ୍ରଲୋକ ଜଣକ । ସାକ୍ଷାତ କଲେ ଜାଣିବ । ମୋ ତରଫରୁ ସୁପ୍ରିୟ ଭାଇଙ୍କୁ ବି କହିବ, ହେଲା... ଦୁହେଁ ଆସିବ ନିଶ୍ଚୟ ।"

Digitized by PPRACHIN, SOA

"ଆଶ୍ଚର୍ଯ୍ୟ ! କୋଉ ଖୁସିରେ ଏଇ ପାର୍ଟି ଦେଉଛୁ କିରେ ? କଥା କ'ଣ ?" "କିଛି ନାହିଁ, ତମେ ଆସ ନା, ଜାଣିବ ତ । ତମ ପାଇଁ ସରପ୍ରାଇଜ୍ ଅଛି ଗେଷ୍ଟ ହାଉସରେ ।" "ସରପ୍ରାଇଜ୍ ପୁଣି ମୋ ପାଇଁ ! ବୁଝି ପାରିଲିନି... ଆଶ୍ଚର୍ଯ୍ୟ ହେଲା ସିକତା" । "ସରପ୍ରାଇଜ୍ ତ ସରପ୍ରାଇଜ୍ । ଆଗରୁ କହି ଦେଲେ ଆଉ ମଜା ରହିଲା କୋଉଠି । ତମେ ଆସ, ବାସ୍ ।" ଫୋନ୍ କାଟି ଦେଲା ଅଜିତ୍ ।

ସିକତା ଭିତରେ ଛୋଟ ହଇଚଇଟିଏ ସୃଷ୍ଟି ହେଲା । ନିମିକୁ ଆଣିବା ପାଇଁ ବସ୍‌ଷ୍ଟପ୍‌କୁ ଯିବା ଭିତରେ ସେ କେତେ କ'ଣ ଭାବିଗଲା । କ'ଣ ହୋଇଥିବ ସରପ୍ରାଇଜ୍‌ଟା ଭାବନାର ଅନାବନା ଗଳିରେ ଚାଲୁ ଚାଲୁ ଠାଏଁ ସ୍ଥିର ହେଇଗଲା । ଅଜିତ୍ ନିଶ୍ଚେ କୌଣସି ଝିଅ ପସନ୍ଦ କରିଛି । ତାକୁ ଦେଖେଇବ, ଲଞ୍ଚ ପାର୍ଟି ଗୋଟାଏ ବାହାନା ମାତ୍ର, ହଉ, ଟୋକା ବୁଲୁଥିଲା ବାବନାଭୂତ ହେଇ, ଏଥର ଜୁଆଳି ପଡ଼ିବ । ଭାବୁ ଭାବୁ ଖୁସି ଲାଗିଲା ତାକୁ । ରାତିର ଡିନର ଟେବୁଲରେ ସୁପ୍ରିୟଙ୍କୁ ବି ସବୁକଥା ବିସ୍ତାରିତ ଭାବେ କହିଲା... ତମକୁ ତ ସେ ବିଶେଷ ଭାବେ ନିମନ୍ତ୍ରଣ କରିଛି, ଯିବା ତ ?

ସୁପ୍ରିୟ 'ସରି' କଲେ । ଆପୟେଣ୍ଟମେଣ୍ଟ ଅଛି । ବାହାରୁ କିଛି ଡେଲିଗେଟ୍‌ସ ଆସୁଛନ୍ତି କମ୍ପାନୀ ମେଟରସ୍ ନେଇ । ମୋର ପ୍ରେଜେନ୍‌ସ ନିହାତି ଆବଶ୍ୟକ । ତମେ ବୁଝେଇଦେବ ଅଜିତ୍‌କୁ । ତାର ଚଏସ୍‌କୁ ମୋର ସମର୍ଥନ ଅଛି । ତମେ ଚାଲିଯିବ ନିମିକୁ ନେଇ । ଖାଇବାରେ ମନ ଦେଲେ ସୁପ୍ରିୟ । ସେ କେବେ ଏସବୁ ସୋସିଆଲ ମେଟରରେ ନିଜକୁ ସଂପୃକ୍ତ କରନ୍ତିନି । ତାଙ୍କ କମ୍ପାନୀ, ତାର ଅର୍ଥନୀତି, ମାର୍କେଟିଂ ଏବଂ କର୍ମଚାରୀଙ୍କୁ ନେଇ ବ୍ୟସ୍ତ । କମ୍ପାନୀର ଉନ୍ନତି ତାଙ୍କର ଉନ୍ନତି । କ୍ୟାରିଅର ଗଢ଼ିବା ତାଙ୍କ ଜୀବନର ଲକ୍ଷ୍ୟ । ସେଇ ଲକ୍ଷ୍ୟ ଭିତରେ ଅଛି ବଡ଼ ପଦ ପଦବୀ, ମୋଟା ଅଙ୍କର ଦରମା, ଆଭିଜାତ୍ୟପୂର୍ଣ୍ଣ ଜୀବନଶୈଳୀ, ଏକାନ୍ତ ଅନୁଗତା ପତ୍ନୀ, ସନ୍ତାନ-ଏଇ ତାଙ୍କର ନିଜସ୍ୱ ଦୁନିଆ, ସାମଗ୍ରିକ ଭାବେ ସବୁ ଯାନ୍ତ୍ରିକ ।

ଅଥଚ ଅନ୍ତରଙ୍ଗ ମନଟିଏ ଖୋଜୁଥିବା ସିକତା ଅଣନିଃଶ୍ୱାସୀ ହୋଇଯାଏ ଅହଂ ପଣର ଚଉକାଠି ଭିତରେ ତା' ସ୍ୱପ୍ନର ଠିକଣା ଖୋଜି ପାଏନା । ଯାନ୍ତ୍ରିକ ପରିବେଶ ଭିତରେ ସଜଳ ଜୀବନ ଖୋଜି ହତାଶ ହୁଏ । ଆତ୍ମ ସମ୍ମାନରେ ବେଳେବେଳେ ଧକ୍‌କା ଲାଗେ ବି । ତଥାପି ଜୀବନ ଗଡ଼ି ଚାଲେ ସମୟର ହାତଧରି ।

ସେଇ ରାତିରେ ହିଁ ଜଣେଇ ଦେଲା ସିକତା ଅଜିତ୍‌କୁ - ସୁପ୍ରିୟ ଯାଇ ପାରିବେନି । ସେ ଯିବ ନିମିକୁ ନେଇ । ରାତି ପାହି ସକାଳ ହେବା ପର୍ଯ୍ୟନ୍ତ ତା' ମନ କିନ୍ତୁ ଥୟ ଧରୁ ନଥିଲା । ସବୁଦିନ ଭଳି ନିଦରୁ ଉଠି ଈଶ୍ୱରଙ୍କୁ ପ୍ରାର୍ଥନା କଲା- ଦିନଟି ଶୁଭଙ୍କର ହେଉ ।

Digitized by PPRACHIN, SOA

ଏତିକିବେଳେ ଅଜିତ୍‌ର ସରପ୍ରାଇଜ୍‌ଟି କଅଁଳା ବାଛୁରୀ ଭଳି ଖସି ଆସି ପୁଣି ତାକୁ ଭୁଆଁ ବୁଲେଇଲା । ଚଞ୍ଚଳ ହେଲା ମନ । କେତେ ପ୍ରକାରେ ରୂପ ପରିଗ୍ରହ କରି ତା' ଚାରିପଟେ ବୁଲିଲା । ଅଥଚ ଯୁକ୍ତି ଦେଇ ଭାବିଲା ବେଳକୁ କୌଣସି ଉପନୀତରେ ପହଞ୍ଚି ପାରୁ ନଥିଲା । ଅଜିତ୍‌ଟା ସବୁବେଳେ ଏମିତି ଗୋଲମାଳ କରେ । କ'ଣ ନା, କହିଦେଲେ ଥ୍ରୀଲ୍ ରହିବନି । ଥ୍ରୀଲ୍‌ର ସ୍ୱତନ୍ତ୍ର ମଜା ଅଛି ତ' । ଛାଡ଼ ।

ମନକୁ ବୁଝେଇବାଝେଇ ନିଜ ସକାଳୁଆ ରୁଟିନ୍ କାମ ସବୁ ଗୋଟିକ ପରେ ଗୋଟିଏ ସାରିବାକୁ ଲାଗିଲା । ରୋଷେଇବାସର ବ୍ୟସ୍ତତା ନଥିଲା । ସୁପ୍ରିୟ ବାହାରେ ଲଞ୍ଚ କରିବେ ତାଙ୍କର ଅତିଥିମାନଙ୍କ ସହିତ । ସୁପ୍ରିୟ ଏବଂ ନିମି ଅଫିସ ଆଉ ସ୍କୁଲ ଗଲା ପରେ ସେ ନିଜକୁ ପ୍ରସ୍ତୁତ କରିବ । ବାହାରକୁ ଯିବ ଯେତେବେଳେ ଯେମିତି ସେମିତି ତ ଯାଇ ପାରିବନି । ସମୟ ନେବ ଟିକିଏ ନିଜ ପାଇଁ । ଗେଷ୍ଟ ହାଉସ ଯିବା ବାଟରେ ନିମିକୁ ନେଇଯିବ ସାଙ୍ଗରେ । ନିଶ୍ଚିନ୍ତ ମନରେ ହିଁ ସୁପ୍ରିୟ ଅଫିସ୍ ବାହାରି ଗଲେ । ଅଫିସ୍ ଗଲାବେଳେ ସବୁବେଳେ ସେ ଟେନ୍‌ସନ୍ ଫ୍ରି ଥାନ୍ତି । ଏଥିପାଇଁ ତାଙ୍କର ନିର୍ଦ୍ଦେଶ ପ୍ରତି ସିକତା ଖୁବ୍ ସଚେତନ । ଯଦିଓ ସେ ଜାଣେ ଏଇଟା ତାଙ୍କର ବୁର୍ଜୁଆ ମେଣ୍ଟାଲିଟି । ଅଜିତ୍ ସମାଲୋଚନା କରେ ବି ଏଥିପାଇଁ । ତା କଥାରେ କୌଣସି ପ୍ରତିକ୍ରିୟା ପ୍ରକାଶ ନ କରି ହସିଦିଏ ସିକତା । କୁହେ- "ବାପା ବୋଉଙ୍କୁ ମୁଁ କଥା ଦେଇଛି ପରା ।" ଅଜିତ୍ କଟାକ୍ଷ କରି କୁହେ- "ଭଲ ଝିଅ, ଭଲ ବୋହୂ ହେବ ବୋଲି ତ ।"

ନିମିକୁ ସ୍କୁଲ ବସ୍‌ରେ ଉଠେଇ ସାରି, ଘରକୁ ଆସି ନିଜେ ଦି'ଖଣ୍ଡ ବ୍ରେଡ୍ ସହିତ କଫି ଖାଇ ନେଲା ଜଳଖିଆରେ । ଛୋଟ ମୋଟ କାମ ଯାହା ଥିଲା ସାରି ଦେଲା ସବୁ । ଫେରୁ ଫେରୁ ଜାଣେନା କେତେବେଳ ହେବ ।

ଏତିକି ବେଳକୁ ଅଜିତ୍‌ର ଫୋନ୍ ଆସିଲା, "ଭେନ୍ୟୁ ବଦଳିଛି । ଗେଷ୍ଟ ହାଉସ୍ ବଦଳରେ ହୋଟେଲ, 'ସିଲଭା' । ମୁଁ ନିଜେ ଆସି ନେଇଯିବି ତମକୁ । ପ୍ରସ୍ତୁତ ଥିବ ।"

ଏଥର ସିକତା ଦର୍ପଣ ସାମ୍‌ନାରେ ଠିଆ ହେଲା, ଚାହିଁଲା ନିଜକୁ ମୁହୂର୍ତ୍ତେ । ସେ ଅନେକ ଦିନ ହେଲା ନିଜକୁ ବୋଧେ ଦେଖି ନଥିଲା । ନୂଆ ଲାଗିଲା । ସୁପ୍ରିୟଙ୍କ ଧର୍ମପତ୍ନୀ, ନିମିର ମା ସିକତାକୁ, ସେ କେବେ ଏମିତି ଅନ୍ତରଙ୍ଗ ଭାବେ ଦେଖିବାକୁ ଚେଷ୍ଟା କରିନି ତ, ଭାବୁ ଭାବୁ ହାତ ଚାଲିଗଲା ତା' ଘଞ୍ଚ କେଶର ଅରଣ୍ୟ ଭିତରକୁ । ସେ କେବେ ସଜେଇ ହେବାକୁ ଭଲ ପାଏନି । ସବୁବେଳେ ସାଦାସିଧା । ତେବେ

Digitized by PPRACHIN, SOA

ସୁପ୍ରିୟଙ୍କ ସହିତ ପାର୍ଟି ଆଟେଣ୍ଡ କଲାବେଳେ ନିଜ ସାଜସଜ୍ଜା ସଂପର୍କରେ ତାକୁ ସଚେତନ ହେବାକୁ ପଡ଼େ । କାରଣ ସୁପ୍ରିୟ ଚାହାନ୍ତି ତାଙ୍କ ସ୍ତ୍ରୀ ସବୁବେଳେ ଟିପ୍‌ଟପ୍ ରହୁ ଅନ୍ୟମାନଙ୍କ ଭଳି । ସୁପ୍ରିୟଙ୍କ ମନ ରଖିବାକୁ ସେ କେବେ କେବେ ହାଲୁକା ମେକ୍‌ଅପ୍ ନିଏ । ଓଠରେ ଲିପ୍‌ଷ୍ଟିକ୍‌ର ଟଚ୍ ଦିଏ । ବାସ୍ ।

ଆଜି କିନ୍ତୁ ସେ ସାଜିବ ନିଜ ଇଚ୍ଛାରେ । କାନରେ ସୁପ୍ରିୟଙ୍କ ହୀରା କାନଫୁଲ ବେଶ୍ ଚମକୁଛି । ଗଳା ମ୍ୟାରେଜ ଆନିଭର୍‌ସରିରେ ପ୍ରେଜେଣ୍ଟ୍ କରିଥିଲେ । ବେକରେ ଛୋଟ ଲକେଟ ଥିବା ସରୁ ସୁନା ଚେନ୍ ଭଲ ଦିଶୁଛି । କେବଳ ମୁଣ୍ଡବାନ୍ଧି ବଡ଼ ଖୋଷାଟିଏ କରିବ; ବେଣୀ ନ ବାନ୍ଧି । ଲହରାୟୀତ ଘଞ୍ଚ କେଶରେ ପାନିଆ ଚଲଉ ଚଲଉ ଭାବିଲା ସିକତା । ଦର୍ପଣ ଆଗରେ ଠିଆ ହେଇ ନିଜକୁ ଦେଖୁ ଦେଖୁ ମୁହଁରେ ଫେସ୍ ପାଉଡରର ହାଲୁକା ପଫ୍ ବୁଲେଇ ଆଣି କପାଳରେ ଲାଲ୍ ଟିପ୍‌ଟିଏ ମାରିଲା ଆଲମିରା ଖୋଲି ସୁନେଲି ଜରି ଧଡ଼ିର ହାଲୁକା ଗୋଲାପୀ ସିଫନ ଜର୍ଜେଟର ଶାଢ଼ି ଖୋଜି ବାହାର କଲା । ଏଇ ରଙ୍ଗ ତାର ଖୁବ୍ ପସନ୍ଦ । ତାକୁ ଆଜି ପିନ୍ଧିବ । ଅନେକ ଦିନ ହେଲା ସେ ପିନ୍ଧି ନଥିଲା । ତା' ଜନ୍ମ ଦିନରେ ଥରେ ବୋଉ ଦେଇଥିଲା ।

ବାହାରେ ଅଜିତ୍‌ର ଗାଡ଼ି ରହିବାର ଶବ୍ଦ । ତରବର ହେଇ ବେକରେ ଟିକିଏ ପରଫ୍ୟୁମ୍ ସ୍ପ୍ରେ କରି ଦୁଆର ଖୋଲିବାକୁ ବାହାରି ଗଲାବେଳେ ମିଠାମିଠା ଦାମିକା ବାସ୍ନାରେ ଭରି ଯାଉଥିଲା ଘର ଭିତରଟା । ଦୁଆର ଖୋଲୁ ଖୋଲୁ ଅଭିବାଦନ ଜଣେଇଲା ଅଜିତ୍ । ଖୁସିରେ ଝଲସି ଉଠୁଥିଲା ସିକତାର ମୁହଁ । ଭଲ ଲାଗିଲା ଅଜିତ୍‌କୁ । ସିଏ ବି ହସି ଦେଲା ମନ ଖୁସିରେ ଟିକିଏ ।

ସେମାନେ ସିଧା ନିମିକୁ ଆଣିବା ପାଇଁ ସ୍କୁଲ ଗଲେ । ଗାଡ଼ି ଡ୍ରାଇଭ କରୁ କରୁ ଅଜିତ୍ ମନ ଫୁରୁଣାରେ କୌଣସି ଏକ ହିନ୍ଦୀ ସିନେମା ଗୀତର ସୁର ଧରିଥିଲା । ଆଜି ତା' ମନ ଯିମିତି ଉଡୁଛି ଆକାଶରେ; ଲକ୍ଷ୍ୟ କଲା ସିକତା ଏବଂ ପଚାରିବି ଦେଲା, "କଥା କ'ଣରେ ଭାଇ, ଭାରି ତ ଖୁସି ଖୁସି ଲାଗୁଛୁ, ତୋ' ସର୍‌ପ୍ରାଇଜ୍ ପହଞ୍ଚିଗଲାଣି ତ ?" ଅନ୍ୟମନସ୍କ ଅଜିତ୍‌କୁ ମୁହୂର୍ତ୍ତେ ମାତ୍ର ଲାଗିଲାନି ଉତ୍ତର ଫେରେଇବାକୁ । ପାଟିରେ କଲେ ହସ ଭର୍ତ୍ତି କରି ଗାଡ଼ିରେ ଟର୍ନ ନେଇ କହିଲା, "ସତରେ ଭାରି ଖୁସି ଲାଗୁଛି; ଜୀବନରେ ପ୍ରଥମ ଥର ଜାଣି କିଛି ଗୋଟାଏ ଭଲ କାମ ମୁଁ କରିଛି ବୋଲି ଭାବୁଛି ତ... । ଆଉ ରହିଲା ସର୍‌ପ୍ରାଇଜ୍... ସିଏ ଅପେକ୍ଷା କରିଛି ତମକୁ ହୋଟେଲ୍ 'ସିଲଭା'ରେ । ସୁପ୍ରିୟ ଭାଇ ଆସିଥିଲେ କିନ୍ତୁ ଖୁବ୍ ଭଲ ହେଇଥାନ୍ତା"- କଥାରେ ବ୍ୟଞ୍ଜନା ମିଶାଇ କହିଲା ଅଜିତ୍ ।

— 'ତୁ ତ ଜାଣୁ ସେ କେତେ ବ୍ୟସ୍ତ ମଣିଷ'; 'ବ୍ୟସ୍ତତା କେବଳ ଗୋଟିଏ

Digitized by PPRACHIN, SOA

ବାହାନା - ଅଜିତ୍ ମୁହଁରେ ଗମ୍ଭୀରତାର ଛାଇ, 'ଅନ୍ୟ ପାଇଁ କେବେ ତାଙ୍କର ସମୟ ନଥାଏ ।' ସିକତା କଥା ମୋଡ଼ିଲା, 'ଛାଡ଼ ତାଙ୍କ କଥା ବରଂ ତୋ କଥା କହ ସସ୍‌ପେନ୍‌ସ ନ ରଖି । ଆଗରୁ ଟିକିଏ ନ ଜାଣିଲେ ଅପଦସ୍ତ ହେଇ ଯିବିନି ?' 'ମୋଟେ ନୁହେଁ । ଅପେକ୍ଷା କର ଟିକିଏ । ଓଠରେ ହସ ଚାପି ସ୍କୁଲ ଗେଟ୍ ସାମ୍‌ନାରେ ବ୍ରେକ୍ ଦେଲା ଅଜିତ୍ । ସିକତା ଓହ୍ଲେଇଗଲା ଝିଅକୁ ଆଣିବା ପାଇଁ । ନିମି ଆସିଲାନି ତ ଫୁଲର ପାଖୁଡ଼ା ମାନେ ସତେ କି ଉଡ଼ି ଆସିଲେ ପବନ ପିଠିରେ ବସି । ଅଜିତ୍ ମାମାଙ୍କୁ ଦେଖୁ ଦେଖୁ ଖୁସିରେ ଡେଇଁପଡ଼ିଲା ନିମି ତା' କୋଳକୁ ।

ହୋଟେଲ୍ ସିଲଭା । ଯଦିଓ ଷ୍ଟାର ହୋଟେଲ୍ ନୁହେଁ ତଥାପି ସଂଭ୍ରାନ୍ତ ଆଉ ଚାକଚକ୍ୟରେ ଚମତ୍‌କାର ଦିଶୁଥିଲା ବାହାରୁ । ସୁପ୍ରିୟଙ୍କ ସହିତ ପାର୍ଟି ଆଟେଣ୍ଡ କରିବା ପାଇଁ କେବେକେବେ ସେ ଯାଇଛି । ହେଲେ ଏଇ ହୋଟେଲକୁ ସେ କେବେ ଆସି ନଥିଲା । ସେମାନେ ରିସେପ୍‌ସନ ପାରି ହେଇ ସେକେଣ୍ଡ ଫ୍ଲୋର ପାଇଁ ଲିଫ୍ଟ ଧରିଲେ । କୌତୂହଳ ଜନିତ ଉତ୍ତେଜନାରେ ଟିକିଏ ଝାଳେଇ ଯାଉଥିଲା ସିକତା ନିଜ ଭିତରେ । ଝିଅଟି କେମିତିକା କେଜାଣି ! ରୁମ୍ ନମ୍ବର ଏଇଟିନ୍ । ପାଦ ଅଟକିଲା ଅଜିତ୍‌ର । ସିକତା ଆଡ଼କୁ ଚାହିଁ, ମୁହଁରେ ଉକୁଟି ଆସୁଥିବା ହସକୁ ଚାପି ଅଜିତ୍ ସଂକେତ କଲା, ଭିତରେ ଅଛି 'ସରପ୍ରାଇଜ' ଏବଂ ସଂଭ୍ରମତା ଦୃଷ୍ଟିରୁ ନିଜେ ଡୋର୍ ନକ୍ କଲା ।

ଅବିଳମ୍ବେ ଭିତରୁ ଗମ୍ଭୀର ପୁରୁଷାଳି କଣ୍ଠସ୍ୱର ଭାସି ଆସିଲା- "ପ୍ଲିଜ୍ କମ୍ ଇନ୍ । ଭିତରକୁ ଆସନ୍ତୁନା ।" ହଠାତ୍ ସିକତାର ଉତ୍ତେଜନା ଶିଥିଳ ପଡ଼ିଗଲା । ଆଶ୍ଚର୍ଯ୍ୟ ! ଅଜିତ୍ ମୁହଁକୁ ପ୍ରଶ୍ନିଳ ଆଖିରେ ଚାହିଁଲା ଏବଂ ନିଜକୁ ସଂଶୋଧନ କରି ସାଙ୍ଗେ ସାଙ୍ଗେ ଭାବି ନେଲା ମଧ୍ୟ, ହେଇପାରେ ଝିଅଟିର କୌଣସି ଆତ୍ମୀୟ । ବିସ୍ମୟର ପ୍ରଶ୍ନବାଚୀ ନେଇ ରୁମ୍ ଭିତରକୁ ଧୀରେ ଧୀରେ ପାଦ ପକେଇଲା ସିକତା, ଆଗରେ ଅଜିତ୍ ନିମିକୁ ନେଇ ।

ସୋଫାରେ ବସିଥିବା ମଧ୍ୟବୟସର ସଂଭ୍ରାନ୍ତ ଭଦ୍ରବ୍ୟକ୍ତି ଜଣକ ହସହସ ମୁହଁରେ ଉଠିଆସି ଅଭିବାଦନ ଜଣେଇ ସ୍ୱାଗତ କଲେ । ଅଜିତ୍ ଚିହ୍ନେଇ ଦେଲା- "ମୋ ବଡ଼ ଭଉଣୀ ସିକତା । ଆପଣ ଯାହାକୁ ଦେଖିବା ପାଇଁ ଉଦ୍‌ଗ୍ରୀବ ଥିଲେ ଏବଂ ସିକତାକୁ ଚାହିଁ କହିଲା- ଇଏ ହେଉଛନ୍ତି ଦିଲ୍ଲୀର ପ୍ରତିଷ୍ଠିତ ପବ୍ଲିକେଶନ 'ବ୍ରାଇଟ୍ ହାଉସ୍'ର ପ୍ରକାଶକ ପୁଷ୍ପେନ୍ଦୁ ଚୌଧୁରୀ - ଜଣେ ବିଶିଷ୍ଟ କ୍ରିଟିକ୍ ।

Digitized by PPRACHIN, SOA

ସତକୁ ସତ ଆକାଶରୁ ଖସି ପଡ଼ିଲା ସିକତା । ବିସ୍ମୟର ସୀମା ରହିଲାନି । ଏ ତ ସତରେ ସରପ୍ରାଇଜ୍ ତା' ପାଇଁ । ତା' ସହିତ ଭଦ୍ରଲୋକଙ୍କର କି କାମ, ତା ସହିତ ସାକ୍ଷାତ୍ କରିବାକୁ ତାଙ୍କର ଏତେ ବ୍ୟଗ୍ରତା କାହିଁକି ? କି ପରିଚୟ ଦେଇଛି ଅଜିତ୍ ତାଙ୍କୁ ! ହେ ଭଗବାନ ! ମନରେ ଆନନ୍ଦ ମିଶା ଉତ୍ତେଜନାର ଏକ ମିଶ୍ର ପ୍ରତିକ୍ରିୟାକୁ ସେ ଅନୁଭବ କରୁଥିଲା ନିଜ ଭିତରେ । ସହାସ୍ୟ ବଦନରେ ଉକ୍ତ ପ୍ରତିକ୍ରିୟାକୁ ଗୋପନ ରଖି ନମସ୍କାର ଜଣେଇଲା ନମ୍ର ଭାବେ ।

ମି. ଚୌଧୁରୀ ନିମିକୁ କୋଳକୁ ନେଲେ । ନୂଆ ମଣିଷ ଦେଖି ନିମି ସଂକୁଚିତ ହେଇଯାଉଥିଲା । ସିକତା ଝିଅକୁ କହିଲା ଅଙ୍କଲଙ୍କୁ ନମ କର । ନିମି ହାତ ଯୋଡ଼ିଲା ସଲ୍ଲଜ ଭାବେ । ଟଫିବାରଟିଏ ବଢ଼େଇ ଦେଲେ ମି. ଚୌଧୁରୀ ନିମି ହାତରେ ପକେଟରୁ ବାହାର କରି । 'କିଛି ଅସୁବିଧା ହେଇନି ତ ମି. ଚୌଧୁରୀ ?' ଅଜିତ୍ ପଚାରିଲା ଶିଷ୍ଟାଚାର ଜଗି । 'ନା, ନା କିଛି ଅସୁବିଧା ହେଇନି ।' ଆରାମରେ ଟ୍ୟାକ୍ସି ଏଠି ପହୁଞ୍ଚେଇ ଦେଲା । ତା'ପରେ ସାଧାରଣ ଦି' ଚାରିପଦ କଥା । ମାଇକ୍‌ର ଜାନଫଟା ଚିତ୍କାରଠୁ ଆରମ୍ଭ କରି ପାଣିପାଗ ହୋଟେଲ ବ୍ୟବସ୍ଥା ଏବଂ ସକାଳ ଖବର କାଗଜର ହେଡ଼ଲାଇନ୍ ପର୍ଯ୍ୟନ୍ତ ଠିକେ ଠିକେ ଛୁଇଁଗଲେ ଦୁହେଁ । ଫ୍ରଣ୍ଟ ଲାଇନ୍ ନ୍ୟୁଜକୁ ଦେଖେଇ ମି. ଚୌଧୁରୀ ଟିପ୍ପଣୀ କଲେ- ଦେଖନ୍ତୁ ଆମ ଦେଶର ଯୁବମାନସିକତାର ବିଭତ୍ସ ରୂପ । ସ୍ୱାଧୀନତାର ଶହେ ବର୍ଷ ପୂରିନି, ଦେଶକୁ ପ୍ରଗତି ଆଡ଼କୁ ନେବେ କ'ଣ ? ଆତଙ୍କବାଦର ପନ୍‌ଝା ଭିତରକୁ ପଶିଗଲାଣି ସମଗ୍ର ଦେଶଟା । ମଣିଷ ଜୀବନକୁ ନେଇ ରକ୍ତର ହୋରି ଖେଳ ଚାଲିଛି ସବୁଠି, ଦେଶର ପରିସ୍ଥିତି ସବୁଠି ସମାନ । ସବୁ ସୀମାନ୍ତ ଅସୁରକ୍ଷିତ । ନାଁ ଖାଲି ଭିନ୍ନ ଭିନ୍ନ । କୋଉଠି ମାଓ ତ କୋଉଠି ନକ୍ସଲ । କୋଉଠି ଲସ୍କରେ ତୋଇବା ଓ କିଏ ଅଲକାଇଦା- ସମସ୍ତେ ନିଜ ନିଜ ସ୍ୱାର୍ଥ ଓ ସ୍ୱାତନ୍ତ୍ୟ ରକ୍ଷା ପାଇଁ ହିଂସାର ମାର୍ଗକୁ ହିଁ ବାଛି ନେଇଛନ୍ତି । ସେମାନେ କ'ଣ ଚାହାନ୍ତି ନିଜେ ଜାଣନ୍ତି ନାହିଁ । ଶ୍ରେଣୀ ସଂଘର୍ଷ ନାମରେ ଆରମ୍ଭ କରିଥିବା ଆନ୍ଦୋଳନ କେତେବେଳେ ଧର୍ମ ନାମରେ ତ କେତେବେଳେ ଜାତିକୁ ନେଇ ବିଦ୍ରୋହରେ ପରିଣତ ହେଲାଣି । ଅହିଂସାକୁ ଆଶ୍ରୟ କରି ଯୋଉ ଦେଶ ଏତେବଡ଼ ଲଢ଼େଇ ଲଢ଼ିଲା, ତାର ଉତ୍ତରଦାୟାଦ ମାନଙ୍କ ହାତରେ ଏବେ ପିସ୍ତଲ, ଏ.କେ ଫର୍ଟିସେଭେନ୍, ଲ୍ୟାଣ୍ଡମାଇନ୍, ବୋମା- ଯାଠୁ ବଳି ବିଡ଼ମ୍ବନା ଆଉ କ'ଣ ହୋଇପାରେ ।

'ଠିକ୍ କଥା, ନିଜ ବ୍ୟକ୍ତିଗତ ସ୍ୱାର୍ଥ ଆଗରେ ଦେଶ ଗୌଣ ହେଇଯାଇଛି । ହିପୋକ୍ରାସିର ଆଶ୍ରୟ ନେଇ ଥୋଡ଼ାଏ ସ୍ୟାଡ଼ିଷ୍ଟ କେବଳ ସ୍ଲୋଗାନ୍ ଦେଇ ଚାଲିଛନ୍ତି - ଆମେ ତମମାନଙ୍କର ତ୍ରାଣକର୍ତ୍ତା । ତମକୁ ସୁଖ ସମୃଦ୍ଧିର ଜୀବନ ଦେବୁ, ଆସ ଆମ

Digitized by PPRACHIN, SOA

ଦଳରେ ସାମିଲ୍ ହୁଅ । ଅଜ୍ଞ, ନିର୍ବୋଧ, ଅଶିକ୍ଷିତ ନିରୀହ ମଣିଷ ଭଳି ଯାଇ ବଳି ପଡୁଛନ୍ତି ସେମାନଙ୍କ ସ୍ୱାର୍ଥ ବେଦୀରେ, ଅଜିତ୍ କହିଲା- ଏସବୁ ଜନସଂଖ୍ୟା ବିସ୍ଫୋରଣର ଫଳ । ଆମର ସଚେତନତାର ଅଭାବ । ଏଥିପାଇଁ ଆମକୁ ଆହୁରି ଅନେକ ପ୍ରାଇସ୍ ଦେବାକୁ ପଡ଼ିବ । ସମସ୍ୟାର ସମାଧାନ ଏତେ ସହଜ ନୁହେଁ- କଥାରେ ପୂର୍ଣ୍ଣଛେଦ ଦେଲେ ମି. ଚୌଧୁରୀ ।

ସିକତାର ଏସବୁ କଥାରେ ବିଶେଷ ମନ ଲାଗୁ ନଥିଲା । ଶ୍ରୋତା ହିଁ ସାଜିଥିଲା । ଯଦିଓ ସାଂପ୍ରତିକ ରାଜନୀତି ସଂପର୍କରେ ତାର କିଛି ଜ୍ଞାନ ଅଛି । ତେବେ ଆଜିର ଏଇ ଅପ୍ରତ୍ୟାଶିତ ଘଟଣାକୁ ନେଇ ନିଜ ଭିତରେ ଜବାବ୍ ସୁଆଲ କରୁଥିଲା । ନିମି ଖେଳୁଥିଲା ମନକୁ ମନ ରୁମ୍ ଭିତରେ ଏପାଖ ସେପାଖ ହୋଇ ।

— ମି. ଚୌଧୁରୀ ଲକ୍ଷ୍ୟ କରୁଥିଲେ ସବୁ । ହଠାତ୍ କନ୍‌ସସ୍ ହୋଇ କହିଲେ, 'ସରି ମାଡ଼ାମ୍ ଆପଣଙ୍କୁ ନିଶ୍ଚେ ଅସ୍ୱସ୍ତି ଲାଗୁଥିବ । କ'ଣ କରାଯିବ କୁହନ୍ତୁ- ଏଇ ନିଉଜ୍‌ଗୁଡ଼ାକ ହିଁ ଏମିତି ଚେତନାକୁ ଦୋହଲେଇ ଦେଲା ଭଳି । ସରି ।'

'ନା, ନା, ମୋତେ କିଛି ଅଡୁଆ ଲାଗୁନି । ଆମେ ସମସ୍ତେ ଯେହେତୁ ଦେଶର ସଚେତନ ନାଗରିକ ସମସ୍ତଙ୍କର ସମାନ ଦାୟିତ୍ୱ ଅଛି ଏଥିରେ ଭାଗ ନେବାପାଇଁ । ମୁଁ ଆଲୋଚନାର ଗମ୍ଭୀରତାକୁ ଅନୁଭବ କରୁଥିଲି... । ହୋଟେଲ ବୟ କଫି ଟ୍ରେ ନେଇ ଆସିଲା । ନିଜେ ସିକତା କଫି ତିଆରି କରି ବଢ଼େଇ ଦେଲା ଦୁହିଁଙ୍କ ହାତରେ ଏବଂ ନିଜେ ଗୋଟାଏ କପ୍ ଧରିଲା । କଫି କପ୍‌ରେ ଚୁମ୍‌କ ଦେଉ ଦେଉ ମି. ଚୌଧୁରୀ ମୂଳ କଥାକୁ ଆସିଲେ । 'କ'ଣ ଅଜିତ୍ ଏଯାଏ ତୁମେ ତୁମର ଅସଲ 'ସରପ୍ରାଇଜ୍' ଉପରୁ ପରଦା ଉଠେଇଲ ନାହିଁ ଯେ- କହୁ କହୁ ସେ ଉଠିଗଲେ ନିଜ ବ୍ରିଫ୍‌କେଶ ପାଖକୁ । ଅଜିତ୍ ଆଖିରେ କୌତୂହଳ ଏବଂ ଆଖିରେ ଛିଟିକି ପଡୁଥିଲା ହସର ଆଭା ।

ସବୁ କିମିତି ରହସ୍ୟମୟ ମନେ ହେଉଥିଲା ସିକତାକୁ । 'ଘଟଣା କ'ଣ, କି ଖେଳ ଦେଖଉଛି ଅଜିତ୍ । ଏଥର ସତକୁ ସତ ସିକତାକୁ ଚମକେଇ ଦେଇ, ଚମତ୍କାର ଭାବେ ପ୍ୟାକିଂ କରା ପ୍ୟାକେଟ୍‌ଟିଏ ବ୍ରିଫ୍‌ରୁ ବାହାର କରି ସେଣ୍ଟର ପିସ୍ ଉପରେ ଥୋଇଲେ ମି. ଚୌଧୁରୀ ଏବଂ ସିକତାକୁ ଉଦ୍ଦେଶ୍ୟ କରି କହିଲେ- 'ଜାଣେନା ମୋର ଏଇ 'ସରପ୍ରାଇଜ୍'କୁ ଆପଣ କିଭଳି ଭାବେ ଗ୍ରହଣ କରିବେ, ସେଥିପାଇଁ ଆଗରୁ କ୍ଷମା ମାଗି ନେଉଛି । ତଥାପି ଆଶା ରଖୁଛି, ମୋର ଏଇ ଛୋଟ ଉପହାରକୁ ଆପଣ ଉଦାର ମନରେ ଗ୍ରହଣ କରିବେ ।

ସିକତା ଭିତରେ ସଂକଟ । ଅଥୟ ହୋଇ ଯାଉଥିଲା ସେ । କେତେବେଳେ ଅଜିତ୍ ମୁହଁକୁ ତ କେତେବେଳେ ମି. ଚୌଧୁରୀଙ୍କ ମୁହଁକୁ ଚାହୁଁଥିଲା ନିର୍ବୋଧଙ୍କ ଭଳି ।

Digitized by PPRACHIN, SOA

ତା' ଆଗରେ ଥୁଆ ହେଇଥିବା ଚକଚକିଆ ପ୍ୟାକେଟ୍‌ଟା । ଅଜିତ୍ ଚାହିଁଲା ସିକତାକୁ- 'ମୁଁ ନୁହେଁ ତୁମେ ହିଁ ଖୋଲି ଦେଖ ତୁମ 'ସରପ୍ରାଇଜ'କୁ । ଅଗତ୍ୟା ସିକତା ସସ୍‌ପେନ୍ସର ଅନ୍ତ କରି ପ୍ୟାକେଟ୍ ଖୋଲିଲା । ଉତ୍ତେଜନାରେ ହାତ ତାର ଥରୁଥିଲା ନିଶ୍ଚୟ । ପ୍ୟାକେଟ୍‌ର ଜରି କଭର ଖୋଲିଗଲା... ।'

କୋଳରେ ବସିଥିବା ନିମିକୁ ଅଜିତ୍ କ୍ଲାପିଂ କରିବାକୁ କହି ନିଜେ ହାତତାଳି ଦେଇ ସିକତା ମୁହଁକୁ ଚାହିଁଲା ତା'ର ପ୍ରତିକ୍ରିୟା ଜାଣିବାକୁ ।

ସତକୁ ସତ ଆକାଶରୁ ଖସି ପଡ଼ିଲା କି ସିକତା ! ନା, ଆକାଶର ଜହ୍ନ ଖସି ଆସି ତା' ହାତ ପାପୁଲିରେ ଥିଲା ! ଭାବି ପାରୁନଥିଲା । ନିଃଶ୍ୱାସ ଅଟକି ଯାଇଥିଲା ଛାତି ପାଖରେ । ଇୟେ ତ ତା'ର 'ନିଃଶବ୍ଦ ସଂଳାପ' । ଏକାବେଳକେ ପୁସ୍ତକ ଆକାରରେ ! ବିଶ୍ୱାସ ହେଉ ନଥିଲା କି ଚମତ୍କାର ହେଇଛି । ହଠାତ୍ ଗୋଟାଏ ରୁଦ୍ଧ ଆବେଗ ତା ଚେତନାକୁ ଆବୋରି ନେଲା । ଝରି ପଡ଼ିଲା ଲୁହ ଟପ୍ ଟପ୍ ହେଇ । ଅତି ମାତ୍ରାରେ ଇମୋସନାଲ ହେଇ ପଡ଼ିଲା ସେ । ନିମି ଜନ୍ମ ବେଳେ ଠିକ୍ ଏଇ ଭଳି ଅବସ୍ଥାର ସମ୍ମୁଖୀନ ହେଇଥିଲା । ବିଶ୍ୱାସ କରି ପାରିନଥିଲା ଯେ, ଆଖି ନାକ କାନ ଥିବା ସତ ସତିକା ଜୀବନ୍ତ କଣ୍ଢେଇଟିଏ ହାତଗୋଡ଼ ହଲେଇ ଶୋଇଛି ତା ପାଖରେ ଏବଂ ସେ ତାର ତୁଳା ଭଳି ନରମ ପ୍ରତିଟି ଅଙ୍ଗକୁ ଛୁଇଁ ଛୁଇଁ ତା' ମାତୃତ୍ୱକୁ ସଂଜୀବିତ କରିଥିଲା । ଠିକ୍ ସେଇମିତି ତାର ଏଇ ବାଙ୍ମୟ ସୃଷ୍ଟିକୁ ତା' ପ୍ରତିଟି ପୃଷ୍ଠାରେ ଥିବା କଳା କଳା ଅକ୍ଷରକୁ ସ୍ପର୍ଶ ଭିତରେ ଅନୁଭବ କରିବାକୁ ଲାଗିଲା । ତା' ସ୍ୱପ୍ନ ବାସ୍ତବ ରୂପ ନେଇଛି । ସେ ତ କଳ୍ପନା କରି ନଥିଲା ପାଣ୍ଡୁଲିପିଟିକୁ ଫେରି ପାଇବ ବୋଲି । ଅଥଚ ଇଏତ ବହି !

ସିଏ ଏବେ କ'ଣ କରିବ ଯେ । କାହାକୁ ଜଣେଇବ କୃତଜ୍ଞତା । ଦୁହେଁ ତା' ସାମ୍‌ନାରେ । ପୁଷ୍ପେନ୍ଦୁ ଆଉ ଅଜିତ୍ । କଣ୍ଠରୁଦ୍ଧ ହେଇ ଯାଉଥିଲା । ଓଦା ଆଖିରେ କେବଳ ନିର୍ବାକ୍ ହେଇ ଚାହିଁ ରହିଲା ଯେମିତି ତାର ଏଇ ଚାହାଁଣି କହୁଥିଲା, ମୋ' ପାଖରେ ଭାଷା ନାହିଁ ତମକୁ କୃତଜ୍ଞତା ଜଣେଇବି । ମୋ ପାଇଁ ଆଜି ଗୋଟାଏ ନୂଆ ପରିଚୟ ଆଣି ଦେଇଛ ତମେ । ଶାବ୍ଦିକ ଧନ୍ୟବାଦଟିଏ ଦେଇ ତମ ବଡ଼ପଣର ମର୍ଯ୍ୟାଦା ଭଙ୍ଗ କରିବିନି ।

ତାର ଏଇ ସ୍ଥାଣୁତ୍ୱ ଦେଖି ମି. ଚୌଧୁରୀ ବ୍ୟସ୍ତ ହେଇପଡ଼ିଲେ - ଏନିଥିଂ ରଂ..., ଅନଇଜି ଫିଲ୍ କରୁଛନ୍ତି କି ମାଡ଼ାମ ? କିଛି ଭୁଲ ହେଇଗଲା ମୋର ?

— "ନା, ନା ମୋଟେ ନୁହେଁ । ମୁଁ ଟିକିଏ ଇମୋସନାଲ ହେଇପଡ଼ିଲି ତ । ମେନି ମେନି ଥ୍ୟାଙ୍କସ୍ । ଆପଣ ସତରେ ମୋତେ ସରପ୍ରାଇଜ୍ କରିଦେଲେ । ଖୁବ୍

Digitized by PPRACHIN, SOA

ବିନୀତ କଣ୍ଠରେ ନିଜର କୃତଜ୍ଞତା ଜଣେଇଲା ସିକତା ।” - କେମିତି ହେଇଛି ବହିର ଗେଟ୍‌ଅପ ନାନୀ ? ଆଖିରେ ହସି ପଚାରିଲା ଅଜିତ୍ । ତମକୁ ନ କହି ସେଦିନ ପାଣ୍ଡୁଲିପିଟିକୁ ନେଇ ଆସିଥିଲି । ସେଥିପାଇଁ କ୍ଷମା ଚାହୁଁଛି - ହାତ ଯୋଡ଼ିଲା ଅଜିତ୍ । ମାଗିଥିଲେ, ତମେ କେବେ ବି ଦେଇ ନଥାନ୍ତ । ସେଥିପାଇଁ... ।

— ତୋର ସାହସ ବି କିଛି କମ୍ ନୁହେଁ । ମୋତେ ଏକାବେଳକେ ଅପ୍ରସ୍ତୁତ କରିଦେଲୁ । ମନେ ମନେ କିନ୍ତୁ କହୁଥିଲା, ପାଟି ଖୋଲି କହିବା ପାଇଁ କିଛି ନାହିଁ ମୋ ପାଖରେ ଶବ୍ଦ । ମୁଁ ବଡ଼ ହେଇ ବି ତୋ’ ବଡ଼ମାପର ମନ ପାଖରେ ଛୋଟ ହେଇଗଲିରେ ଅଜିତ୍ ।

— ମୁଁ ସେଭଳି କିଛି ଦୁଃସାହସ ତ କରିନି । ସେଦିନ ରାତିରେ ହିଁ କୌତୂହଳ ବଶତଃ ପାଣ୍ଡୁଲିପି ଭିତରକୁ ପଶି, ବିଶ୍ୱାସ କର, ମୁଁ ଚକିତ ହେଇଗଲି । ଏତେ ସୁନ୍ଦର ଲେଖା ଆଲମାରି ଭିତରେ ବନ୍ଦୀ ହେଇ ପଡ଼ିଛି ଠିକ୍ ଏଇ ଉପନ୍ୟାସର ନାୟିକା ଭଳି । ହଠାତ୍ ମୋ ଭିତରେ ଆଲୋଡ଼ନ ସୃଷ୍ଟି ହେଲା । ଭାବିଲି ତାକୁ ସେଇ ନିଃଶବ୍ଦ ଇଲାକା ଭିତରୁ ମୁକୁଳେଇ ଆଣିବି ଶବ୍ଦର ବୈଚିତ୍ର୍ୟମୟ ପୃଥିବୀ ଭିତରକୁ; ଆଲୁଅ ଦେଖେଇବି । ଦୈବାତ୍ ମି. ଚୌଧୁରୀଙ୍କ ସହିତ ଦେଖା ହୁଏ । ସେ ଆସିଥାନ୍ତି ୟୁଜିସି ସେମିନାରରେ ଯୋଗ ଦେବାକୁ । ବିଚିତ୍ର ସଂଯୋଗ । ସୁଯୋଗକୁ ହାତଛଡ଼ା ନ କରି ଦେଖେଇଲି ପାଣ୍ଡୁଲିପିଟି, ସେ ପ୍ରତି ଆଗ୍ରହ ପ୍ରକାଶ କଲେ ନିଜ ଆଡୁ....

— ‘ଏଥର ମୋ ପାଳି, କଥା ମଝିରୁ ଅନୁପ୍ରବେଶ କଲେ ମିଃ ଚୌଧୁରୀ । ସତ କହିଲେ, ମୋତେ ଅଭିଭୂତ କରି ପକେଇଲା ଆପଣଙ୍କ ଅନନ୍ୟା । ବାସ୍ତବିକ ସେ ଅନନ୍ୟା । ବହିଟି ଉଚ୍ଚ ଦରର । ଆପଣଙ୍କ କଲମର ପ୍ରଶଂସା ନକରି ରହି ପାରୁନି । ବରଂ ଆପଣଙ୍କ ଅନୁମତି ନ ନେଇ...

— ମୁଁ ତ କହିବି ଏଇଟା ଆପଣଙ୍କର ବଡ଼ପଣ । ଏତେଟା ପ୍ରଶଂସାର ଯୋଗ୍ୟ ନୁହେଁ ମୁଁ, ଯେତିକି ପ୍ରଶଂସା ଆପଣ କରୁଛନ୍ତି । ପ୍ଲିଜ୍ ମୋତେ ଆଉ ଲଜ୍ଜିତ କରନ୍ତୁନି । ମଧ୍ୟାହ୍ନ ଭୋଜନର ସମୟ ହେଇ ଯାଇଥିଲା । ହୋଟେଲ ପରିଚାରକ ଯଥାରୀତି ଖାଦ୍ୟ ପରିବେଷଣ କରି ଦେଇଗଲା ଖାଇବା ଟେବୁଲ୍‌ରେ । ପ୍ରସଙ୍ଗ ବଦଳିଲା ଆଲୋଚନାର ।

ଖାଉ ଖାଉ ମିଃ ଚୌଧୁରୀ ଭାରତୀୟ ଖାଦ୍ୟର ପ୍ରଶଂସା କରିବାକୁ ଯାଇ କହିଲେ, ମୁଁ ଅନେକ ଦେଶ ବୁଲିଛି, ହେଲେ ଆମ ଦେଶର ଖାଦ୍ୟ ଭଳି ରୁଚିକର ଖାଦ୍ୟ ଆଉ କୋଉଠି ପାଇନି । ଅବଶ୍ୟ ପ୍ରତ୍ୟେକ ଦେଶର ନିଜସ୍ୱ ଶୈଳୀ ଅଛି । ବିଶେଷ କରି ଓଡ଼ିଶାର ଖାଦ୍ୟ ଏବଂ ପରିବେଷଣ ଶୈଳୀ ସ୍ୱତନ୍ତ୍ର ଏବଂ ଅସାଧାରଣ । ଏଥିରେ ଆନ୍ତରିକତାର ସ୍ପର୍ଶ ଅଛି । ଏହା ଭିନ୍ନ ଆତିଥେୟତାର ତ ତୁଳନା ନାହିଁ । କହିବା

Digitized by PPRACHIN, SOA

ବାହୁଲ୍ୟ, ସିକତା ଦେବୀଙ୍କ 'ନିଃଶବ୍ଦ ସଂଳାପ' ମୋତେ ପୁଣି ଥରେ ସେଇ ଆତିଥେୟତାର ସୁଯୋଗ ଆଣି ଦେଇଛି । ସେଥିପାଇଁ ଧନ୍ୟବାଦ୍ ଅଜିତ ବାବୁଙ୍କୁ ।

ଅଜିତ୍ ବିନମ୍ର ଭାବେ ମାଛ ତରକାରିର ପ୍ଲେଟ୍‌କୁ ବଢ଼େଇ ଦେଲା ମିଃ ଚୌଧୁରୀ ଆଡ଼କୁ... 'ଏଇଟା ଆମର ବିଶେଷ ପ୍ରସ୍ତୁତି... ନିଅନ୍ତୁ ଆଉ ଗୋଟେ ପିସ୍... ପ୍ଲିଜ୍ । ମାଛରୁ ପିସ୍‌ଟିଏ ନେଇ କହିଲେ ସତରେ ଚମତ୍କାର ଟେଷ୍ଟ ।' ନିମି ହାତକୁ ଖଣ୍ଡେ କଟ୍‌ଲେଟ ବଢ଼େଇ କହିଲେ, ଆପଣଙ୍କ ଅନନ୍ୟା ହାତର ସ୍ୱାଦକୁ ବି ତ 'ନନ୍ଦକର ଉଆସ' ଭିତରେ ଖୁବ୍ ପ୍ରଶଂସା କରିଛନ୍ତି- ସିକତାକୁ ଲକ୍ଷ୍ୟ କରି ଟିପ୍ପଣୀ କଲେ ମିଃ ଚୌଧୁରୀ ହସି ହସି ।

ସିକତା ମୁହଁରେ ଆତ୍ମସନ୍ତୋଷର ଗୋଲାପୀ ଆଭା ଖେଳିଗଲା ମୁହୂର୍ତ୍ତକ ପାଇଁ- ଅଜିତ୍ କହିଲା, 'ନନ୍ଦକର ଉଆସ' ଭିତରକୁ ନ ଯାଇ ମଧ ଆପଣଙ୍କ ଚେତନା ଅନନ୍ୟାର ହାତ ରନ୍ଧାକୁ ଚାଖି ଅନୁଭବ କରିପାରିଛି, ଇଏ କ'ଣ କମ୍ କଥା ।

— ସତରେ ମନ ପ୍ରାଣକୁ ଅଭିଭୂତ କଲା ଭଳି ୱଣ୍ଡରଫୁଲ୍ କ୍ରିଏସନ, ଆପଣାପଣ ଅଛି ସବୁଠି । – 'ଆଉ କ'ଣ ସବୁ ଗୁଣ ତାର ଭଲ ଲାଗିଛି ଆପଣଙ୍କୁ- ଅଜିତ୍ ଆଖିରେ କୌତୂହଳ । 'ଅନେକ କିଛି । ପାଟିରେ ଚିକ୍ ଫ୍ରାଇରୁ ପୁଳାଏ କାମୁଡ଼ି କହିଲେ ମିଃ ଚୌଧୁରୀ । ପୁସ୍ତକ ସମୀକ୍ଷା କଲାଭଳି ପରିବେଶ ତ ନୁହେଁ ଏଇଟା । ତଥାପି ମୁଁ ଯେତିକି ବୁଝିବାକୁ ଚେଷ୍ଟା କରିଛି, ଅନନ୍ୟା ଅନନ୍ୟା । ମାର୍ଜିତ ରୁଚିବୋଧ, ପରିଚ୍ଛନ୍ନ ବିଚାରଧାରା, ସଂସ୍କାରଶୀଳ ମନୋବୃତ୍ତି, ନୀତିନିଷ୍ଠ ଜୀବନଚର୍ଯ୍ୟା, ଅଖଣ୍ଡ ଆତ୍ମବିଶ୍ୱାସକୁ ନେଇ ନନ୍ଦକର ବଂଶର ବୋହୂ ହେଇ ଜୀବନ ଆରମ୍ଭ କରିଥିବା ମଧ୍ୟବିତ୍ତ ପରିବାରର ଶିକ୍ଷିତା ଝିଅ ଅନନ୍ୟା ପାଇଁ ପରିବେଶ ପରିସ୍ଥିତି ଅନୁକୂଳ ସୁଯୋଗ ଦେଇନି । ରକ୍ଷଣଶୀଳ ମନୋବୃତ୍ତି, ଅହଂସର୍ବସ୍ୱ ବ୍ୟକ୍ତିତ୍ୱ ମାନଙ୍କ ଘେରରେ ଏକୁଟିଆ ପଡ଼ିଯାଇଛି ସେ । ଅହରହ ପରିସ୍ଥିତି ଆଉ ବାସ୍ତବତା ସହିତ ବୁଝାମଣା ହିଁ କରି ଚାଲିଛି ଏକ ଅନୁକୂଳ ସମୟର ଅପେକ୍ଷାରେ । ବିଦ୍ରୋହ କି ପ୍ରତିବାଦ କରିବାକୁ ଚାହିଁନି ସିଧାସଳଖ । ଅଥଚ ଆପଣା ଜୀବନର ନିର୍ଦ୍ଦିଷ୍ଟ ଏକ ବିନ୍ଦୁରେ ଠିଆ ହେଇ ସମଗ୍ର ନାରୀ ଜାତି କଥା ଭାବିଛି । କେବେ ଆସିବ - ସେଇ ସୁଦିନ, ଯୋଉଦିନ ପୁରୁଷ ନାରୀକୁ 'ଆଜ୍ଞାକାରୀ ନୁହେଁ, ସଖୀ ଭାବେ ଗ୍ରହଣ କରିବ ।' ବହିର ଅନ୍ୟତମ ଚରିତ୍ର ନନ୍ଦକର ପରିବାରର ଅଳିଅଳି ଝିଅ ରେବା । ସ୍ୱଭାବ ସୁଲଭ ନିଖୁଣ ଚରିତ୍ର । ମାନବିକ ଦୋଷ ଦୁର୍ବଳତା ଭିତରେ ତାର ସୃଷ୍ଟି ଓ ବିକାଶ । ଅନାଥାଶ୍ରମରେ ପରିପାଳିତ କୌଶିକକୁ ସେ ବିବାହ କରିବାକୁ ଚାହେଁ । କୌଶିକ ଶିକ୍ଷିତ, ସୁନ୍ଦର, ବଡ଼ମାପର ମଣିଷ । ବିଦେଶୀ କଂପାନୀରେ ଚାକିରି କରେ । ହେଲେ ତାର ଜାତି, କୂଳ, ଗୋତ୍ର କି ପିତୃମାତୃ ପରିଚୟ ନାହିଁ । ଜାତ୍ୟାଭିମାନୀ

Digitized by PPRACHIN, SOA

ନନ୍ଦକର ବଂଶ ଏ ପ୍ରସ୍ତାବକୁ ଗ୍ରହଣ କରି ନଥିଲେ ମଧ୍ୟ ଅନନ୍ୟା ରେବାକୁ ସବୁ ପ୍ରକାର ସମର୍ଥନ ଦେଇଛି କିନ୍ତୁ ପାଶ୍ଚାତ୍ୟ ଭୋଗବିଳାସ କି ଦର୍ଶନକୁ ନୁହଁ, ତାର ଯୁକ୍ତି-ବିବାହ ଏକ ପବିତ୍ର ବନ୍ଧନ, ସେଠି କୌଣସି ଚୁକ୍ତି ଅଥବା ଅତି ସ୍ୱାଚ୍ଛନ୍ଦ୍ୟର ସ୍ଥାନ ନାହିଁ- ଆମ ସଂସ୍କୃତି ବିରୋଧୀ । ଏଭଳି ଅନେକ ଛୋଟବଡ଼ ଘଟଣାକୁ ନେଇ ସଂଘର୍ଷ ଦ୍ୱନ୍ଦ୍ୱ ଭିତରେ କଥାବସ୍ତୁ ଗତିଶୀଳ । କନ୍‌ଫ୍ଲିକ୍ଟ ଗୁଡ଼ାକୁ ସୁନ୍ଦର ଭାବେ ଉପସ୍ଥାପିତ କରାଯାଇଛି । ନାରୀର ସଂକଟଜନକ ସ୍ଥିତି ସହିତ ସମସାମୟିକ କାଳ ଓ ପରିବେଶ ସଂପର୍କରେ ଲେଖିକା ଖୁବ୍ ସଚେତନ ।

ମିଃ ଚୌଧୁରୀ ଏକା ନିଃଶ୍ୱାସରେ କହି ସାରି ଟିକିଏ ବ୍ରେକ୍ ନେଲେ ଏବଂ ସିକତା ପ୍ଲେଟକୁ ଚାହିଁ କହିଲେ, କି ଅନ୍ୟାୟ, ଦେଖନ୍ତୁତ ମୁଁ ଗପିଗପି ଖାଇ ସାରିଲିଣି, ଆପଣ ଚୁପ୍‌ଚାପ୍ ବସିଛନ୍ତି ହାତଟେକି ? ପ୍ଲିଜ୍ ନିଅନ୍ତୁ ନା... ଏ ଚିକ ଫ୍ରାଇଟା, ଖୁବ୍ ଭଲ ହୋଇଛି ପ୍ରିପାରେସନ୍ । ସସ୍ ବୋତଲଟା ବଢ଼େଇ ଦେଇ... ତମେ ବି ନିଅ ଅଜିତ୍ ଏଇ ଫ୍ରୁଟ୍ ସାଲାଡଟା... ।

ସିକତା ଟିକିଏ ସଂକୁଚିତ ହୋଇଗଲା । ନିଜକୁ ସହଜ କରିବାକୁ ଯାଇ କହିଲା ଠିକ୍ ଅଛି, ମୁଁ ନଉଛି । ଆପଣ ବ୍ୟସ୍ତ ହୁଅନ୍ତୁନି । ଆପଣଙ୍କ କଥା ଶୁଣିବାକୁ ଭଲ ଲାଗୁଛି, ବହିର ବିଷୟବସ୍ତୁ କେବଳ ନୁହେଁ ଚରିତ୍ରର ଅନ୍ତଃ ସ୍ଥଳକୁ ବି ଆପଣ ଦେଖୁଛନ୍ତି ଅଜିତ୍ ଫ୍ରୁଟ୍ ସାଲାଡ଼ର ପ୍ଲେଟଟା ବଢ଼େଇ ଦେଲା ସିକତା ଆଡ଼କୁ । ନିମି ହଠାତ୍ ଫ୍ରୁଟସ୍ ଦେଖି ମା'ର ପ୍ଲେଟ୍‌ରୁ ବାଛି ବାଛି ଖାଇବାକୁ ଲାଗିଲା ନିଜ ପସନ୍ଦ ଅନୁଯାଇ । ଅଜିତ୍ ତାର ସହଜ ଢଙ୍ଗରେ ପ୍ରଶ୍ନ କଲା, ବିଷୟବସ୍ତୁ ସଂପର୍କରେ ଆପଣଙ୍କ ମତ କ'ଣ ?

— ବିଷୟବସ୍ତୁ ମଧ୍ୟବିତ୍ତ ସାମାଜିକ ଜୀବନର । ତେବେ ସମୟର ଦ୍ରୁତ ପରିବର୍ତ୍ତନ ସହିତ ତାର ଚେହେରା ବି ବଦଳି ଚାଲିଛି କ୍ଷୀପ୍ର ଗତିରେ । ମଣିଷ ଜୀବନର ପରିସର ସଂକୁଚିତ ହେଇନାହିଁ । ଯୁଗରୁଚି ସହିତ ଲାଇଫ୍-ଷ୍ଟାଇଲରେ ପରିବର୍ତ୍ତନ ଆସିଛି । ମିଡ଼ିଆରେ ଦେଖୁଥିବା ମିଛ ଜୀବନର ଚିତ୍ର ମୁହୂର୍ତ୍ତେ ଲାଗୁନି ସତ ଜୀବନ ଭିତରକୁ ପଶି ଅସୁମାରି ସମସ୍ୟା ସୃଷ୍ଟି କରିବାକୁ । ଅଥଚ ଏ କ୍ଷେତ୍ରରେ ଲେଖିକାଙ୍କ ଲେଖନୀ ଏକାବେଳକେ ସଂଯତ ।

ଏଥର ସିକତା ନିଜ ଚଉକିରେ ଟିକିଏ ଆରାମରେ ଆଉଜି ବସି କହିଲା- ମୁଁ ବି ପରିବର୍ତ୍ତନକୁ ସ୍ୱୀକାର କରେ । ପରିବର୍ତ୍ତନ ତ ସମୟର ଧର୍ମ - ଏକ ଅହରହ ପ୍ରକ୍ରିୟା । ତେବେ ଯୋଉ ପରିବର୍ତ୍ତନ ମଣିଷକୁ ଆତ୍ମୋନ୍ନତି ବା ଉତ୍ତରଣ ଆଡ଼କୁ ନ ନେଇ ନିମ୍ନମୁଖୀ କରାଏ, ଅସୁସ୍ଥ ପରମ୍ପରା ସୃଷ୍ଟି କରେ, ସେଇ ପରିବର୍ତ୍ତନକୁ ହାଇଲାଇଟ୍ କରିବାର କିଛି ମାନେ ନାହିଁ ବୋଲି ମୁଁ ଭାବେ । କାରଣ ଏ ପରିବର୍ତ୍ତନର କିଛି ସ୍ଥିରତା ନାହିଁ ।

Digitized by PPRACHIN, SOA

ପରଖିବାକୁ ବି ସମୟ ନାହିଁ । ଏହା ସତ୍ତ୍ୱେ ବି ସୁଖଲୋଭୀ ମଣିଷ ପଶି ଯାଉଛି ପରିବର୍ତ୍ତନର କ୍ଷୀପ୍ରସ୍ରୁଅ ଭିତରେ - ଆକ୍ରାମାକ୍ରା ହେଉଛି । ଏ ସମସ୍ୟା ସବୁବେଳେ ରହିଛି । ତେବେ ଲେଖକର ତ କିଛି ଦାୟିତ୍ୱ ରହିଛି । କିଛି ମାତ୍ରାରେ ସେ କମିଟେଡ୍ ।

ଆପଣଙ୍କ କଲମ ଚିହ୍ନାମାଟି ଆଉ ଆକାଶର କଥା କହିଛି - ପ୍ରଶ୍ନିଳ ଆଖିରେ ଚାହିଁଲେ ମିଃ ଚୌଧୁରୀ; "ଠିକ୍ ଲକ୍ଷ୍ୟ କରିଛନ୍ତି ଆପଣ । ମୋ' କଲମ ଯୋଉମାନଙ୍କ କଥା କହିଛି, ସେମାନେ ସମସ୍ତେ ମୋର ଏକାନ୍ତ ଆପଣାର, ନିତି ଭେଟୁଛି ମୁଁ ସେମାନଙ୍କୁ । ମୋ' ଆତ୍ମା ଯୋଡ଼ି ହେଇଯାଇଛି ସେମାନଙ୍କ ସହିତ ଘନିଷ୍ଠ ଭାବେ । ଆଜି ବି ସେମାନଙ୍କର ଅନେକ ସମସ୍ୟା, ଅନେକ ପ୍ରଶ୍ନ । ଏ କ୍ଷେତ୍ରରେ ନିଜକୁ, ନିଜ ଘରକୁ ତ ପ୍ରଥମେ ସଜାଡ଼ି ସୁନ୍ଦର କରିବା ଆମର ଧର୍ମ । ବିନ୍ଦୁ ଭିତରେ ସିନ୍ଧୁ ଦର୍ଶନ ଭଳି, ଚିରୁଡ଼ାଏ ମାଟି ଭିତରେ ହିଁ ମୋର ଚରିତ୍ର ମାନେ ଏକ ବୃହତ୍ତର ସମାଜ ଓ ସଜଡ଼ା ସୁନ୍ଦର ସ୍ୱଚ୍ଛ ଜୀବନର ଇଙ୍ଗିତ ଦେଇଛନ୍ତି । ସେମାନଙ୍କ ସଂଗ୍ରାମ ଓ ସଂଘର୍ଷ ଭିତରେ ପରିବର୍ତ୍ତିତ ଜୀବନ ଧାରାର ଚିତ୍ର ଦେବାକୁ ମୁଁ କିଛିଟା ପ୍ରୟାସ କରିଛି ମାତ୍ର । ଜାଣେନା ସେଥିରେ ସଫଳ ହେଇଛି କି ନାହିଁ ।" କଥା ସାରିଲା ବେଳକୁ ସିକତାର କଣ୍ଠସ୍ୱର ଆବେଗରେ ଥରି ଉଠୁଥିଲା ।

— ଚମତ୍କାର । ସତରେ ଚମତ୍କାର । ମା ମାଟି ପାଇଁ ଆପଣଙ୍କର କି ଗଭୀର ମମତା । ଠିକ୍ ଶବ୍ଦମାନଙ୍କ ପ୍ରତି ମଧ ଆପଣଙ୍କର ସେତିକି ଆତ୍ମୀୟତା । ପ୍ରତିଟି ଶବ୍ଦ ଭାବଗର୍ଭକ, ହୃଦୟସ୍ପର୍ଶୀ, କାବ୍ୟିକ । କିନ୍ତୁ ଶବ୍ଦ ସଂଯୋଜନାରେ ଖୁବ୍ ସତର୍କ ଏବଂ ନିର୍ଦ୍ଦିଷ୍ଟ । ଠିକ୍ ଯେମିତି ଚରିତ୍ରମାନେ ସ୍ୱଚ୍ଛ, ମାର୍ଜିତ ଏବଂ ଆଦର୍ଶସ୍ଥାନୀୟ । ଚେତନା ଭିତରେ ଆଙ୍କି ହେଇ ରହିଥିବା ଗୋଟିଏ ଗୋଟଏ ନିଖୁଣ ଛବି ଭଳି । ରେବା ଆଉ କୌଶିକ ଅବଶ୍ୟ ଭିନ୍ନ ଚରିତ୍ର; ଅନ୍ୟମାନଙ୍କ ତୁଳନାରେ- ସ୍ୱାଭାବିକ ଖୁବ୍ । ତେବେ ମଣିଷ ତ ନିଖୁଣ ନୁହେଁ - ଟିକିଏ ହସିଲେ ମିଃ ଚୌଧୁରୀ ଟିପ୍ପଣୀ କରୁ କରୁ ।

ସିକତା ମୁହଁରେ ବିସ୍ମୟର ଆଭା ଛିଟିକି ଉଠିଲା । ଭଦ୍ରଲୋକ ସମାଲୋଚନା କରିବାକୁ ବସିଲେଣି । ମନେ ମନେ ଖୁସିଟାଏ ହେଇ ସ୍ୱାଗତ କଲା । ମିଃ ଚୌଧୁରୀ ତୀକ୍ଷ୍ଣଦୃଷ୍ଟି ତା ମୁହଁ ଉପରେ ନିବଦ୍ଧ ଥିଲା । ମନେ ହେଉଥିଲା ଭଦ୍ରଲୋକ ତା'ମନ ଭିତରକୁ ନିରେଖି ଦେଖିବାକୁ ଚେଷ୍ଟା କରୁଛନ୍ତି । ସିକତା ନିଜକୁ ସଜାଡ଼ି ବସିଲା । ଅଜିତ୍ ବେଶ ଉପଭୋଗ କରୁଥିଲା ଦୁହିଁଙ୍କ ଆଲୋଚନା ।

ପୁଣି ଆଲୋଚନାର ଖିଅ ଧରିଲେ ମିଃ ଚୌଧୁରୀ - ମାତ୍ରାଧିକ ପରିଚ୍ଛନ୍ନତା ପ୍ରତି ଆପଣଙ୍କର ଦୁର୍ବଳତା ବେଶୀ ନିଶ୍ଚୟ ? ଏଇ ଯେ ଆମ ଉପନ୍ୟାସର ଅନ୍ୟତମ ମୁଖ୍ୟ ଚରିତ୍ର କ୍ଷିତିଶ ନନ୍ଦକର- ଜଣେ ଆମିସିୟସ ଏବଂ ଅହଂସର୍ବସ୍ୱ ମଣିଷକୁ ଲେଖିକା କାହିଁକି

Digitized by PPRACHIN, SOA

ଯେ ଏତେ ଭଦ୍ର, ନୀତିବାନ, ଦୟାବନ୍ତ ଭଳି ବିଶିଷ୍ଟ ଗୁଣର ଅଧିକାରୀ ଭାବେ ଚିତ୍ରଣ କରିଛନ୍ତି- ଫ୍ରୁଟ୍ ସାଲାଡ୍‌ର ପ୍ଲାଏ ପାଟିକୁ ନେଇ ହଠାତ୍ ପ୍ରସଙ୍ଗ ବଦଳେଇ ଦେଇ କହିଲେ, ସାଲାଡ୍‌ଟା ଏକାବେଳକେ ମିଠା ହେଇଗଲା ନା ଅଜିତ୍, ଟିକିଏ ବେଶୀ ଅଙ୍ଗୁର ଦେଇଥିଲେ ବୋଧେ ଭଲ ଲାଗିଥାନ୍ତା ଆହୁରି ।

ଅଜିତ୍ ମୁଣ୍ଡ ହଲେଇ ସମର୍ଥନ କଲା । ସିକତା ମିଃ ଚୌଧୁରୀଙ୍କର ବ୍ୟଞ୍ଜନାକୁ ମନଯୋଗର ସହିତ ଶୁଣୁଥିଲା ଏବଂ ବୁଝିବାକୁ ଚେଷ୍ଟା କରୁଥିଲା । ମିଃ ଚୌଧୁରୀ କହିଲେ, ଯିଏ ଜୀବନର ସାଫଲ୍ୟକୁ ହିଁ ସଫଳତାର ମାପକାଠି ବୋଲି ଭାବୁଛି, ନିଜ ଲକ୍ଷ୍ୟ ହାସଲ ପାଇଁ ଯେକୌଣସି ମାଧ୍ୟମକୁ ଗ୍ରହଣ କରିବା ପାଇଁ ପ୍ରସ୍ତୁତ ତାକୁ ବଂଶଗତ ପାରମ୍ପରିକ ଆଦର୍ଶର ଚଷମା ପିନ୍ଧେଇବା ଆବଶ୍ୟକ କ'ଣ ଥିଲା - ସେ କେବେ ଗୋପବନ୍ଧୁ କି ବିବେକାନନ୍ଦ ତ ହେଇ ପାରିନଥାନ୍ତେ ।

ଅବଶ୍ୟ ନାରୀ ମୂଳତଃ କ୍ଷମାମୟୀ । ପୁଣି ଆମ ଅନନ୍ୟା ଅସାଧାରଣ । ନାରୀର ଏଇ ଅସାଧାରଣତ୍ୱକୁ ହିଁ ଅନେକ କ୍ଷେତ୍ରରେ ପୁରୁଷ ଢାଲ ଭାବେ ପ୍ରୟୋଗ କରିଥାଏ - ନିଜ ଦୋଷ ଦୁର୍ବଳତାକୁ ଢାଙ୍କିବାକୁ କାରଣ ସେ ଜାଣେ ଏହା ନାରୀର ଦୁର୍ବଳତା । ତେଣୁ ଏହି ଦୁର୍ବଳତାର ସୁଯୋଗ ନେଇ ନିଜ ପାଇଁ ଏକ ନିର୍ମଳ ଇମେଜ ତିଆରି କରେ । କ୍ଷିତିଶ ମଧ୍ୟ ସେଇଭଳି ଏକ ସାଧାରଣ ପୁରୁଷ ଅସାଧାରଣ ନୁହେଁ । କିନ୍ତୁ ଲେଖିକା ନିଜ ଅବଚେତନରେ ଆଙ୍କି ରଖିଥିବା 'ଆଦର୍ଶ ସ୍ୱପ୍ନ ପୁରୁଷର ଛବି'କୁ କ୍ଷିତିଶ ଉପରେ ଅଜାଣତରେ ହିଁ ମଢ଼େଇ ଦେଇଛନ୍ତି ବୋଲି ମୋର କାହିଁକି ମନେହେଲା... ମିଃ ଚୌଧୁରୀ ସିକତା ମୁହଁକୁ ଚାହିଁଲେ ତାଙ୍କ ମନ୍ତବ୍ୟର ପ୍ରତିକ୍ରିୟା ପଢ଼ିବା ପାଇଁ ।

ସିକତା ମୁହଁର ଭଙ୍ଗ ବଦଳୁଥିଲା - ଅଜିତ୍ ମନଯୋଗ ଦେଇ ଶୁଣୁଥିଲା । ଝରକା ଆଡ଼କୁ ଶୂନ୍ୟ ଦୃଷ୍ଟିରେ ଚାହିଁ ମିଃ ଚୌଧୁରୀ ନିଜ ବକ୍ତବ୍ୟକୁ ଆହୁରି ସ୍ପଷ୍ଟ କରିବାକୁ ଯାଇ କହିଲେ 'ମଣିଷ ଜୀବନଟା କିନ୍ତୁ ଖୁବ୍ ବିଶୃଙ୍ଖଳ । ଅଡୁଆ ତଡୁଆ, ଜଙ୍ଗଲି ଲଟା ଭଳି । ଯୁଆଡ଼େ ସିଆଡ଼େ ମାଡ଼ି ଚାଲେ, ଯାହାକୁ ଆଗରେ ପାଏ ଜାବୁଡ଼ି ଧରି ପକାଏ - ତାକୁ ସଜାଡ଼ିବାକୁ ଯାଇ ସମଗ୍ର ଜୀବନଟା ନିଅଣ୍ଟ ବି ହେଇଯାଏ ତା ପାଇଁ ।' ଝରକା ପଟୁ ମୁହଁ ଫେରେଇ ସିକତା ମୁହଁକୁ ସିଧାସଳଖ ଚାହିଁ କହିଲେ... ଅବଶ୍ୟ ମୁଁ ମଣିଷ ମନ ଭିତରର କଥା କହୁଛି - ଏଭଳି ହେଇପାରେ- ସମ୍ଭାବନା ଅଛି ।

ସିକତା ଶୁଣୁଥିଲା ନିବିଷ୍ଟ ମନରେ । ଭଦ୍ରଲୋକଙ୍କ ବିଶ୍ଳେଷଣ ଉପର ଠାଉରିଆ ନୁହେଁ । ମିଃ ଚୌଧୁରୀ ଖାଇ ସାରିଥିଲେ । ହାତ ମୁହଁ ଧୋଇ ଆରାମରେ ବସି, ପରିବେଶକୁ ହାଲୁକା କରିବା ପାଇଁ ନିମି ସହିତ ଗପିବାକୁ ଆରମ୍ଭ କଲେ । ଅଜିତ୍ ଉଠିଗଲା ନିମିକୁ ନେଇ ମୁହଁ ହାତ ଧୋଇବାକୁ । ସିକତା ବି ହାତ ଧୋଇ ସହଜ ହେଇ

Digitized by PPRACHIN, SOA

ବସିଲା । ଭାବିଲା ବୋଧେ ଆଲୋଚନା ସରିଲା । ହଠାତ୍ ଭଦ୍ରଲୋକ ସୁଇଚ୍ ଅନ କଲା ଭଳି ସିକତାକୁ ଚାହିଁ ପ୍ରଶ୍ନ କଲେ - ଆପଣ କ'ଣ ମଣିଷର ଏଇ ବଣୁଆ ରୂପ ସଂପର୍କରେ ଅଜ୍ଞ, ନା ଭୟ କରୁଛନ୍ତି ସେ ରୂପକୁ । ଅଥବା ନିଜର ସାମାଜିକ ସ୍ଥିତିକୁ ?

ସିକତା ଚମକି ଉଠିଲା ନିଜ ଭିତରେ । ବିସ୍ମୟ ପ୍ରକାଶ କରି କହିଲା, 'ମାନେ ! ଠିକ୍ ବୁଝି ପାରିଲିନି'- 'ମାନେ, ଆପଣଙ୍କ ଅନନ୍ୟା ଖୁବ୍ ସତର୍କ । ସେ ଚାହିଁନି ତା' ଜୀବନର କ୍ଷତକୁ ଅନ୍ୟମାନେ ଦେଖନ୍ତୁ । ଆଲୋଚନା କରନ୍ତୁ କିମ୍ବା ସହାନୁଭୂତି ଜଣାନ୍ତୁ । ଅନ୍ୟପ୍ରକାରେ କହିଲେ, ତାର ଭଲମନ୍ଦ ଆଡ଼କୁ କିଏ ଆଙ୍ଗୁଠି ଦେଖାଉ । କ'ଣ କେବଳ ଏଇଥିପାଇଁ ଯେ, ଜୀବନର ସେଭଳି କିଛି ସଙ୍କଟ ବା ପରିସ୍ଥିତିକୁ ସାମ୍ନା କଲା ଭଳି ସାହସ ନାହିଁ ତା ପାଖରେ ?'

– "ଅଛି । ନିଶ୍ଚୟ ଅଛି । ସେ ମୋଟେ ଦୁର୍ବଳ ନୁହେଁ । ତାର ଦମ୍ଭ ଅଛି ନିଜ କଥା କହିବାକୁ ନିଜ ଗୋଡ଼ରେ ଠିଆ ହେବାକୁ । କାହାର ଆଶ୍ରିତା ନୁହେଁ ସେ । ତଥାପି ଆମ ପ୍ରାଚ୍ୟ ଚିନ୍ତାଧାରାରେ ପାରିବାରିକ ଜୀବନର ସୁସ୍ଥ ଚେହେରାଟା ଟିକିଏ ଭିନ୍ନ । ପରିବାର କହିଲେ କେବଳ ଜଣେ ନାରୀ ଆଉ ପୁରୁଷକୁ ନେଇ ନୁହେଁ, ଅନେକ ସଂପର୍କର ସୂତାଖିଅ ତାକୁ ବାନ୍ଧି ରଖିଛି । ଯେତେ ସଂପର୍କ, ସେତେ ତା'ର ନାଁ । ତେଣୁ କୌଣସି ପଦକ୍ଷେପ ନେଲାବେଳେ, ଏସବୁ ସଂପର୍କକୁ ବିଚାରକୁ ନେବାକୁ ହୁଏ । କାହାର ସ୍ନେହ, କାହାର ସମ୍ମାନ, କାହା ଅଧିକାର ଏଥିରେ ବାଧାପ୍ରାପ୍ତ ହେଉନି ତ, ଆଘାତ ପାଉନି ତ ? ଏବଂ ନାରୀର ଭୂମିକା ପରିବାରରେ ସବୁଠୁ ଗୁରୁତ୍ୱପୂର୍ଣ୍ଣ ଆପଣ ଜାଣନ୍ତି । ସେ ବାନ୍ଧି ରଖେ ସବୁ ସଂପର୍କକୁ ଏଇ ବାନ୍ଧିବାର ମୂଳସୂତ୍ର ତ ତ୍ୟାଗ, କ୍ଷମା । ସେଇଥିପାଇଁ ତ ସେ କଠୋର ହୋଇ ପାରେନା, ତାର ବ୍ୟକ୍ତିଗତ ସ୍ୱାଧିନତା ଫ୍ରିଜ୍ ହେଇଯାଏ । ଯୋଉ ସମାଜକୁ ସେ ବଦଳେଇବାକୁ ଚାହେଁ - ସେଇ ସମାଜ ଓଲଟି ତାକୁ ଦୋଷ ଦିଏ । ଉଦ୍ଦେଶ୍ୟ ତ ସଫଳ ହୁଏନା । ବରଂ ମାନସିକ ସ୍ତରରେ, ଚେତନ ମନ ହେଉ, କି ସମାଜ, ଥରେ ବୁଝି ଗ୍ରହଣ କରିନେଲେ, ତାର ସୁଫଳ ମିଳେ ସଭିଙ୍କୁ । ଆପଣ କ'ଣ ଏକଥା ଅସ୍ୱୀକାର କରିବେ ?"

"– ଆଉ ଆପଣ ସେଇଥିପାଇଁ ଅନନ୍ୟାର ଅସାଧାରଣ ଗୁଣ, ଯେତେକ ସମ୍ଭାବନା ଆଉ ସଂକଳ୍ପକୁ ଫ୍ରିଜ୍ କରିଦେଲେ । ନା, ସେ ଗୁଣ୍ଡ ସାମାଜିକ ବ୍ୟବସ୍ଥା ବିରୁଦ୍ଧରେ ସିଧାସଳଖ ସ୍ୱର ଉତ୍ତୋଳନ କରି ପାରିଲା ନା, ସୁସ୍ଥ, ସୁନ୍ଦର, ସ୍ୱଚ୍ଛ ପରଂପରା ପ୍ରତିଷ୍ଠା କରିବାର ସ୍ୱପ୍ନକୁ ସାକାର କରି ପାରିଲା - ଆପଣ ତା ପ୍ରତି ଖୁବ୍ ଅନ୍ୟାୟ କଲେନି କି ? ଚରିତ୍ରଟିକୁ ଏତେ ବଳିଷ୍ଠ ଏବଂ ସମ୍ଭାବନାମୟ କରି ଗଢ଼ି ସାରି କାହାଣୀ ଗତିରେ ତାକୁ ନେଇ ନିଃଶବ୍ଦ ଇଲାକା ଭିତରେ ଛାଡ଼ିଦେଲେ । ନିଃଶବ୍ଦ ଇଲାକା ଭିତରେ ଛାଡ଼ିଦେଇ

Digitized by PPRACHIN, SOA

ଉପନ୍ୟାସର ଶେଷ ଘୋଷଣା କରିଦେଲେ ବି ଆପଣ ଅନ୍ୟାୟ କଲେନି କି ତା ପ୍ରତି ? ବିଚାରୀ ନିରବରେ ନିଜ ନିଃଶବ୍ଦ ଇଲାକା ଭିତରେ ନିଜ ସହିତ ବୁଝାମଣା କରି ବଞ୍ଚିରହିଲା- ଇଏ ତ ଏକପ୍ରକାର ଇମୋସନାଲ ଟରଚର୍ । କେହି ଶୁଣି ପାରିଲେନି ତା' କଥା । ଅଥଚ ଉପନ୍ୟାସରେ ଅନେକ ସୁଯୋଗ ଥିଲା, ନାଟକୀୟ ମୋଡ଼ର ସମ୍ଭାବନା ଥିଲା- ସବୁର ସଦ୍‌ବ୍ୟବହାର କରିଥିଲେ ଅନନ୍ୟାକୁ ସୁଯୋଗ ମିଳିଥାନ୍ତା ନିଜ ସଂକଳ୍ପକୁ ବାସ୍ତବ ରୂପ ଦେବାରେ । ସମୟ ପାଇଥାନ୍ତା ସେ । କୌଣସି ପରିବର୍ତ୍ତନ ପାଇଁ ଜୀବନଟିଏର ସମୟ କିଛି ନୁହେଁ । ତା'ଛଡ଼ା କ୍ଷିତିଶକୁ କିଛି ସ୍ୱାଧିନତା ଦେଇଥିଲେ ତା' ଚରିତ୍ରଗତ ସ୍ୱାଭାବିକତା ଫୁଟି ଉଠିଥାନ୍ତା । କିନ୍ତୁ ଆମ ଲେଖିକା ଜଣେ ମିତବ୍ୟୟୀ ଗୃହିଣୀ ଭଳି ନିଜ ସଂଭ୍ରାନ୍ତ କଲମକୁ ସତର୍କତାର ସହିତ ବ୍ୟବହାର କରିଛନ୍ତି କ୍ଷିତିଶ୍ ପାଇଁ । କହି ସାରି ପୁଷ୍ପେନ୍ଦୁ ମୁହୂର୍ତ୍ତେ ଅଟକି ନିଃଶ୍ୱାସ ନେଇ କହିଲେ : ଏସବୁ ସତ୍ତ୍ୱେ, 'ଅନନ୍ୟା' ହିଁ ଅନନ୍ୟା । ତାର ଅନ୍ତର୍ନିହିତ ସୌନ୍ଦର୍ଯ୍ୟର ତୁଳନା ନାହିଁ । କହିବାକୁ ଗଲେ, ସେ ଭାରତୀୟ ନାରୀର ପ୍ରତିନିଧିତ୍ୱ କରୁଛି... ।

ସିକତା ଅବାକ୍ ହୋଇଗଲା ମିଃ ଚୌଧୁରୀଙ୍କ ଚରିତ୍ର ବିଶ୍ଳେଷଣରେ । ସେ ଯେମିତି କିଛି ଲୁଚେଇବାକୁ ଯାଇ ଧରା ପଡ଼ିଯାଇଛି । କିଛି ସମୟ ନୀରବରେ ନିଜ ଭିତରେ ଜବାବ ସୁଆଲ କଲା ମଧ । କ'ଣ ଉତ୍ତର ଦେବ ମିଃ ଚୌଧୁରୀଙ୍କୁ ଭାବୁଛି, ହଠାତ୍ ଭାବନାର ଖିଅ ଛିଣ୍ଡିଗଲା - ସମବେତ କଳରବରେ । କାହାର ଉଚ୍ଛୁଳା ହସ ତାର ଅନ୍ୟ ମନସ୍କତାକୁ ଚହଲେଇ ଦେଲା- ସଚେତନ ହେଲା ସେ । ଅଜିତ୍ କାନରେ ବି ବାଜିଥିଲା ହସର ଅର୍କେଷ୍ଟ୍ରା ଭିତରେ ପରିଚିତ ଏକ କଣ୍ଠସ୍ୱର । ହେଲେ ଏଠି କିମିତି ସମ୍ଭବ ହେବ । ସିକତା ଆଡ଼କୁ ଲକ୍ଷ୍ୟକଲା, ତା' ଆଖି ଡୋଳା ବି ସ୍ଥିର । ଆଖି ପହଁରିଗଲା ନିଜ ଅଜାଣତରେ କକ୍ଷ ଭିତରୁ କରିଡୋର ଆଡ଼ିକି କଣ୍ଠସ୍ୱରକୁ ଅନୁସରଣ କରି ଏବଂ ଏତିକିବେଳକୁ ହୋଟେଲବୟ ପଶି ଆସିଲା ଭିତରକୁ ଝୁଲୁଥିବା ପରଦା ଆଡ଼େଇ ଅଇଁଠା ପ୍ଲେଟ ସବୁ ଉଠେଇ ନେବା ଉଦ୍ଦେଶ୍ୟରେ । ସମବେତ କଳରବ ବି ଆଗେଇ ଆସୁଥିବା ପାଖରୁ ପାଖକୁ ।

ସେଇ ମଉକାରେ କେବଳ ଅଜିତ୍‌ର ଆଖି ନୁହେଁ, ଘର ଭିତରେ ଖେଳୁଥିବା ନିମିର ଆଖି ବି ଖୋଜି ନେଇଥିଲା ତା' ପାପାକୁ । ସେ ଦୌଡ଼ିଗଲା କରିଡୋର ଆଡ଼କୁ ପାପା ପାପା ବୋଲି ଏବଂ ଅଜିତ୍ ତାକୁ କୌଶଳରେ କୋଳକୁ ଉଠେଇ ଆଣି, କାନ୍ଥରେ ଝୁଲୁଥିବା ବାୟା ଚଢ଼େଇର ବସାକୁ ଦେଖେଇବାକୁ ଲାଗିଲା, ତାକୁ ଡାଇଭର୍ଟ କରିବାପାଇଁ ।

ସେଇ ଅବସରରେ କିଛି ନାରୀ ଆଉ ପୁରୁଷ ବନ୍ଧୁଙ୍କ ଗହଣରେ ସୁପ୍ରିୟ ହସର

Digitized by PPRACHIN, SOA

ଫୁଆରା ଉଡ଼େଇ ଲିଫଟ୍ ଆଡ଼କୁ ଆଗେଇ ଯାଉଥିଲେ ସ୍ୱାଭାବିକ ଢଙ୍ଗରେ ଅଚିହ୍ନା ମଣିଷ ଭଳି । ନିମିର ପାପା ଡାକ ତାଙ୍କ କାନରେ ଯେ ନ ବାଜିଥିବ ତା ନୁହେଁ, ଲିଫ୍‌ଟର ଡୋର ବନ୍ଦ ହେବା ଶବ୍ଦ ସିକତା ବି ଶୁଣି ପାରିଥିଲା । ଅଜିତ୍ ଠିକ୍ ଲକ୍ଷ୍ୟ କରିଛି ତାର ଉଜ୍ୱଳ ଜହ୍ନ ଭଳି ମୁହଁ ଉପରେ ଅଦିନିଆ କଳା ବଉଦ କୁଆଡୁ ମାଡ଼ିଆସି ତାଙ୍କି ପକେଇଲା । ଆଉ ତା' ପାଦ ଦି'ଟା ସତେ ଯିମିତି ନାଲି ପିମ୍ପୁଡ଼ି ଘରା ଭିତରେ ପଡ଼ିଗଲା ଏବଂ ସେ ଛାଟିପିଟି ହେଲା ଅକୁହା ଜ୍ୱାଳା ଯନ୍ତ୍ରଣାରେ ।

ପୁଷ୍ପେନ୍ଦୁ ଚୌଧୁରୀଙ୍କ ଆଖି କିନ୍ତୁ ପରିସ୍ଥିତି ଭିତରୁ କିଛି ଅନୁମାନ କରି ପାରିଥିଲା । ନିମିର ପାପା ଡାକ ତାଙ୍କ ଅନୁମାନରେ ମୋହର ଲଗେଇ ଦେଇଥିଲା ବି । ସହଜ ସ୍ୱାଭାବିକ ଢଙ୍ଗରେ ପରିସ୍ଥିତିକୁ ହାଲୁକା କରିବା ପାଇଁ, ସେ ଛାଡ଼ିଥିବା କଥାର ଖିଅ ଧରି, ସିଗାରେଟ୍‌ରେ ନିଆଁ ଧରେଇଲେ । ପୁରା ଦମ୍‌ଟିଏ ଟାଣି କଲେ ଧୂଆଁକୁ କୁଣ୍ଡଳି କରି ଛାଡୁ ଛାଡୁ କହିଲେ - ଜୀବନଟା ଏମିତି ଧୂଆଁଳିଆ ଅସ୍ପଷ୍ଟ, ଦୁର୍ବୋଧ୍ୟ ଏବଂ ଅସଜଡ଼ା ମଧ୍ୟ । ସ୍ୱପ୍ନ ସହିତ ବାସ୍ତବତାର କିଛି ସଂପର୍କ ନାହିଁ । ଆଦର୍ଶ ନାହିଁ । ଆଦର୍ଶ କେବଳ ବହିର କଥା । ସ୍ୱପ୍ନ, ଆଦର୍ଶ ଆଉ ବାସ୍ତବତା ଭିତରେ କିଛି ତାଳମେଳ ନାହିଁ ସିକତା ଦେବୀ ।

ସିକତା ଏଥର ସିଧାସଳଖ ମିଃ ଚୌଧୁରୀଙ୍କ ମୁହଁକୁ ଚାହିଁଲା- କଥାର ମର୍ମ ବୁଝିବାକୁ । ହେଲେ ମନ ଭିତରେ ନାଲି ପିମ୍ପୁଡ଼ିର ବିଷଜ୍ୱାଳା ତାକୁ ଏକାଗ୍ର ହେବାକୁ ଦେଉନଥିଲା ।



Digitized by PPRACHIN, SOA



ମୁଁ ମଣିଷକୁ ଭଲପାଏ, ସମ୍ମାନ କରେ । ଏଇ ମଣିଷଙ୍କ ଭଲ ପାଇବାକୁ ମୂଳଧନ କରି ମୁଁ କଲମ ଧରିଛି । ଜୀବନର ରୂପାନ୍ତର ମୋତେ ପ୍ରୋତ୍ସାହିତ କରିଛି । ତେଣୁ ମୋର ଆଶା ଅଛି ବିଶ୍ୱାସ ବି ଅଛି ଏଇ ପୃଥିବୀ ବଦଳିବ, ମଣିଷ ମଣିଷ ଭଳି ବଞ୍ଚିବ, ଅନ୍ଧାର ଘୁଞ୍ଚିବ, ଆଲୁଅ ଫିଟିବ, ସ୍ୱପ୍ନମାନେ ଫୁଲ ହୋଇ ଫୁଟିବେ, ଦୁଃଖ ରହିବନି, ଅପରାଧ ରହିବନି; ପଛେ ଘିଅ ମହୁରେ ନଭାସୁ ଏ ପୃଥିବୀ ବାସୋପଯୋଗୀ ହେଉ, ପ୍ରତିଷ୍ଠା ହେଉ ମାନବିକତାର, ଚେତନାର ଉତରଣ ଘଟୁ, ରକ୍ତର ହୋରି ନ ଖେଳି ମଣିଷ ଅମୃତର ଜୟଗାନ କରୁ । କ୍ଷତାକ୍ତ ବସୁଧା ସୁସ୍ଥ ହୋଇଉଠୁ । ନାରୀ ଓ ପୁରୁଷ ମଧ୍ୟରେ ବିଭେଦର ରେଖା ନ ରହୁ । ପ୍ରତିଭା ବଞ୍ଚି ରହୁ । ଏଇ ଆଶା ଓ ବିଶ୍ୱାସ ନେଇ ମୋ କଲମ ଚାଲିଛି ଓ ଚାଲୁଥିବ... ।

[illegible]ଲକ୍ଷ୍ମୀ ମିଶ୍ର

Digitized by PPRACHIN, SOA

